# ସାରଳା
# ମହାଭାରତ



ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା

# ସାରଳା ମହାଭାରତ

## କାଇଁଶିକା, ନାରୀ, ଶାନ୍ତ ଓ ଆଶ୍ରମିକ ପର୍ବ



ମୁଖ୍ୟ ସଙ୍କଳକ, ସଂଗ୍ରାହକ ଓ ସମ୍ପାଦକ

**ଡକ୍ଟର ୬ ଆର୍ତ୍ତବଲ୍ଲଭ ମହାନ୍ତି,**

ଏମ୍. ଏ., ଡ଼ି. ଲିଟ୍., ପଦ୍ମଶ୍ରୀ

# ସୂଚୀପତ୍ର

## କାଇଁଶିକା ପର୍ବ





# କାଉଁଶିକା ପର୍ବ

## ( ସୌପ୍ତିକ ଭାଗ )

---

### ଅଶ୍ୱତ୍ଥାମା କର୍ତ୍ତୃକ ଦ୍ରୌପଦୀଙ୍କ ପାଞ୍ଚପୁତ୍ର ଶିରଚ୍ଛେଦନ ଓ ଦୁର୍ଯ୍ୟୋଧନର ଦେହତ୍ୟାଗ

ଶୁଣ ହେ ମନୁରାୟେ ବଦସ୍ୟନ୍ତି ବ୍ରହ୍ମସୁତ
ଦ୍ୱାରକାପୁରେ ପାଣ୍ଡବେ ଯେ ରହିଲେ ନିଶ୍ଚିନ୍ତ । ୧
ଦୁର୍ଯୋଧନକୁ ଭୀମ ଯେତେବେଳେ ସମରେ ନିପାତି
ନିଯୋଗୀମାନେ ନିଯୋଗ ଦେଖିଣ ଧାଆନ୍ତି । ୨ ।
ଭୀମସେନର ଯେ ବେନଣ୍ଡନ ମୁଣ୍ଡ ଶୋଣିତ ନାହିଁ
ବ୍ୟାଧ ପ୍ରାପ୍ତିକା ହୋଇଲା କାଠପେଡାରେ ଚକୁଆ
ରଖିଲା ଗୋଟି ନାହିଁ । ୩ ।
ପ୍ରେତ ନ୍ତ ବୋଲି ବ୍ୟାଧ ମନରେ ଭାଳଇ
ମଣ୍ଡପୂଳିକ ଲୋଡିଲେ ସେ ଜସ ଦେବ ମୁଣ୍ଡ । ୪ ।
ଧାଇଁଲା ଭୀମ ମଣ୍ଡପୂଳି ଘରକୁ ଯୁଗତେ
ଆରେ ବ୍ୟାଧ ଚନ୍ନୀ ଆଣ ବୋଲି ଡାକଇ କୋପଚିତ୍ତେ । ୫ ।
ବାତୁଲ ହୋଇଣ ବ୍ୟାଧ ସେ ବୋଲଇ
କାଠପେଡା ପାଠି ଚକୁଆ ଦେଖାଇ ଦେଇଯାଇ । ୬ ।
ପୁଣ ଘରଦ୍ୱାର ସେ ଦେଖି ଧାମଇଁ ଘୋର ବନେ
କାଠପେଡା ପାଠିଲା ବୋଲଇ ବଚନେ । ୭ ।

---

୬।୧ ... ତ ଭାବ ହୋଇଣ ବ୍ୟାଧ ସେ ବୋଲଇ ( ଝ, ଥ )
୪।୨ ମଣ୍ଡପୂଳିକ—ରାଜବାଟୀ ।
୫।୧ ମଣ୍ଡପୂଳି ଘର—ପାକଶାଳା, ରୋଷେଇ ଘର ।
ସୌପ୍ତିକ—ରାତ୍ରିରେ, ଶୋଇଥିବା ବ୍ୟକ୍ତିଙ୍କୁ ରାତ୍ରିରେ ଆକ୍ରମଣ ।

ଅକାରଣ ହୋଇ ସେ ବୁଲଇ ମହାତମା
ଭୁଙ୍ଗଭଦ୍ରା ନଦୀ ଘାଟରେ ଭେଟିଲେ ଅଶତ୍ଥମା । ୮ ।
କହୋ ବେଣ୍ଟକାର ତୁ ହୋ ଭୀମର ନଯୋଗୀ
ବନ ଭିତରେ କମ୍ପେ ତୁ ବୁଲୁ ବେଗି ବେଗି । ୯ ।
ବାଉଳ ଭାବ ହୋଇଣ ସେ ବ୍ୟାଧ ଯେ ବୋଇଲା
କ ବୋଲ ଗୋସାଇଂ ହୋ ତଡାଇ କାଠପେଡା ଫାଟିଗଲା । ୧୦ ।
ବାଉଳ ଭାବ ହୋଇ ସେ କହଇ ଛନ ଛନ
କାଠପେଡା ଫାଟିଗଲା ବୋଲି ବୋଲଇ ଘନ ଘନ । ୧୧ ।
ଭୀମନେସ ଠାକୁରେ ଯେ ପ୍ରତିଜ୍ଞ୍ୟାଂ କଲେ କାଲି
ଦୁର୍ଯୋଧନକୁ ନ ମାଇଲେ ମୁଣୋହ୍ନିଂ ନାହିଂ ବୋଲି । ୧୨ ।
ଭୀମସେନ ମୁଣୋହ୍ନିଂ ନ କଲେ ସେ କାଲି
ଚକୁଆ ଚକୋଇ କାଠପେଡା ଭିତରେ ଦୁଇପୁଞ୍ଜି ଥୋଇଥିଲି ।୧୩ ।
କାଠପେଡା ଗୋଟି ତ ହୋଇଲା ଦୁଇଫାଳ
କପାଳ ଫାଟିଲା ବୋଲି କହଇ ବାଉଳ । ୧୪ ।
ଭୀମସେନ ଠାକୁରେ ମାଇଲେ ମାନଗୋବନ୍ଦ ରାଜାଂକୁ
ନଯୋଗ କରଦେ ଦେବ ମୂଣୋହ୍ନିଂ ଠାବକୁ । ୧୫ ।
ବେଣ୍ଟକାର ବଚନେ ଅଶତ୍ଥମାପ୍ରେ ବୋଇଲେ
ଯେ ପକ୍ଷୀ ପ୍ରେକଠାବ ନୋହନ୍ତ ଶ୍ରୀରାମଂକ ଶାପରେ । ୧୬ ।
ରାବେ ପତିପତ୍ନୀ ସେ ନୋହନ୍ତ ପ୍ରେକସଙ୍ଗ
ତୁ ନଷ୍ଟ କମ୍ପାଇଂ ତାଂକୁ କଲୁ ପ୍ରେକଯୋଗ । ୧୭ ।
ଶ୍ରୀରାମ ଠାକୁରଂକର ଶାପବାକ୍ୟ ବଳ
କାଠପେଡା ଫାଟି[illegible]ଲେ ଗଗନ ମଣ୍ଡଳେ । ୧୮ ।
ଶାପର ଚରିତ ଅଶତ୍ଥମା[illegible]ହିଲେ ବ୍ୟବସ୍ଥା
ସତ୍ୟ କରି କହ ତୁ ଦୁର୍ଯୋଧନର ବାରତା । ୧୯ ।

---

୧୦ { କାତର ମନେ ସେ ବେଣ୍ଟକାର ଯେ କହିଲା
{ ଆନ କିଛି ନ ଫୁଟଇ କାଠପେଡା ଫାଟିଗଲା । (ଙ, ଡ, ଥ )

୧୬।୨ ସେ ପକ୍ଷୀ ପ୍ରେକଠାବ ନୋହିବେ ଶ୍ରୀରାମ ଅଜ୍ଞ୍ୟାଂ ହଲେ । ( ଗ, ଝ )

୧୭।୧ ପ୍ରଭୁ ଭାରଯା ସେ ନୋହନ୍ତ ପ୍ରେକାସଙ୍ଗ । ( ଝ, ଥ )

ଅଶସ୍ତ୍ରମା ବୋଇଲେ ନୟନରେ ଦେଖିଲୁକ ସମର
ବ୍ୟାଧ ବୋଇଲା ମାନଗୋବନ୍ଦ ପଡିଅଚ୍ଛି ବ୍ୟାସ ସରୋବର ତୀର । ୨୦
ସମରେ ମାଇଲେ ତାଂକୁ ଠାକୁର ଭୀମସେନ
ପ୍ରାଣ ନ ଯାଇଣ ସେ ପଡିଚ୍ଛି ଦ୍ରିଯୋଧନ ରାଜନ । ୨୧ ।
ତହୁଂ କୋପେ ଅଶସ୍ତ୍ରମା ଆସଇ ବେଗ ହୋଇ
ଚଞ୍ଚଳ ବଜୁଳ ଜାଣି ମଞ୍ଚ ଭୁବନେ ଗମଇଂ । ୨୨ ।
ଅର୍ଦ୍ଧରାତ୍ରି ବେଳେ ଆସି ସଇନ ସେ ହାବୋଡି
ଦେଖିଲା ଦ୍ରିଯୋଧନ ରାଜା ତହିଂ ଅଚ୍ଛି ପଡି । ୨୩ ।
ଜାନୁରେ ସୀମସ୍ତ ନ ଦେଇଅଚ୍ଛଇ ବୃଦକ୍ଷ
ମାନଗୋବନ୍ଦ ବୋଇଲା ତୁମ୍ଭନ୍ତ ଆଜ୍ଞେ କର ମୁଂ ହୋଇଲାନରେଖ ।୨୪।
ଅଶସ୍ତ୍ରମା ବୋଇଲା ମୁଂକ ନ ବୋଇଲା ତୋତେ
ସେନାପତି କରଣ ମୁକୁଟ ବାନ୍ଧସି ହାଦେ ମୋତେ । ୨୫ ।
ମୋର ବଚନେ ଉପହାସ୍ୟ କରି ତୁ କୋପିଲୁ କୁରୁବୀର
ପାଣ୍ଡବଂକର ମୃତ୍ୟୁଭେଦ ଥିଲା ମୋହୋର ହାଥର । ୨୬ ।
ଯେତେ ବଡ ପଣ ସେ ହରାଇଲୁ ଅକାର୍ଯ୍ୟେ
ମୁହିଂ ତୋହୋର ଅବସ୍ଥା ଦେଖିବାକୁ ଅଇଲା ନଲଜେ । ୨୭ ।
ଯେବେହେଂ ମୁକୁଟ ବାନ୍ଧସି ରାଜା ମୋତେ
ମାରିବି ପାଣ୍ଡବନ୍ତ ଭସ୍ମ ଅଂକୁରାଇବି ତୋତେ । ୨୮ ।
ଦ୍ରିଯୋଧନ ବୋଇଲା ହୋ ବହିଗଲା ପାଣି
ବନ୍ଧ ବାନ୍ଧ ନୁଆଣିଲେ ତ ବେଳକାଳ ଜାଣି । ୨୯ ।
ଆହଁହୁଂ ଯେବେ ମୁଂ ନ ପାଳନ୍ତି ସତ୍ୟବ୍ରତ
ସରିଲା ବେଳକୁ ଆଉ କାହିଂକ ନସତ । ୩୦ ।
ମାନଗୋବନ୍ଦ ବୋଇଲା ଯେବେ ମୁଂ କରିବି ସେନାପତି
ରଥ ଗଜ ଅଶ୍ୱ ନାହିଂ ନାହିଂନା ପାଦାନ୍ତି । ୩୧ ।

---

୨୪।୨ ମାନଗୋବନ୍ଦ ବୋଇଲା ବାବୁ ରେ ଦେଖ ଆମ୍ଭର ଦୁଃଖ । ( ଙ, ଚ )
୨୭ { ଅଶସ୍ତ୍ରମା ବୋଇଲେ ତୁ ଯେ ହୋଇଲୁ ଅକାର୍ଯ୍ୟ
{ ମୁଂ ତୋହୋର ଯେ ଅବସ୍ଥା ଦେଖିବାକୁ ଅଇଲଇଂ ଆଜ । (ଝ,ଙ,ଞ)

ଚାଉ ତୋଳର ଯେ ନାହିଂ ସରଳ ଜଗଦଳା
ମଣି ମାଣିକ୍ୟ ନାହିଂ ମୁକୁଟ କର୍ଣ୍ଣାଞ୍ଚଳା । ୩୨ ।
ଯେତେବେଳେ ଯେମାନନ୍ତ ମୁଂ ପାଇବଇଂ କାହିଂ
ଶ୍ରୀଲକ୍ଷ୍ମୀ ବୁଡାଇଲ କାହିଂ କଣ୍ଠୁ ନାହିଂ । ୩୩ ।
ଅଶ୍ୱତ୍ଥାମାଯେ ବୋଇଲେ ତୁ କର ସନମତେ
କାର୍ଯ୍ୟ କଲେ ପଛେ ସେମାନ ଭୂଷଣ କର ମୋତେ । ୩୪ ।
ଯେ ବଚନ ଶୁଣି ରାଜା ବୃଦକ୍ଷକୁ ଗୃହିଂଲା
ଶୁଆଂଳ ଲତାଯେ ଅଶ୍ୱତ୍ଥମା ଶିରରେ ବାନ୍ଧିଲା । ୩୫ ।

---

୩୨ { ଭାଉ ଝିମ୍ପା ସରଳ ବାହୁଟି ନାହିଂ ଜଗଦାଳା
ମଣି ମୁକୁଟ ନାହିଂ କର୍ଣ୍ଣାଞ୍ଚଳ ହୃଦେ ଭୂଷଣ ରତ୍ନମାଳା । (ଝ, ଠ, ଢ)

୩୪ { ଅଶ୍ୱତ୍ଥମା ବୋଇଲେ ଯେବେ ତୋହୋର ଅନୁମତେ ।
ପାଣ୍ଡବଙ୍କୁ ମାର ଜୟଲାଭ ଦେବ ତୋତେ । (ଗ, ଠ)

୩୪।୨ "କାର୍ଯ୍ୟ କଲେ ପଛେ ସେମାନ ଭୂଷଣ କର ମୋତେ" । ପାଦ ପରେ
'ଙ' ପୋଥିରେ ଅଧିକା ପାଠ :—

ଦୁର୍ଯୋଧନ ବୋଇଲା ଶୁଣ ହୋ ବୀରମଣି
ସାଂଗ୍ରାମରେ ତାହାକୁ ପାରବୁ ଟିକି ଜିଣି ।
ଭୀମାର ଆଗରେ ତୋର କିସ ଯେ ଗାରମା
ଦ୍ରୋଣପର୍ବରେ ତୋତେ ଯେ ପକାଇ ଦେଲା ଭୀମା ।
ଛନ୍ନଛନ୍ନ ହୋଇ ତୁ ଯେ କେଣେ ଉଡଗଲୁଂ
ମହାଭାରଥ ସରଳା ଯେବେ ଗାରମା କହିଲୁଂ ।
ଅର୍ଜୁନର ତୁଲେ ତୁ ତ ନୋହିବୁ ସମକକ୍ଷ
ସମର କାଳେ ତୋତେ ହେଲେ ଜିଣଇଂ ହୀବଂକ୍ଷ ।
ଅର୍ଜୁନ କୁମରି ଯେ ଅଭିମନ୍ୟୁ ଦଳା
ଚକ୍ରବ୍ୟୂହ ଭୂଙ୍ଗାୟ ଦ୍ୱାରେ ତୋତେ ଝିଂଘାସିଲ ।
ମରିବାର ବେଳେ ନସତ୍ତ୍ୱ କାହିଂକ ହୋଇବ
ଆଜହୁଂ ବୋଇଲ କୃଷ୍ଣନାପନ୍ଥ ପଣେ ନ ଦଶିବ ।
ହରଙ୍କୁ ସେବା କରି ତୁ ଯେ ମରଣକୁ ଡରିଲୁ
ଛଡୀ ହୋଇ କରି ଯେ ନିଜଙ୍କ ବର ମାଗିଲୁ ।

୩୪।୨ ପାଣ୍ଡବଙ୍କୁ ମାରି ରାଜା କରାଇବ ତୋତେ । (ଥ)

ଦୁଜେ ଶ୍ୱେତ ଦୁବ ଲେଗୃପ୍ତେଂ ଦେଲେ ଶିରେ
ଚଳିଲେ ଅଶ୍ୱତ୍ଥାମା ସେନାପତି ତ୍ରିଧାର ଶସ୍ତ୍ର ଧରି କରେ । ୩୬ ।
ସମ୍ପୂର୍ଣ୍ଣ ନିଶି ଅର୍ଦ୍ଧ ହୋଇଅଛି ରାତି
ନବର ସିଂହଦ୍ୱାରେ ଯାଇଂ ମିଳିଲା ମହାନ୍ଧକାରୀ ଝାନ୍ତି । ୩୭ ।
ଦ୍ୱାରେ ଦେଖିଲା ବୀର ଭଇରେବୀ ପ୍ରତିମା
ତାହାର ତୁଲେ ବେନଦଣ୍ଡ ସମର କଲା ଅଶ୍ୱତ୍ଥାମା । ୩୮ ।
ସେ ଭଇରେବୀ ପ୍ରତିମାକୁ ବୀର ଜିଣି ନୁଆରିଲା
କାନ୍ଥ ଭାଙ୍ଗି ଅଶ୍ୱତ୍ଥାମା ଭିତରେ ପଶିଲା । ୩୯ ।
ନିଦ୍ରା ନ ଥିଲା ଅଷ୍ଟାଦଶ ଦିବସ ପର୍ଯ୍ୟନ୍ତେ
ସେଦିନ ଶୋଇଛନ୍ତି ଭିତରେ ନିଶ୍ଚିନ୍ତେ । ୪୦ ।
ଅଜାଣତେ ଭିତରେ ପଶିଲା ଯାଇ ଦ୍ରୋଣି
ଦୁଇ କ୍ଷଉଣୀ ବଳ ସବୁ ପକାଇଲା ହାଣି । ୪୧ ।
ଦ୍ୱାରେ ଶୋଇଥିଲେ ସେ ଧୃଷ୍ଟ ସେ ଦ୍ୟୁମନ
କେଶ ଧରି ତାହାଙ୍କଇଂ କଲାକ ଛେଦନ । ୪୨ ।

---

୩୬ { ସ୍ୱେତେ ବୋଲି ଶ୍ୱେତ ଦୁବ ଲେଗୃପ୍ତେଂ ଦେଲେ ମାଥେ
{ ଚଳିଲେ ଅଶ୍ୱତ୍ଥାମା ଶଙ୍କାଦ୍ଧ ଘେନ ହାଥେ ; (ଙ)

୩୬।୨ ଚଳିଲେ ଅଶ୍ୱତ୍ଥାମା ତ୍ରିବଧାର ତୃଷ ଅଛୁ ବୋଝାଏ୍ ହାଥେ ।
(ଡ, କ. ଅ, ତ)

୪୦।୨ ଅସାଷ୍ଟମେ ନିଦ୍ରାଯାଇ ଅଛନ୍ତି ସମସ୍ତେ । ( ଜ )

୪୧।୨ "ଦୁଇ କ୍ଷଉଣୀ ବଳ ସବୁ ପକାଇଲା ହାଣି" ପାଦାନ୍ତ ପରେ
ପୋଥିମାନଙ୍କରେ ଅଧିକା ପାଠ:—
ଦ୍ୱାରେଣ ଶୋଇଥିଲେ ଧୃଷ୍ଟ ସେ ଦ୍ୟୁମନ
ମହସ୍ରେକ ଯୋଦ୍ଧା ଯେ ଥିଲେ ସନ୍ନିଧାନ ।
ରୋଷେଣ ଅଶ୍ୱତ୍ଥାମା ଯେ ପଡିଲା ହାବୋଡି
ଆରେ ଆରେ ପାମର ବୋଲି ଛାଡିଲା ଘୋରରଡି ।
ଗୋଳ ଧନ୍ଦୋଳ ହୋଇଣ ଯେ ଉଠିଲେ ସର୍ବ ବୀରେ
ଆବର ନିଆଂଇଲେ ଦ୍ରୋପଦ ରାଜାର କୁମରେ
କୋପଭର ହୋଇଣ ସେ ଦ୍ରୋଣର କୁମରେ
ହାନ୍ଦୋନ୍ଦକଇ ଅଶ୍ୱତ୍ଥାମା ଖଡଗ ଘେନ କରେ

ତହୁଁ ଯାଇଁ ପଶିଲା ଅଶ୍ୱତ୍ଥାମା ଚନ୍ଦ୍ରଶାଳାପୁରେ
ପାଞ୍ଚାଳୀ କୁମରେ ଶୋଇଛନ୍ତି ପଲ୍ୟଂକ ଉପରେ । ୪୩ ।
ଚନ୍ଦ୍ରକେଶରୀ ବୋଲି ଯୁଧିଷ୍ଠିଂକ ପ୍ରଥମ ପୁଅ
ବୀରକେଶରୀ ବୋଲି ଭୀମସେନର ସୁତ । ୪୪ ।
ନରକେଶରୀ ବୋଲି ଅର୍ଜୁନର ସୁତ
ମହାକେଶରୀ ବୋଲି ନକୁଳଂ ତହୁଁ ଜାତ । ୪୫ ।
ତ୍ରଇଲୋକ୍ୟକେଶରୀ ବୋଲି ସହଦେବଂକର ସୁତ
ଏହୁ ବଧି ପାଞ୍ଚାଳୀଂକର ପାଞ୍ଚକୁମାର ଖ୍ୟାତ । ୪୬ ।

---

୪୧।୧ ପରପୃଷ୍ଠାର ଅବଶିଷ୍ଟାଂଶ।—

ଯେକ ପ୍ରହାରକେ ଛୁଟନ୍ତି ଶତ ଶତ ସଇନ
ସବୁଂକର ଅଶ୍ୱତ୍ଥାମା ଘେନଲା ହାଦେ ପ୍ରାଣ ।
ନିଦ୍ରା ଆଳସେ ଶସ୍ତ୍ର ନାହିଁ କାହାର ଯେ ହାଥ
ଧୃଷ୍ଟଦ୍ୟୁମନ ପଞ୍ଚାନ୍ତେ ପଶି ହୋଇଲେ ନିସତ ।
କେ ବୋଲଇ ଯେ ଯେ ଅଟଇ ଗନ୍ଧର୍ବ
କେ ବୋଲଇ ଯେହୁ ସେ ଅଟଇ ଦାନବ ।
ହୁଲା କାଳ ଯେ ଧୃଷ୍ଟଦ୍ୟୁମନ ଚହ୍ନିଲା
ଦ୍ରୋଣର ନନ୍ଦନ ଯେତ ଅଶ୍ୱତ୍ଥାମା ଅଇଲା ।
କହୁଁ କହୁଁ ଦ୍ରୋଣୀ ଯେ ସମସ୍ତ ଗଲା ହାଣି
ଡରେ ଲୁଚିଲେ କେହି ନ କଲେ ମୁଖଧ୍ୱନି ।
ଧୃଷ୍ଟଦ୍ୟୁମନ ଯାଇଂ ଦ୍ୱାରରେ ବସିଲା
କ୍ରମ ଚଲ୍ଲ ମାରଇ ବୋଲି ଦ୍ୱାର ଆବୋରିଲା ।
ଦେଖିଲା ଅଶ୍ୱତ୍ଥାମା ଧୃଷ୍ଟ ଯେ ଦ୍ୟୁମନ
ତୁହି ଛେଦିଲୁ ଖଡଗେ ମୋର ପିତାକୁ ଯେ ପୁଣ ।
ପିତାର ଶତ୍ରୁକୁ ତ ଆଜ ମୁଂ ଦେଖିଲଇଂ
ଚରଣ ପ୍ରମାଣ କରି ମାଂସେଂସ ମୁଂ କାଟିବଇଂ ।
ଶୁଣିଣ ଧୃଷ୍ଟଦ୍ୟୁମନ ଯେ ବୋଇଲେ ବଚନ
ତୋହୋର ବଡଭାଗ୍ୟ ଆଜ ନାହିଁ ଯେ ଭୀମସେନ ।
କହୁଁ କହୁଁ କୋପାନ୍ତଳ ଯେ ହୋଇଲେ ବେନି ଭାଇ
ଖଡଗ ଧରି ଅଶ୍ୱତ୍ଥାମାକୁ ଓଗାଳିଲେ ଯାଇଂ ।
ମାରନ୍ତେ ଅସିପତ୍ର ହୁଟୁଡ଼ ଘେନଲା
ସେହି ଖଡଗ ଘେନି ଧୃଷ୍ଟଦ୍ୟୁମନକୁ ହାଣିଲା ।

ମହାନଶା କାଳେ ଯାଇଂ ଅଶ୍ୱତ୍ଥମା ଭେଟି
ଯେ଼କା ପ୍ରହାରକେ ପାଞ୍ଚଂକର ମୁଣ୍ଡକାଟି । ୪୭ ।
ଧନୁରେ ଭାର କର ପାଞ୍ଚ ମୁଣ୍ଡ ଘେନ
ବାହୁଡ଼ଇ ଅଶ୍ୱତ୍ଥମା ଗତ ପ୍ରହର ଦିନ । ୪୮ ।
ମନେ ଅନେକ ସାନନ୍ଦେ ଗମଇ ପବନ ବେଗେ ଦ୍ରୋଣି
ବ୍ୟାସ ସରୋବର ଖରେ ପ୍ରବେଶ ବହନ ସିଂଘଠାଣି । ୪୯ ।
ରଜନୀ ଶେଷେ ପାହାନ୍ତି ହୋଇଲାକ ଆସି
ପ୍ରଭାତ ସନ୍ଧ୍ୟାକାଳେ ଅଳ୍ପ ଅଳ୍ପ ହସି । ୫୦ ।

---

୪୧।୧ ପର ପୃଷ୍ଠାର ଅବଶିଷ୍ଟାଂଶ:—
ଝଡ଼ରେ ବେହଖଣ୍ଡ ହୋଇଲା ଦ୍ରୁପଦର ଦସ୍ର
ବଜ୍ର ମୁଦ୍ଗରେ ଘେନଣ ଦ୍ୟୁମନ ରଣ କର୍ତ୍ତୁ ।
ଅଶ୍ୱତ୍ଥମା ଘେନଲା ଯେ ପାଣ୍ଡବଂକ ଗଦା
ରେ ରେ କାର କଣଣ ଯେ ଧାମଇଂ ଦ୍ରୌପଦା ।
ଆହୋ ଚଇତନ ଅଶ୍ୱତ୍ଥମା ତହୁଂ ଯେତେକ ହରୁଣଲେ
ମୃତୁପିଣ୍ଡମାନଂକର ସଂଗତେ ଶୁତଲେ ।

୪୭।୨ "ଯେ଼କା ପ୍ରହାରକେ ପାଞ୍ଚଂକର ମୁଣ୍ଡକାଟି" ପାଦାନ୍ତ ପରେ
'ଙ'ପୋଥିରେ ଅଧିକା ପାଠ—

ଧନୁରେ ଭ୍ରର କଣ ପାଞ୍ଚମୁଣ୍ଡ ଘେନଇଂ
ରଖଣୀ ଘର ଲୋକେ ଉଠିଲେ ଚଅଇଂ ।
ସମସ୍ତେ ଦେଖନ୍ତି ଯେ ଅଶ୍ୱତ୍ଥମାକଇଂ ।।
ରକତେ କର୍ଦ୍ଦନ ଯେ ଅଶ୍ୱତ୍ଥମା କାୟେ
ମୁଣ୍ଡଭାର ଘେନଣ ଯେ ପ୍ରବେଶ ଯାଇଂହୋସ୍ତେ ।
ଧନୁଭାର କଣ ପାଞ୍ଚ ଭାଇଂକର ମୁଣ୍ଡ
କାନ୍ଧରେ ଦେଇଛୁ ସହସ୍ର ବଳ କୋଦଣ୍ଡ ।
ଆର ଅଙ୍ଗାସ୍ତେ ମୁକୁଟ ଲେଗୁସ୍ତେକ ବାନ୍ଧ
ହାଥରେ ଧୃଷ୍ଟଦ୍ୟୁମନଂକର ମୁଣ୍ଡ 'ନାଗବନ୍ଧେ ଛନ୍ଦ ।
ବଜସ୍ତେ ଅଶ୍ୱତ୍ଥମା ବେଗେ ପବନେଣ
ଯହୁଂ ଭଗ୍ନଜାନୁ ହୋଇ ପଡ଼ିଛୁ କୁରୁରାଣ ।

୫୦।୨ ପ୍ରଭାତ କାଳେ ଅଳ୍ପ ଅଳ୍ପ ହସି ହସି । (ଜ) ।

ଦୂତବକ୍ଷ ବୋଇଲା ସ୍ୱାମୀ ଶୁଣିମା ଦଣ୍ଡଧାରୀ
ଅଶ୍ୱତ୍ଥାମା ପାଣ୍ଡବଂକ ମୁଣ୍ଡଚ୍ଛେଦ ଆଣଇ ଘେର କରି । ୫୧ ।
ନପୂନ ଫେଡ଼ି ରାଜା ଗୃହ୍ୱଂଲା ମାନଗୋବନ୍ଦ
ପାଣ୍ଡବନ୍ତ ପ୍ରାପ୍ତେ ବୁଝି ମନେଣ ସାନନ୍ଦ । ୫୨ ।
ସାଧୁ ସାଧୁ ଅଶ୍ୱତ୍ଥାମା ବୋଲି ମାନଗୋବନ୍ଦ ପ୍ରଶଂସି
ତୋତେ ସେନାପତି ନ କରି ଅଗାଦ ସମୋଦ୍ରେ ଗଲି ଭସି । ୫୩ ।
ହରାଇ କରି ପଛେ ଶିଖିଲି ମୁଂ ବୁଦ୍ଧି
ପାଦେଣ ଠେଲିଲି ମୁଂ ପ୍ୟେତେକ ସମ୍ପଦ୍ଧି । ୫୪ ।
ବାଳୁତ କାଳହୁଂ ଯାହାକୁ ପାଇଲଇଂ ସାଖି
ଚିହ୍ନି ନୁଆଁଲି ମୁଂ ତାକୁ ହୋଇଲ ନରମାଖି । ୫୫ ।

---

୪୧।୧ ପର ପୃଷ୍ଠାର ଅବଶିଷ୍ଟାଂଶ:—
କେ ଲୁଚିଲେ କେ ପଡ଼ିଲେ ପାଟେଶ୍ୱରୀକୁ ତେଜିଂ
ଭୟେଣ ସମାସ୍ୟା ସେ ନ ଦଅନ୍ତି କେହି ।
କେ ଅବା ସହି ନୁଆରି କ୍ରୋଧ ଯେ କରଇ
ସୈନ ପ୍ରହାରକେ ଯେ ବେକଫାଲ ହୋଇ ।
ଦ୍ୟୁମନର ତୁଲେ ଯେ ମଇନ ଆଉ କେହି ନାହିଂ
ସେକା ଜଣକରେ ସେ ସାଂଗ୍ରାମ ଆବୋରଇ ।
ନହୁଂ ଶହସ୍ରମାନ ଶଷ୍ଟରେ ନ ଭେଦିଲା
ଗଦା ଘେନି ଦ୍ୟୁମନ ଦ୍ୱାର ମାଡ଼ିଣ ବସିଲା ।
ଧାଇଂଣ ଅଶ୍ୱତ୍ଥାମା ଯେ ମୁଥେକ ମାଇଲା
ଦ୍ୱାର କପାଟ ଯେ ଶତେଚୂର ହୋଇ ଭାଜିଗଲା ।
ପୁଣ ଦ୍ୟୁମନ ଯେ ଗଦାବର ପିଟି
ଶହସ୍ର ବାଜନ୍ତେଣ ଅଶ୍ୱତ୍ଥାମା ମହୀଲେଟି ।
ଷଣକେ ସାନ୍ଥାମ ହୋଇଣ ପୁଣ ଉଠି
କୋପେଣ ଧଇଲା ସେ ଦ୍ୟୁମନର ତଣ୍ଡି ।

୫୪ { ହରାଇ ଶିଖିଲା ବୁଦ୍ଧି ପାଦେ ହରାଇଲା ସଂପ୍ରଧି
ପ୍ୟେତେକ ହରାଇ ରାଜା ଭାଳଇ ଅତବୁଦ୍ଧି । (ଙ)

୫୫ { ବାଳୁତ କାଳରୁ ଯେ ମୋହୋର ପ୍ରାଣ ସଖା
ଚିହ୍ନି ନୁଆଁଲି ମୁଂ ଯେ ହୋଇଲି ନରେଖା । (ଜ, ଝ)

ଅନେକ ଜାତସଲ୍ୟ ଦେଖିଣ ଧୃଷ୍ଟଗଣ୍ଟି
ଗୁମୁଟରେ ନେଇ ପକାଇଲା ପାଞ୍ଚଂକର ମୁଣ୍ଡଗୋଟି । ୫୬ ।
ବୋଲଇ ଅଶତ୍ଥମା ଶୁଣ ହେ ଦୁର୍ଯୋଧନ
ପିତାର ଶତ୍ରୁ ଯେତୁଟି ଧୃଷ୍ଟ ଯେ ଦ୍ୟୁମନ । ୫୭ ।
ଦେଖିଣ ଆନନ୍ଦ ହୋଇଲେ ଦୁର୍ଯୋଧନ ରାଯେ
ବୋଇଲେ ବେଗେ ଦଣ୍ଡଛତ୍ର ଧର ତୁ ରାଜାଯେ । ୫୮ ।
ଦେଖିଣ ବୋଇଲା ଚର୍ଣ୍ଣି ଯେ କୁମାର ଦୃଦକ୍ଷ
ପାଣ୍ଡବେ ନୋହନ୍ତି ଯେ ଦ୍ରୋପଦୀ ପାଞ୍ଚବତ୍ସ । ୫୯ ।

---

୪୧।୧ ପର ପୃଷ୍ଠାର ଅବଶିଷ୍ଟାଂଶ:—

ଦ୍ୟୁମନ ପୁଣି ଅଶତ୍ଥମା ଚର୍ଣ୍ଣି ଯେ ଧଇଲା
ମାଲ ବନ୍ଧାଣ କରି ବୀର ସାଂଗ୍ରାମେ ଲଗିଲା ।
ସମରେ ନ ଫୁଟଇ ଯେ ଭାରଦ୍ୱାଜଂକର ନାଥ
ଧନୁ ଧଇଲେ ଦେବେ କରନ୍ତି ତାକୁ ଖ୍ୟାତ ।
ଧନୁ [illegible] ଟଂକାର ଜରଇ ଯେତେବେଳେ
ଦ୍ୱାରାବତୀ ପୁରେ କମ୍ପନ୍ତି ଯାଦବେ ସକଳେ
ପାଣ୍ଡବେ ଶଂକା କରନ୍ତି ଯାହାର ନାମ ଧଇଲେ
ତାହାନ୍ତ ଜମ୍ନ ଯୁଦ୍ଧ କରିବ ପାଞ୍ଚାଳେ ।
ମାଲବନ୍ଧେ ମାତ୍ର ବସିଲା ଭାରଦ୍ୱାଜଂକର ନାଥ
ତଳେ ପଡ଼ି ସମାସ୍ୟା ନ ହୁଅଇ ଦ୍ରୁପଦର ସୁତ ।
କୃପାଣ ଦେନ୍ତି ତାକୁ ବେନଫାଳ କଲା
ସିଂହଦ୍ୱାରେ ନେଇଣ ଯେ ଫାଳେକ ଢ଼ଗୁଡଲା ।
ଆରେକ ଫାଳେ ଯେ ଉନକୋଣ୍ଡ କଲା
ଉତ୍ତର ପଶ୍ଚିମ ମୁଖେ ଉନକୋଣେ ଢ଼ଗୁଡଲା ।
ତହିଂ ପୁଣ ତାକୁ କେହି ସମାସ୍ୟା ନ ଦେଇ
କାଳନଦ୍ରା ଘୋର ହୋଇଛନ୍ତି ପାଞ୍ଚଭାଇ ।
ଚନ୍ଦ୍ରଶାଳା ପୁର ଭିତରେ ଯେ ପଲଂକ ଉପରେ
ନଚଳନ୍ତେ ନିଦ୍ରା ଯାଇଅଛନ୍ତି ପାଞ୍ଚାଳ କୁମରେ ।
ଦଇବେ ଦ୍ରୁତମୁନିଙ୍କ ଶାପରେ କାଳନଦ୍ରା ଘୋଟିଲା
ଯେତେ ସଇନ ଅଛନ୍ତି ତାହାଂକର ନିଦ୍ରା ନ ଭାଙ୍ଗିଲା ।

ରଜନୀ ପ୍ରଭାତରେ ଦେଖିଲା ଧୃତରାଷ୍ଟ୍ରି
ପାଞ୍ଚାଳୀ କୁମରଂକର ଶିର ପାଞ୍ଚଗୋଟି । ୬୦ ।
ମୂର୍ଚ୍ଛାଗତ ହୋଇଲା ଦେଖି ମାନଗୋବିନ୍ଦ
ହା ହା ଦଇବ ବୋଲି କପୋଳେ କର ଧନ୍ଦ । ୬୧ ।
ଆହେ ଅଶ୍ୱତ୍ଥମା ଆହ୍ମହ୍ନଂ ଅଟୁ ନଷ୍ଟ
ତୋହୋର ପ୍ରକୃତ ଜାଣି ମୁଂ ନ ବାନ୍ଧିଲି ମୁକୁଟ । ୬୨ ।
ସମର ଶେଷକାଳେ ମୋତେ ଯେ କଲୁ ସ୍ନେହା
ବାଳ୍ମତ ବଧ ଦୋଷେ ଜଳୁ ରେ ପାମର ଦ୍ରୋହେହା । ୬୩
ଅଭିମନ୍ୟୁ ମଲା ଘଟଉତ୍କଚ ନାଶଗଲା
ଲକ୍ଷ୍ମଣକୁମାରହ୍ନଂ ପଡ଼ିଲା ବଂଶହ୍ନଂ ସରିଲା । ୬୪ ।
ସ୍ନେହାନ୍ତ ରଖିଲି ମୁଂ ବଂଶରକ୍ଷାର ନିମନ୍ତେ
ଗତ ଆଗତ ବୁଡ଼ିଲା ସେ ତୋହୋର କୁତ୍ସେ । ୬୫ ।
ହେ ଦଇବ ସନ୍ତାନ କଲପତରୁଂ ଯେ ବୋଲି ବୋଲି
ଅଶ୍ୱତ୍ଥମା ପ୍ରସଙ୍ଗେ ଗତ ଆଗତ ଦୁଇକୁଳ ବୁଡ଼ାଇଲି । ୬୬ ।
ତୋହୋର ମୁଖ ପୁଣ ମୁଂ ନ ଚୃହ୍ନିଂ ରେ ଦୋରେହା
ବଂଶ ନିଅଂଶ କଲୁ ରେ ମୋହୋର ମୁଖ ଭୁ ଙ୍କ ଗୃହାଂ । ୬୭ ।
ପଞ୍ଚଭୂତ ଆତ୍ମା କର୍ମେ ଅଛି ହୋ ନିର୍ଲଜ
ସେ ପଞ୍ଚ ପୁଅଂକ ଅବସ୍ଥା ଦେଖି କର୍ମେ ନୁହଇ ଦହିଜ । ୬୮ ।
ପାଞ୍ଚଂକର ମୁଣ୍ଡ ଦିଅ ମୋହୋର କୋଳାଗ୍ରତେ
କୋଳ କରି ଧରି ମୁଂ ହୋଇବି କିନା ମୁକତେ । ୬୯ ।
ଦୁର୍ଯୋଧନ ବାକ୍ୟ ଶୁଣି ହୃଦକ୍ଷ ସନ୍ଧିର
ରାଜା କୋଳେ ଦିଲା ନେଇ ପଞ୍ଚବଳୀ ଶିର । ୭୦ ।
ପାଞ୍ଚଂକର ମୁଣ୍ଡ କୋଳେ ଦେଖିଣ ଧୃତରାଷ୍ଟ୍ରି
ପ୍ରାଣ ବିସର୍ଜିଲି ମୃଧୁନା ଗଲା ଫାଟି । ୭୧ ।

---

୬୧।୧ ସ୍ନେପର ଦନ୍ତ ସନ୍ତାପ କଲା ଦେଖି ମାନଗୋବିନ୍ଦ । (ଖ, ଠ)
୬୧।୨ ହା ହା ଦଇବ ବୋଲି କପୋଳେ କର ଦ୍ୱନ୍ଦ । (ଚ, ଡ, ଙ, ଡ)
୬୨।୨ ବେଳହୁଂ ଜାଣିତ ମୁଂ ତୋତେ ନ ବାନ୍ଧିଲି ମୁକୁଟ । (ଜ)
୬୧।୨ କରଧନ୍ଦ—କରଦ୍ୱନ୍ଦ୍ୱ ।।

ଲଜ୍ଜା ପାଇ ବନସ୍ତେ ପଶିଲା ଅଶତ୍ଥମା
ଭୃଙ୍ଗଭଦ୍ରା ନଦୀକୂଳେ ଭେଟିଲେ କୃପବ୍ରହ୍ମା । ୭୨ ।
ଅଶତ୍ଥମା କହିଲେ ଯେ ସକଳ ବାରତ
ପାଣ୍ଡବନ୍ତ ବୋଲି ମାଇଲି ପାଞ୍ଚାଳୀ ପାଞ୍ଚପୁଅନ୍ତ । ୭୩ ।



## ପାଞ୍ଚାଳୀ ପଞ୍ଚପୁତ୍ରର ପୂର୍ବଜନ୍ମ ବିବରଣ, ପର୍ଶୁରାମ ଓ ବିଶ୍ୱାମିତ୍ରଙ୍କର ଜନ୍ମ, ବଶିଷ୍ଠ ବିଶ୍ୱାମିତ୍ରଙ୍କ ବିବାଦ, କାମଧେନୁଙ୍କର ସମର, ଅଷ୍ଟବସୁଙ୍କୁ ଶାପ ଓ ବିଶ୍ୱାମିତ୍ରଙ୍କ ତପସ୍ୟା

ବଇବସ୍ୱତ ମନୁ ବୋଇଲେ ଅଗସ୍ତିଙ୍କ
ବଡ଼ାଇ ଦ୍ରୁପଦ କହିଲ ତ ବାକ । ୧ ।
ପାଞ୍ଚାଳୀ କୁମାର ତ ସାତ ସାତ ବରଷ ଅଗିଆନ
ଅଦୋଷେ ଶିରଚ୍ଛେଦନ କେଉଣ କାରଣ । ୨ ।
ଦାର ଯୋଗେଣ ଶିରଚ୍ଛେଦନ ବୋଲି ଜାଣି
ଅଦାର ଯୋଗେ ଶିରଚ୍ଛେଦନ ଶାସ୍ତ୍ରେ ନ ଶୁଣି । ୩ ।
ବୈବସ୍ୱନ୍ତ ଅଗସ୍ତି ଶୁଣ ହୋ ମହୀପାଳେ
କେମନ୍ତେ ନାଶଗଲେ ପାଞ୍ଚାଳୀ କୁମରେ । ୪ ।
ବିଷ୍ଣୁଭଦ୍ର ବୋଲିଣ ଯେକ ସତ୍ୟଯୁଗେ
ଗୋରେଖ ନାମେଣ ଇନ୍ଦ୍ର ବସଇ ମଧ୍ୟସ୍ୱର୍ଗେ । ୫ ।
ସତ୍ୟଯୁଗେ ବିଷ୍ଣୁଭଦ୍ର ନାମେଣ ନୃପତି
ମର୍ତ୍ତ୍ୟ ଭୁବନରେ କଶଥାଇ ଯେ ବସନ୍ତି । ୬ ।
ବିଷ୍ଣୁଭଦ୍ର ନନ୍ଦନ ଯେ ଅଟଇ ବିଶ୍ୱାବସୁ
ତାହାଂକର ନନ୍ଦନ ଜାଣ ରୁକଣବସୁ । ୭ ।

---

୭୨।୨ ପ୍ରଧ୍ୟୁମ୍ନ ଜନ୍ମହେଲେ ତାହାଂକର ଅଂଶୁ । (ଖ)
୧।୨ ବାକ—ବାକ୍ୟ, ବଚନ ।
୨।୧ ଅଗିଆନ—ଅଜ୍ଞାନ ।

ଅନଙ୍ଗ ଭୁବନେଶ୍ଵରପୁର ଅଛଇ ଆତ୍ମଜ
ଅନଙ୍ଗର ନନ୍ଦନ ଅରୁଣ ମନସିଜ । ୮ ।
ଅରୁଣ ନନ୍ଦନ ନାମ ଅଛଇ ସଦାଶିବ
ସେହାଙ୍କର ନନ୍ଦନ ଯେ ଅନିରୁଦ୍ଧ ମାଧବ । ୯ ।
ମାଧବ ରାଜାଙ୍କ ନନ୍ଦନ ଅଟେ ଅରବିନ୍ଦ
ତାହାଙ୍କର ନନ୍ଦନ ନୃପତି ମକରନ୍ଦ । ୧୦ ।
ମକରନ୍ଦର ନନ୍ଦନ ବଳାନିକ ରାଜ
ଅନଳକ ବୋଲି କରି ତାହାର ଆତ୍ମଜ । ୧୧ ।
ନିର୍ମଳତନୁ ବୋଲି ସେହାର ତନୁଜ
ତାହାର ନନ୍ଦନ ନାମ ଅଛଇ ସରୋଜ । ୧୨ ।
ସରୋଜର ସୁତ ସନକ ନାମେଣ ନୃପତି
ଗାଧି ନାମେ ତାହାର ଯେ ହୋଇଲା ସନ୍ତତି । ୧୩ ।
ତିନିଲକ୍ଷ ବରଷ ଭୋଗକଲା ଗାଧିରାଜା
ପ୍ରଧାନବଂଶୀୟ ନବଶତ ତା ଭାରଜା । ୧୪ ।
ରେଣୁକା ସତ୍ୟବତୀ ଉମାବସୁର ସୁତା
ସତ୍ୟବତୀ ଅଛନ୍ତି ଗାଧି ରାଜାର ବନିତା । ୧୫ ।
ରେଣୁକାକୁ ବିବାହ ହୋଇଲେ ଜମଦଗ୍ନି
ଅପୁତ୍ରିକା ହୋଇ ରହିଥାଆନ୍ତି ଦେବନନ୍ଦିନୀ । ୧୬ ।
ଗାଧି ରାଜାଏ ବୋଇଲେ ଯେ ସତ୍ୟବତୀକୁ ଚାହିଁ
ଜନନୀ ପୁରକୁ ତୁମ୍ଭେ ଯାଅ ବେଗେ ହୋଇ । ୧୭ ।
ଜନନୀ ଘରକୁ ତୁମ୍ଭେ ବେଗ ହୋଇ ଯିବ
ସନ୍ତାନ ନିମନ୍ତେ କିଛି ଯାଗ କରାଇବ । ୧୮ ।
ଗାଧି ରାଜାର ଆଜ୍ଞାରେ ସତ୍ୟବତୀ ଗଲେ
ମଳୟ ପର୍ବତେ ଯାଇଂ ପ୍ରବେଶ ହୋଇଲେ । ୧୯ ।
ସତ୍ୟବତୀକୁ ଦେଖି ଅନେକ ଅର୍ଚ୍ଚନା କଲେ ଜମଦଗ୍ନି
ଜ୍ୟେଷ୍ଠ ଶାଶୁ ଆମାନେ କଲେକ ଦଣ୍ଡିନୀ । ୨୦ ।
ସତ୍ୟବତୀ କହିଲେ ରହି ରେଣୁକାର ପାଶ
ପୁତ୍ରପାଇଂ ଦେଶିଛନ୍ତି ଗାଧି ନରଈଶ । ୨୧ ।

ଜୁଆଇଁ ଜମଦଗ୍ନିଙ୍କୁ କହ ତୁମ୍ଭେ ଯାଇଁ
ମୁନ୍ଦ୍ରିଂ ଧନଦେବ ଯାଗେ ଯେତେକ ଲାଗଇ । ୨୨ ।
ରେଣୁକା ଯାଇଁ କହିଲେ ଜମଦଗ୍ନିଙ୍କ ସୁରତେ
ଜ୍ୟେଷ୍ଠଭଗ୍ନୀ ଆସିଛନ୍ତି ସନ୍ତାନ ନିମନ୍ତେ । ୨୩ ।
ପାଞ୍ଚକୋଟି ରତ୍ନ ଯେ ଦିଲେ ସଉନକା
ସନ୍ତାନ ନିମନ୍ତେ ତୁମ୍ଭେ ଯାଗ କର ସେବକା । ୨୪ ।
ସୁଲଭ ଭୂମିରେ ମୁନ ବୁଣିଲେକ ତିଳ
ତିଳଫୁଲ ଝଡ଼ୁ ତହିଂ ହେଲା ଯାଗଶାଳ । ୨୫ ।
ଋଷିକୁଲ୍ୟା ବୋଲଣ ଯୋଜଂଣ ନଦୀଗୋଟି
ସରସ୍ୱତୀ ନଦୀ ଧାରୁ ସେ ଉତ୍ତରକୁ ଆସିଛନ୍ତି ଫୁଟି । ୨୬ ।
ସର୍ପିଣୀ ବଟର ତଳେ ଯାଗ ଆରମ୍ଭିଲେ
ମହାମନ୍ତ୍ର ପଢ଼ି ତହୁଂ ଆବାହନ କଲେ । ୨୭ ।
ସନ୍ତାନ ନିମନ୍ତେ ଆରମ୍ଭିଲେ ମହାତମା
ପ୍ରାଣ ଅପ୍ୟାନ ବ୍ୟାନ ଉଦାନ ସମାନାଦି ନିରୋଧିଲେ ପଞ୍ଚ ଆତ୍ମା ।୨୮।
ପଞ୍ଚଦଶ ବର୍ଷ ତହିଂ ବସି କଲେ ଯାଗ
ଅଗ୍ନି ବାମାବର୍ତ୍ତେ ନ ଦିଅନ୍ତି ହବର୍ଭାଗ । ୨୯ ।
ପଞ୍ଚଦଶ ବର୍ଷ ତହିଂ ଯାଗ ଆରୋପିଲେ
ଆହାର ମଇଥୁନ ନିଦ୍ରା ସକଳ ତେଜିଲେ । ୩୦ ।
ବାୟୁ ସେବନ କରଣ ଜଳ ମାତ୍ର ଭଖି
ନିରାଶେ ମହା ମୋହ ଯେ ହୋଇଲେ ନିର୍ମାକ୍ଷୀ । ୩୧ ।
ମାନଧାତା ପାଞ୍ଚଲକ୍ଷ ତିନିସସ୍ର ଅଂକେ
ଇନ୍ଦ୍ରପ୍ରଭବ ବୋଲି ଜାଣ ସେବକ ବରଷକେ । ୩୨ ।
ସେ ବରଷ ମକର ମାସ ଅସିତ ପଞ୍ଚମୀ
ବୃହସ୍ପତି ବାରେ ଋଷ ଉତ୍ତର ଫାଲଗୁନୀ । ୩୩ ।

---

୩୨।୧ ମାନଧାତା ପନ୍ଦରଲକ୍ଷ ପାଞ୍ଚ ସସ୍ର ଅଂକେ । (ଠ)

୨୮।୨ ଅପ୍ୟାନ—ଅପାନ ।

ସେବନ ପ୍ରବେଶ ହୋଇଂ ପାଞ୍ଚଦଣ୍ଡ ରାତି
ପୂର୍ବାବର୍ତ୍ତି ଅଗ୍ନି ଚହ୍ନି ଦଲେକ ଆହୁତି । ୩୪ ।
ଡାହାଣ ପାଖରୁ ଯହୁଂ ଅନଳ ବୁଲିଲେ
ଶୁଭ ଜାଣି ମୁନି ଯାଗେ ହବର୍ଭାଗ ଦଲେ । ୩୫ ।
ଶିଖାମାନ ଟେକଣ ଯେ ଅନଳ ବୁଲନ୍ତି
ଶୁଭମନ୍ତ୍ର ପଢ଼ି ମୁନି ଦଲେ ଯେ ଆହୁତି । ୩୬ ।
ଆର କୁଣ୍ଡେ ଦଲେ ନେଇ ଛଶି ଯୂର ଭାଗ
ଏ ବିଧିରେ ମୁନିଶ୍ରେଷ୍ଠ କଲେ ଯାଗ ସାଙ୍ଗ । ୩୭ ।
ଏକଯାଗ ଯାଜ୍ଞିକ ଯେ ତହିଂ ଏକ ତପୀ
ବେଦ ମନ୍ତ୍ରେ ଚରୁ ଫୁଟାଇଲେ ଯେ ତଥାପି । ୩୮ ।
ସନ୍ତାନ ନିମନ୍ତେ ଚରୁ ଫୁଟାଇଲେ
ବ୍ରହ୍ମଚାରୀ ଭିନ୍ନ ଭିନ୍ନ ଆରୋପଣ କଲେ । ୩୯ ।
ରେଣୁକାକୁ ଡାକଣ ଯେ କହନ୍ତି ମହାମୁନି
ଦୁହେଂଯାକ ଯେଝା ଚରୁ ଖାଇବ ଯେ ଚହ୍ନି । ୪୦ ।
ଅଗ୍ନି କୋଣେ ଅଛି ଯେଉଂ ଚରୁଦିଅ ତାଂକୁ
ଖାଇବା ପାଇଂକ ଦେବ ଗାଧି ଭରଯାଂକୁ । ୪୧ ।
ଅଇଶାନ୍ୟ କୋଣରେ ଅଛି ଯେଉଂ ଚରୁଅନ୍ନ
ତୁମ୍ଭେ ଶଉଚ ହୋଇ ତାହା କରିବ ଆପ୍ୟାନ । ୪୨ ।
ଏହା କହି ଜମଦଗ୍ନି ଆହ୍ୱାନକେ ଗଲେ
ଶୁଣି ଦୁଇ ଭଗ୍ନୀଯାକ ଆନନ୍ଦିତ ହେଲେ । ୪୩ ।
ସତ୍ତ୍ୱନକା ମହାସ୍ୱଷ୍ଟି ଗାଧିର ବନିତା
ସ୍ନାନ କରଣ ଆଗ ହୋଇ ଅଇଲେ ତୁରିତା । ୪୪ ।
ଅଇଶାନ୍ୟ କୋଣରେ ଯେଉଂ ଚରୁ ରହିଥିଲା
ଆଗ ଯାଇଂ ତାହାକଇଂ ଆହାର ଯେ କଲା । ୪୫ ।
ଜମଦଗ୍ନି ଭାରଯା ଯେ ରେଣୁକା ଅଟନ୍ତି
ବ୍ରାହ୍ମଣର ନାରୀ ସେ ସାକ୍ଷାତେ ମହାସ୍ୱଷ୍ଟି । ୪୬ ।
ସ୍ନାହାନ ସାରି ପରେ ସେ ଅଇଲେ ହୋଇ ଶୁଚି
ଦେଖିଲେ ସେ ଅଗ୍ନିକୋଣ ଚରୁ ମାତ୍ର ଅଛି । ୪୭

ରେଣୁକା ବୋଇଲେ ବଦଳାଇ କର ଅପା
ମୋହୋର ଚରୁ ଭକ୍ଷଣ କଲ ତୁମ୍ଭେ କମ୍ପା । ୪୮ ।
ସେହିଠା କହି ସେଉଂ ଚରୁ ଥିଲା ଅଗ୍ନିକୋଣେ
ରେଣୁକା ତାହାକୁ ଗ୍ରାସ କଲେକ ଆପଣେ । ୪୯ ।
କପଟେ ବଗୃର ସତ୍ତନକା ସେହିଠା କଲା
ବ୍ରହ୍ମଛତ୍ରୀ ଚରୁ ତହୁଁ ପାଲଟ ହୋଇଲା । ୫୦ ।
ଶୁଣ ବଇବସ୍ୱତ ମନୁ ବଦସୂତ୍ର ଅଗସ୍ତି
ଛତ୍ରୀମତେ ସେଉଂ ଚରୁ ଦେଇଥିଲେ ଯତ୍ତି । ୫୧ ।
ତାହାନେଇ ପ୍ରାଶନ ଯେ କଲକ ଶ୍ରେଷ୍ଠା
ଋଷି ଭାଗ ଚରୁ ଗ୍ରାସ କଲେ ସତ୍ତନକା । ୫୨ ।
ଗାଧି ରାଜା ପୁତ୍ର ହେଲା ବିଶ୍ୱାମିତ୍ର ନାମ
ଜମଦଗ୍ନିଙ୍କ ଅଉରସେ ହେଲେ ପ୍ରଶୁରାମ । ୫୩ ।
ଋଷିଙ୍କର ଘରେ ଉତପତ୍ତି ହୋଇଲାକ ଛତ୍ରୀ
ଛତ୍ରୀ ଘରେ ଜନ୍ମ ହେଲେ ବିଶ୍ୱାମିତ୍ର ଯତି । ୫୪ ।
ଆପେ ଥାଇ ପୁତ୍ରକୁ ଯେ ଗାଦୀ ଦଲେ ଗାଧି
ମାରନ୍ତ ଦୁଷ୍ଟ ଦଇତଂକୁ ବିଶ୍ୱାମିତ୍ରେ ଖେଦି । ୫୫ ।
ବାହୁବଳେ ସାଧ କଲେ ଗାଧିରାଜା ସୁତ
ନବସହସ୍ର ରାଜା ଥିଲେ ଯେତେକ ଦୁରନ୍ତ । ୫୬ ।
ଚଉରଙ୍ଗୀ କ୍ଷଉଣୀ ବଳ ଅଟଇ ତାହାର
ଅନୁବ୍ରତେ ଧାଗବଜେ ହୁଅନ୍ତ ବାହାର । ୫୭ ।
ସର୍ବସାଧି ଜଗୁଜତା ହେଲେ ବିଶ୍ୱାମିତ୍ର
ଯାଗ ହୋମ ଆରମ୍ଭ ଯେ କରନ୍ତି ନିୟତ । ୫୮ ।
ସୁବୃଷ୍ଟି କରଇ ଇନ୍ଦ୍ର ସୁଖୀ ସର୍ବପ୍ରଜା
ସୁଖେ ଆମଦାନି ରାଜା କରେ କର ସଞ୍ଜା । ୫୯ ।
ସୁଖେ ପ୍ରଜା ପାଳେ ବିଶ୍ୱାମିତ୍ର ମହାରାଜ
ପାଞ୍ଚ ସହସ୍ର ଯୋଜନ ଅଟଇ ସେ ରାଜ୍ୟ । ୬୦ ।
ମକର ଶୁକଳ ପକ୍ଷ ନବମୀର ଦିନ
ଗୁରୁବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ । ୬୧ ।

ସେହିଦିନ ବିଶ୍ୱାମିତ୍ର ଦଳବଳ ସଙ୍ଗେ
ଭଗବାନଙ୍କୁ ବାହାରିଲେ ନବରଙ୍ଗେ । ୬୨ ।
ତୁଙ୍ଗଭଦ୍ରା ନଦୀ ଦେଇ ସଇନ ଗଲେ ମାତ୍ର
ହିମବନ୍ତ ଠାରୁ ଗଲେ ସାତପୂର୍ଣ୍ଣ ରାତ୍ର । ୬୩ ।
ମହାବଳୀ ଦଇତଙ୍କୁ ଯେ ମାଇଲେ ବନେ ପଶି
ବନଫଳ ଭକ୍ଷିଣ ବୁଲନ୍ତି ଅହର୍ନିଶି । ୬୪ ।
ଲେଉଟିଲେ ମାଘ ଶୁକ୍ଳ ଦ୍ୱାଦଶୀର ଦିନ
ଯାଗ କରିବାକୁ ବିଜେ କଲେ ଯେ ବହନ । ୬୫ ।
ପାତାଳ ଗଙ୍ଗାରେ ସେ ଯେ ନିତ୍ୟକର୍ମ ସାରି
ଚନ୍ଦ୍ରଭାଗା ନଦୀ ତୀରେ ଆସନ୍ତି ବିଜେ କରି । ୬୬ ।
ସେ ନଦୀ ତୀରେ ବଶିଷ୍ଠଙ୍କର ଯେ ଆଶ୍ରମ
ତହିଂ ପ୍ରବେଶିଲେ ବିଶ୍ୱାମିତ୍ର ଅବଶ୍ରାମ । ୬୭ ।
ବଶିଷ୍ଠଙ୍କ ପାଦେ ବିଶ୍ୱାମିତ୍ର ପ୍ରଣାମି
ବୋଇଲେ ଅଇଲୁ ଚଉବଂଶ ବନ ଭ୍ରମୀ । ୬୮ ।
ଭକ୍ଷ କିଛୁ ନ ମିଳିଲା ସେହି ବନ ଦେଶେ
ଗୃହଦିନ ହେଲା ରହିଅଛୁଂ ଉପବାସେ । ୬୯ ।
ବଶିଷ୍ଠ ବୋଇଲେ ସ୍ନାହନ ସାରିଆସ ବାବୁ
କ୍ଷଣକେ ରହିଲେ ବାବୁ ଅନ୍ନ ପାଣି ଦେବୁ । ୭୦ ।
ରାଜା ବୋଇଲେ ଋଷି ସଇନ କ୍ଷୁଧାର୍ତ୍ତି
ସେହାଙ୍କୁ ଭକ୍ଷ ଦିଅ ଯେମନ୍ତେ ହୋଅନ୍ତି ତିପୁତ୍ତି । ୭୧ ।
କେମନ୍ତେ ଅନ୍ନ ଭୁଞ୍ଜିଣ ଆମ୍ଭେ ଏକା ହେବୁଂ ତୋଷ
ବିଶ୍ୱାମିତ୍ର ବୋଇଲେ ଥାଠଯାକ ଅଛନ୍ତି ଯେ ଉପାସ । ୭୨ ।
ତହୁଂ ବଶିଷ୍ଠ ବୋଇଲେ ତୁମ୍ଭେ ସମସ୍ତେହେଂ ବସ
ଚରୁ ଅନ୍ନ ଟିଏ ଦେବୁ ଆମ୍ଭେ ରହିଥିବ ଯଶ । ୭୩ ।
ସମସ୍ତେ ଯେ ଏକ ଏକ ପତ୍ର ପାତି ବସ
ଦେଉଅଛୁଂ ଆମ୍ଭେ ଅନ୍ନ ଯେତେ ଯେ କର ଗ୍ରାସ । ୭୪ ।
ଶିଷ୍ୟ ସହ ଆମ୍ଭେ ଯେ ପରଷିବୁଂ ସମସ୍ତଙ୍କୁ
ଭୋଜନ କରିଣ ଯିବ ଯେ ଯାହା ବାସ ଭବନକୁ । ୭୫ ।

ତହୁଁ ସେ ସଇନେ ବସିଲେ ତିନସହସ୍ର ମାଡ଼ି
ସମସ୍ତେ ଆଗରେ ଗୋଟିକ ଗୋଟିକ ପତ୍ର ପାଡ଼ି । ୭୬ ।
ବଶିଷ୍ଠ ଋଷିଙ୍କର ଯେ ତିନସହସ୍ର ଶିଷ୍ୟ
ସର୍ବେ ପରଶନ୍ତି ଅନ୍ନ ହୋଇଣ ହରଷ । ୭୭ ।
ବଶିଷ୍ଠଙ୍କ ଘରଯା ଯେ ଅଟନ୍ତି ଅରୁନ୍ଧତୀ
ସାକ୍ଷାତେ ଲକ୍ଷ୍ମୀ ସେ ଯେ କୋଟିକଳ୍ପ ମହାସତୀ । ୭୮ ।
କୁଣ୍ଡୁଆ ଗୋଟିଏକ ଯେ ଘୃତ ରାନ୍ଧିଛନ୍ତି
ତହୁଁ ଡାଲି ଅନ୍ନ ନିଜ ସ୍ୱାମୀ କରେ ଦ୍ୟନ୍ତି । ୭୯ ।
ବଶିଷ୍ଠ ଆଶ୍ରମୁଁ ଆଣି ଦିଅନ୍ତି ଶିଷ୍ୟଙ୍କ କରେ
ଶିଷ୍ୟମାନେ ପରଶନ୍ତି ଯେ ଅତି ଖରତରେ । ୮୦ ।
ବଶିଷ୍ଠଙ୍କର ନନ୍ଦନ ଯେ ସୁସଜ୍ଞ ବ୍ରାହ୍ମଣ
କାମଧେନୁ ଗୋଟିକ ଯେ ଘଣ୍ଟେ କରନ୍ତି ଦୋହନ । ୮୧ ।
ତହୁଁ ସାତକ୍ଷଉଣୀ ସେନ ଭୁଞ୍ଜି ବସିଲେ ବିଶ୍ୱାମିତ୍ରେ
କୁଣ୍ଡେଇକ ଅନ୍ନ ଗାଈ ଗୋଟିକର ଦୁଧେ ଶାନ୍ତ କଲେ ଭଗବନ୍ତେ ।୮୨।
ନିବୃତ୍ତ ହୋଇଣ ଭୁଞ୍ଜ ପୂରେଇଣ ପେଟ
ଉଦନ୍ତ ହୋଇଣ ତହୁଁ ବୋଲନ୍ତି ବଶିଷ୍ଠ । ୮୩ ।
ବ୍ରାହ୍ମଣର ଅନ୍ନ ଯେ ଅଟଇ ପରମାନ୍ନ
ମନ ପୂରି କରି ସର୍ବେ କର ହୋ ଭୋଜନ । ୮୪ ।
ଯଜ୍ଞ୍ୟଅନ୍ନ ବୋଲି ଯାହା ହୋଇବ ନିବୃତ୍ତ
ଯେଝା ଅନୁରୂପେ ଭୁଞ୍ଜି ଲଭ ତୁମ୍ଭେ ଶାନ୍ତ । ୮୫ ।
ପୁଣି ବୋଇଲେ ତୁମ୍ଭେ ତ ରାଜପୁତ୍ରମାନେ
ନିବୃତ୍ତ କରି ଆମ୍ଭେ ଦେଇ ପାରିବୁଁ କେସନେ । ୮୬ ।
ସାତଦଣ୍ଡଠାରୁ ସର୍ବେ ଭୁଞ୍ଜି ଯେ ବସିଲେ
କ୍ଷୁଧାକ୍ରମେ ଭୁଞ୍ଜୁ ଭୁଞ୍ଜୁ ସୂର୍ଯ୍ୟ ଅସ୍ତ ହେଲେ । ୮୭ ।
ଯାର ଇଚ୍ଛା ଯେତେ ତାଙ୍କୁ ଦିଅନ୍ତି ସନ୍ତୋଷେ
କୁଣ୍ଡେଇକ ଘୃତ ଧେନୁ ଗୋଟିକ ଦୁଧ ଯେ ନ ସରେ । ୮୮ ।

---

୭୭।୧ ବଶିଷ୍ଠ ଋଷିଙ୍କର ଯେ ଅଶୀସହସ୍ର ଶିଷ୍ୟ । (୦)

ଭକ୍ଷଣ କରି ଉଠି ନୃଆରନ୍ତି ବଳେ
ଗଣ୍ଡ୍‌କୀ ନଦୀର ତୀରେ ଶୋଇଲେ ସକଳେ । ୮୯ ।
ବଶିଷ୍ଠଂକୁ ପୁଚ୍ଛନ୍ତି ଯେ ବିଶ୍ୱାମିତ୍ର ରାଯ୍ୟେ
ଯେ ବଡ ଅଦ୍ଭୁତ କଥା ତୁମ୍ଭର ମୁନି ହେ । ୯୦ ।
କୁଣ୍ଠୋଇଯେ ଅନ୍ନ ଆଜ ଯେକ ଗାଈ ଦୁଧ
ସାର ନୃଆର ସଭଯେ ହୋଇଲେ ପ୍ରବୋଧ । ୯୧ ।
ବଶିଷ୍ଠେ ବୋଇଲେ ଯେବେ ବିଜେ କର ରାଜା
ରହାଲ ଲଗିଲ ଯେଅଂ ବହନ ହୋଇ ଯା ଯା । ୯୨ ।
ବିଶ୍ୱାମିତ୍ର ବୋଇଲେ ମୁନି ହେ ତୁମ୍ଭନ୍ତ ମୋହୋର ସେବା
ଯେ କାମଧେନୁ ଗୋଟିକୁ ମୋତେ ଦେବା । ୯୩ ।
ବଶିଷ୍ଠେ ବୋଇଲେ ମହାରାଜା ହୋଇଣ ଯେହେନେକ ବିଗୃରୁ
ରାଜା ହୋଇ କେମନ୍ତେ ନେମ୍ଭଂ ବ୍ରାହ୍ମଣର ଗୋରୁ । ୯୪ ।
ମାଗିଲେ ଗାଈ ଯହୁଂ ନ ଦିଲେ ବଶିଷ୍ଠେ
ବିଶ୍ୱାମିତ୍ରଂକୁ ବୁଝାଇଲେ ଅମନାର୍ଯ୍ୟ ଦୁଷ୍ଟେ । ୯୫ ।
ବିଶ୍ୱାମିତ୍ର ବୋଇଲେ ବନସ୍ତେ ଥିବା ଠିକ
ଚରିଗଲେ ଗାଈ ଗୋଟି ଅଡାଇ ନେମାକ । ୯୬ ।
ଗାଈ ଦୁହିଂ ବନସ୍ତକୁ ଦିଲେ ମୁନି ମେଲ
ବଳାକାରେ ନ ପିବୃଟି ମହାମନ୍ତ୍ରେ ବୋଲ । ୯୭ ।
ଗାଈ ଚରନ୍ତେଣ ଯାଇ ବେଢିଲେ ସଇନ
ଅଡାଇ ନେମାକୁ ହାଥେ ନଉଡଯେ ନଉଡଯେ ଧେନ । ୯୮ ।
ବେଢିଣ ଅଡାଇ ନେମାକୁ ଲେଉଡୁଛନ୍ତି ବଳେ
ଦେଖିଣ ଗୋମାତା ଯେ ଧାଇଂଲା କୋପାନଳେ । ୯୯ ।
ମହାକୋପ ଅନଳ ନୟନେ ଗୃହିଂଲକ ଟେଳ
ସହସ୍ରେ ଯୋଦ୍ଧା ପଡଲେ ହୋଇଲେ ଭସ୍ମଧୂଳ । ୧୦୦ ।
ପୃଶିହିଂ ଅନେକ ଯୋଦ୍ଧା ମିଳିଲେକ ଆସି
ଶିଙ୍ଗେଣ ଗୋମାତା ସକଳ ସଇନ ଧ୍ୱଂସି । ୧୦୧ ।
ଗୋମାତାର ଶିଙ୍ଗ ଖୁରା କୋଠାର ତୀଖ ଚରଣୁ
ରୋମେ ରୋମେ ନାରଜ ଯାଇଣ ବରନ୍ତୁ । ୧୦୨ ।

ସୈକ ରେମେ ପଡନ୍ତେ କୋଟିସୈ ସହସ୍ର ଶରବୃଷ୍ଟି
ରଥ ଗଜ ଅଶ୍ୱ ସମସ୍ତେ ପଡନ୍ତି ମହୀଲୋଟି । ୧୦୩ ।
ଅନ୍ତରାଳେ ବୁଲିବଇ ଗୋମାତା ଶିଙ୍ଗଗୋଟି
ପବନହୁଂ ବେଗ ହୋଇ ସଇନ୍ୟନ୍ତ ଯାଇଂ ଘୋଟି । ୧୦୪ ।
ଗୋମାତାଂକ ଶିଙ୍ଗ ତେଜ ଅମୋଘ ଶକତ
ନୟନେ ଅନଳ ଶସ୍ତ୍ରରେ ବକାଶନ୍ତ ଜ୍ୟୋତ । ୧୦୫ ।
ମହା ଭଇରେବ ହୁଂକାର ଶବଦେକ ଦିଲ୍ଲ
ନଶ୍ୱାସ ଘାତେ ସମସ୍ତ ସଇନ ନାଶଗଲ୍ଲ । ୧୦୬ ।
ମହାବାତେ ଯେବନ୍ତେ ଉଡ ପଡନ୍ତି ପତଙ୍ଗେ
ପଡଲେ ସମୋଦ୍ରେ ଉଡ, କେ ଉଡଗଲେ ଗଗନ ମାର୍ଗେ । ୧୦୭ ।
ସେ କାମଧେନୁର ମୁଖ ନଶ୍ୱାସର ବାତେ
ବଶ୍ୱାମିତ୍ର ରାଜା ଉଡ ପଡଲେ ମହାକୂଟ ପର୍ବତେ । ୧୦୮ ।
ଭଗନସ୍ତ ହୋଇଣ ସେ ବଶ୍ୱାମିତ୍ର ମହାରାଜା
ଆପଣା ରାଜ୍ୟକୁ ନ ଯାଇ ପାଇଲ୍ଲ ବଡ ଲଜ୍ଜା । ୧୦୯ ।
ଚଳଇ ବଶ୍ୱାମିତ୍ର ରାଜା ନଜ ଦେଶ ମଣ୍ଡଳେ
ଅଷ୍ଟବସୁନ୍ତ ରାଇ ସେ ବୋଲଇ ମହୀପାଳେ । ୧୧୦ ।
ଆହୋ ଅଷ୍ଟବସୁ ତୁମ୍ଭେ ମିତ୍ର ସୈହକ୍ଷଣି
ଚଉର୍ଯ୍ୟ କର ବଶିଷ୍ଠଂକର ଗାଈଗୋଟି ଦେବ ଆଣି । ୧୧୧ ।
ବଶ୍ୱାମିତ୍ରଂକର ବୋଲ ସେ ଭାଙ୍ଗିତ ନୁଆର
ସେ ଅଷ୍ଟବସୁ ଗଲେ ଗାଈ ଚୈର କର । ୧୧୨ ।
ଦୁହନ କର ଗାଈଗୋଟି ମୁନ ମେଲହିଲେ ବନସ୍ତେ
ଗଣ୍ଡୂକୀ ନଦୀକୂଳରେ ସେ କାମଧେନୁ ଚଳଇ ନଚନ୍ତେ । ୧୧୩ ।
ଗୋହରଣ ମନ୍ତ୍ର ଯେ ଜାଣନ୍ତ ଅଷ୍ଟବସୁ
ମନ୍ତ୍ରଧୂଳ ପକାଇଲେ ଗାଈ ଚରିଆସୁଂ । ୧୧୪ ।

---

୧୦୩ ସୈକ ରେମ ଝାଡେନ୍ତ କୋଟି କୋଟି ନାରାଜ ବରଷି
ରଥ ଗଜ ଅଶ୍ୱ ଛଇଗୁଡେ ଯା'ନ୍ତ ଫୁଟି । (ଜ)

୧୦୯ { ଭଗ୍ନ ମନୋରଥ ହେଲେ ବଶ୍ୱାମିତ୍ର ନୃପ
ମାନସରେ ଜାଣ ହେଲ୍ଲ ଅତ୍ୟନ୍ତ ସନ୍ତାପ । (ଖ, ଠ)

ମନ୍ତ୍ରବଳେଣ ପଛେ ଗୋଡାଇଲାକ ଗାଈ
ଆଗ ଆଗ ହୋଇ ଚଳନ୍ତି ଯେ ଅଷ୍ଟଭାଇ । ୧୧୫ ।
କାମଧେନୁ ଘେନଣ ଚଳନ୍ତି ଅଷ୍ଟବସୁ
ଦନକର ହୋଇଲେ ପହରେକ ଆସୁ ଆସୁ । ୧୧୬ ।
ହୋମନ୍ତର ସମୟେ ସୁମନ୍ତ୍ରେକ ଗାଈ ଲୋଡଗଲେ
ଗଣ୍ଡକୀ ନଦୀଘାଟରେ ଯାଇଂ ଲୋଡ ନ ପାଇଲେ । ୧୧୭ ।
ବଶିଷ୍ଠଂକୁ କହିଲେ ଗୋମାତା କାହିଂ ନାହିଂ
ଚଉକତ ଲୋଡନ୍ତ ନ ପାଇଲୁଂ କାହିଂ । ୧୧୮ ।
ଧ୍ୟାନ କରଣ ଜାଣିଲେ ବଶିଷ୍ଠ ମହାମୁନ
ବୋଇଲେ ଅଷ୍ଟବସୁ ଚୋରିକରି ଗଲେ ଘେନ । ୧୧୯ ।
ବଶିଷ୍ଠ ମହାଋଷି ଗୋଡାଇଣ ଆସି
ଆଦିତ୍ୟ ଦେବତା ଆସି ତିନପ୍ରହର ବିକାଶି । ୧୨୦ ।
ଋଷିକୁଲ୍ୟା ନଦୀଘାଟରେ ଧର୍ମକେଳ ପର୍ବତ
ସେ ପର୍ବତ ତଳେ ନେଇ ଲୁଚାଇଲେ ଗୋମାତ । ୧୨୧ ।
ମନ୍ତ୍ରବଳେଣ ବାନ୍ଧିଲେ ବାଳବଛା
ପର୍ବତ ତଳେ ଅଛନ୍ତି କେହି ନାହିଂ ରକ୍ଷା । ୧୨୨ ।
ଗଣ୍ଡା ଗୋଟିଏକ ବସୁୟେ ଆଣିଲେକ ମାରି
ପର୍ବତ ତଳେଣ ସେ ଅଗ୍ନି ସଂଜାଳ କରି । ୧୨୩ ।
ଅତିଯତ୍ନ କରି ଚର୍ମ ଉତାରଣ ମାଂସେ
ଖଣ୍ଡପନେ ପୁରୋଇଲେ ବୃକ୍ଷ ଯେ ମାଂସେ । ୧୨୪ ।
ପଶ ସିଂକରଣ ସେ ଭରିଲେ ଅଗ୍ନିର
ସଉରି ବଧିକରି ଅଗ୍ନି ଜାଳ ପାକ କଲେ ତହିଂର ଉପରେ ।୧୨୫।
ଗାଈର ତହିଂ ଯେ ଦୁହିଂଲେ ଦୁଧ ପୁଟି
ଗଣ୍ଡାର ମାଂସେ ସହ ଅଷ୍ଟଭାଗ କରି ବାଣ୍ଟି । ୧୨୬ ।
ଦାରାକ୍ଷ ଫଳ ଯେ ଗୁଡାଏକ ଲୋଡ ଆଣି
ଭୋଜନ କରନ୍ତି ସେ ଯେ ଅମିୟ ରସ ଜାଣି । ୧୨୭ ।

---

୧୨୧। ଋଷିକୁଲ୍ୟା ନଦୀତଟରେ ମଧୁମଥନ ପର୍ବତ । (ଖ, ଠ, ଥ)

ବଶିଷ୍ଠେ ଲୋଡନ୍ତେ ଯେ ଆଦିତ୍ୟ ଅସ୍ତଗଲେ
ସେ ପର୍ବତ ତଳେ ମୁନି ଗାଈକି ଭେଟିଲେ । ୧୨୮ ।
ବଶିଷ୍ଠ ମହାମୁନି ଗାଈ ଧେନ ଆସୁଂ
ପର୍ବତୁଂ ଓଡଇଂପଡିଲା ଅନଳେକ ବସୁ । ୧୨୯ ।
ଧାଇଂଲା ଅନଳେକ ବସୁ ଧେନଣ ନଉଡି
ବଶିଷ୍ଠଂକ ଉପରେ ପିଟିଲା ନେଇ ବାଡି । ୧୩୦ ।
ବାଡି ବାଜନ୍ତେ ବଶିଷ୍ଠଂକର ବଡ କୋହ
ସ୍ୱଗେଣ ଶାପ ଦିଲେ ତୁ ରେ ଅନ୍ଧହୋଅ । ୧୩୧ ।
ବଇକୁଳ୍ୟେ ଶାପ ଯେ ଦିଲେ ତପୋନିଷ୍ଠି
ଅନଳେକ ବସୁର ତକ୍ଷଣେ ଚକ୍ଷୁଗଲା ଫୁଟି । ୧୩୨ ।
କାମ୍ୟେକ ବନରେ ଯେ ପଡିଲା ଅନ୍ଧହୋଇ
ଉଚସ୍ୱରେ ଡାକଇ ମୋତେ ବଶିଷ୍ଠେ କର ଦାହି । ୧୩୩ ।
ଭକତମସ୍ଥଳ ସେ ଯେ ଅଟନ୍ତି ତପୋନିଷ୍ଠି
ବୋଇଲେ ଆପଣେ ନାଶକ୍ଲୁ ତୋହୋର ଗ୍ୟାନଗୋଷ୍ଠି । ୧୩୪ ।
ସତ୍ୟଯୁଗ ସତରଲକ୍ଷ ଅଠାଇଶି ସସ୍ର ଯାନ୍ତେ
ତ୍ରେତୟା ଯୁଗ ବାର଼ଲକ୍ଷ ଛୟାଣୋଇ ସହସ୍ର ଅନ୍ତେ । ୧୩୫ ।
ତଥାପି ତୋହୋର ଅନପଟଳ ନ ଫିଟିବ
ଯେବେ ମୋହୋର ବଚନ ଯେ ଅବଶ୍ୟ ଫଳିବ । ୧୩୬ ।
ଦ୍ୱାପର ଯୁଗେ ସୋମବଂଶେ ଜାତ ହୋଇବେ ଯୁଧିଷ୍ଠି
ଅର୍ଜୁନ ଅରଣ୍ୟେ ଧେନ ଆସି କାମ୍ୟେକବନେ ତୋତେ ଭେଟି ।୧
ଯୁଧିଷ୍ଠିଂକ ଦ୍ରଶନେ ତୁ ପାଉ ସିନା ଚକ୍ଷୁ
ଦୋଷକଲା ଅବସ୍ଥାକୁ କର୍ମେ ବିକଳ ହେଉଅଛୁଂ । ୧୩୮ ।
ପୁଣ କୋପେ ଗୋଡାଇ ଆସି ଭେଟିଲେ ଉମାବସୁ
ବଶିଷ୍ଠଂକୁ ଓଗାଳିଲେ ଗାଈ ଧେନଆସୁ । ୧୩୯ ।
ଅପାର ଭର୍ତ୍ସନା କରି ବଶିଷ୍ଠଂକୁ ସ୍ୱଗେଣ ଓଗାଳି
କୋପେଣ ବଶିଷ୍ଠଂକୁ ପକାଇ ଦିଲା ପେଲି । ୧୪୦ ।

---

୧୩୩।୧ କାର୍ତ୍ତିକ ବନରେ ଯେ ପଡିଲା ଅନ୍ଧହୋଇ । (ଚ, ଜ)

ଜଗତନାଶାନ୍ତି ହେ ଇଣ ପଡଲେ ବଶିଷ୍ଠେ
କୋପେଣ ବୋଇଲେ ଆରେ ଆରେ ରେ ପାପିଷ୍ଠେ । ୧୪୧ ।
ବହନ୍ତା ପୁରୁଷ ହୋଇ ତୁମ୍ଭେ ଯେତେ ମନ୍ଦ ଅଟ
ଜନ୍ମ ହୋଇଣ ତୁମ୍ଭେ ରେ ହୋଅ ମୁଣ୍ଡକାଟ । ୧୪୨ ।
ଉମାବସୁ ବୋଇଲେ ବଶିଷ୍ଠଂକୁ ତୋଳ
ଶାଳପତ୍ର ଘେନ ବଶିଷ୍ଠଂକ ଶରୀର ଶୀତଳ । ୧୪୩ ।
ଉମାବସୁର ବଶିଷ୍ଠ ଘେନଲେ ଭଗତ
ତୁ ରକ୍ଷାହୋଅ ନ ଛୁଅ ତୋହୋର ଗାତ । ୧୪୪ ।
ଉମାବସୁ ବୋଇଲେ ତୋହୋର ଯେ କୋପ
ମୁକତ କାରଣ ମୋତେ କହବା ସରୂପ । ୧୪୫ ।
ବଶିଷ୍ଠେ ବୋଇଲେ ତୁ ହୋ ଶୁଣ ଉମାବସୁ
ଗଙ୍ଗାର ଓଦରେ ଜାତହୋଅ ସେ ତୁମ୍ଭନ୍ତ ନାଶୁ । ୧୪୬ ।
ଛଡଂକର ମୁଣ୍ଡ ଯେ ଛେଦୁଂ ସେ ଜାହ୍ନବୀ
ଯେତେକାମାନ ତୁହ୍ମ ଥିବୁ ଶରୀର ସମ୍ଭବୀ । ୧୪୭ ।
ଗଙ୍ଗାର ଗର୍ଭେ ତୋହୋର ଖ୍ୟାତ୍ମ ନାମ ହୋଉ
ଭାରଥ ଯୁଦ୍ଧରେ ଶରଶେଯ୍ୟାର ତୋହୋର ବନଯାଉ । ୧୪୮ ।
ଯେ ଛଡବାରେ ଗଙ୍ଗାର ହାଥେ ଶିରଚ୍ଛେଦ ହୋଅନ୍ତୁ
ଜଇନ୍ତା ଶବରୁଣୀ ଉଦରେ ଜନମ ପାଅନ୍ତୁ । ୧୪୯ ।
ଯଦୁର ଘରେ ତୁମ୍ଭେ ପାଞ୍ଚେ ହୋଅ ବନ୍ଧ
ଆରେ ତୁମ୍ଭେ ମୋତେ ଯେ ଅନେକ ଅବସ୍ଥା ଅଛ ଦେଇ । ୧୫୦ ।
ପାଣ୍ଡବନ୍ତ ତୁମ୍ଭେ ରେ ଉପୁଗାର କର
ଗୋରୁଚ୍ଛେର ଦୋଷ ଯେ ହୋଉ ତୁମ୍ଭର ପାର । ୧୫୧ ।
ଶୁଣ ବଇବହୁନ୍ତ ମନୁ ବଦସ୍ଥନ୍ତ ଅଗସ୍ତି
ପାଣ୍ଡବଂକର ହତେ ସେ ହୋଇଲେ ଉତପତି । ୧୫୨ ।

---

୧୪୨।୨ ଜନ୍ମେ ଜନ୍ମେ ହୋଉଥାଉ ତୁମ୍ଭର ମୁଣ୍ଡକାଟ । (ଖ,ଠ)

୧୪୩।୨ ଉମାବସୁ ପୁରୋଚନ ପଣ୍ଡା ପୁଣି ହୋଉ । (ଖ, ଠ)

୧୪୯ { ଜଇନ୍ତା ଉଦରେ ପାଞ୍ଚହେଂ ଉପୁଜନ୍ତୁ ଯାଇଂ
ଉମାବସୁ ପୁରଞ୍ଜନ ବ୍ରାହ୍ମଣୀ ଗର୍ଭେ ଜାତ ହୋଇ । (ଝ)

ଅନଳବସୁ ଯେ ଅନ୍ଧ ହୋଇଥିଲ
ଯୁଧିଷ୍ଠିରଂକ ଦରଶନେ ଚକ୍ଷୁ ସେ ପାଇଲ । ୧୫୩ ।
ପଞ୍ଚବସୁ ଦ୍ରୁପଦ ହୋଇଲେ ପାଣ୍ଡବଂକ ହିତେ
ପୁରୋଚନ ବହ୍ନି ହେଲା ପାଣ୍ଡବଂକ ଅର୍ଥେ । ୧୫୪ ।
ପାଣ୍ଡବ ହିତେ ଗାଙ୍ଗେୟ ହୋଇଲେ ଶରଶଯ୍ୟା
ବଶିଷ୍ଠଂକ ଶାପୁଂ ସେ ହୋଇଲେ ପରତେଜ୍ୟା । ୧୫୫ ।
ଆହୋ ଚଇତନ ସତ୍ୟ ତ୍ରେତୟା ଦ୍ୱାପର କଳିଯୁଗେ
ଗୋରୁ ଚୋରାଇ ଅଷ୍ଟବସୁ ନ ରହିଲେ ଜନସ୍ୱର୍ଗେ । ୧୫୬ ।
ବିଶ୍ୱାମିତ୍ର ଅର୍ଥେ ଅଷ୍ଟବସୁ ନାଶଗଲେ
କାମଧେନୁ ଗାଈ ଘେନ ବଶିଷ୍ଠେ ଚଳଗଲେ । ୧୫୭ ।
ଚଇତନ ପୁଚ୍ଛା ଯେ କଲେକ ମନୁକୁ
ସେ ପଞ୍ଚକୁମାର କଥା କହିବା ମୁନି ମୁକୁ । ୧୫୮ ।
ଶୁଣ ହୋ ମହାତମା ତୁ ଯାହା ପୁଚ୍ଛସି
ସେକମନ କର ତୁ ଯେ ଚଳସ୍ତେ କରସି । ୧୫୯ ।
ବିଶ୍ୱାମିତ୍ର ତୁଲେ ଯେ ବଶିଷ୍ଠ ଅପ୍ରୀତି
କାଳେ କାଳେ ଗୋର ହୋଇଲେ ଅପକୀର୍ତ୍ତି । ୧୬୦ ।
ଶୂନ୍ୟ ପାତାଳ ବିତାଳ ସୁତଳ ଭୁବନେ
କାହିଂ ପଶି ନୁଆରଲେ ବିହନ୍ତା ପୁରୁଷମାନେ । ୧୬୧ ।
ଆହୋ ଚଇତନ ଅବଦ ନାମେ କାଳ ସତ୍ୟଯୁଗେ
ବିହନ୍ତା ପୁରୁଷେ ରହି ନୁଆରଲେ ଜନସ୍ୱର୍ଗେ । ୧୬୨ ।
ସେଥୁ ଅନନ୍ତରେ ବିଶ୍ୱାମିତ୍ର ନରପତି
ବଶିଷ୍ଠଂକ ଆଶ୍ରମରେ ମିଳିଲେ ଯାଇଂ ଧାଇଁ । ୧୬୩ ।
ବିନୟ କର କହନ୍ତି ତୁମ୍ଭରେ କାରଣ ମୋତେ ହୋଇବ ହେ ବଶିଷ୍ଠ
ସଂକଳ୍ପ କର ଅଇଲ ଗାତେ ମୁଂ ହୋଇବି ତପୋନିଷ୍ଠ । ୧୬୪ ।
ବଶିଷ୍ଠ କହିଲେ ତପକଇଂ ବିଧି
ବିଶ୍ୱାମିତ୍ର ବୋଇଲେ ତୁମ୍ଭର ପ୍ରାପ୍ତେ ହୋଇବ ସିଦ୍ଧି । ୧୬୫ ।

---

୧୬୫ । ବିଶ୍ୱାମିତ୍ର ବୋଇଲେ ତୁମ୍ଭ ପ୍ରାପ୍ତେ ହୋଇବ ବାଞ୍ଛା ସିଦ୍ଧି । (ଗ)

ତୁମ୍ଭକଇଂ ଦହନ କରନ୍ତେ ମୋହୋର ଇଚ୍ଛା
ତେବେ ସେ ପୂରୋଇବ ମୋହୋର ମନୋବାଞ୍ଛା । ୧୬୬ ।
ତହୁଂ ରାଜ୍ୟତ୍ୟାଗ କରି ବଶିଷ୍ଠଂକ ରାଗେ
ତପ କରିବାକୁ ଗଲା ହିମାଳ ପଶ୍ଚିମ ଭାଗେ । ୧୬୭ ।
ସିଦ୍ଧ ଧବଳାଙ୍ଗୀ ଯେ ମାଳତୀ ନାମେ ନଦୀ
ଈଶାନ୍ୟଭାଗୀ ସେ ପୁଣ୍ୟତୋୟା ସରସ୍ୱତୀ ଭେଦ । ୧୬୮ ।
ହିଙ୍ଗୁଳା ପର୍ବତ ତହିଂ ମାଳତୀ ନଦୀ ତଟେ
ତହିଂର ପଶ୍ଚଭାଗେ ପର୍ପଟୀ ନାମେ ବଟେ । ୧୬୯ ।
ସେ ବଟ ତଳରେ ରାଜା ବସିଲା ଦୃଢ ଆସନେ
ନିରାହାର ହୋଇଣ ସେ ଭକ୍ଷିଲା ପବନେ । ୧୭୦ ।
ନିରଞ୍ଜନ ଲକ୍ଷ୍ୟ କରି ବସିଲା ନିରାଶେ
ଯେତୁକ ଆସନେ ବସିଲା ଅଷ୍ଟୋତ୍ତର ଶତେ ଯେ ବରଷେ । ୧୭୧ ।
ନାରଦେ କହିଲେ ଯାଇଂ ଦେବ ଅସକଦେ
ବିଶ୍ୱାମିତ୍ର ରାଜା ତପେ ବସିଲା ବଶିଷ୍ଠଂକ ବାଦେ । ୧୭୨ ।
ରାଜ୍ୟଭାର ସିଂହାସନ ସମସ୍ତ କଲା ତେଜ୍ୟା
ମହା ନିରାଶେ ବସିଲା ଆହାର ମଇଥୁନ ନାହିଂ ଶେଯ୍ୟା । ୧୭୩ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ପଦକୁ ସେ କରିଅଛଇ ଇଚ୍ଛା
ବିବୃତ ଦିଗପାଳେ ବହନେ ହୋଅ ରକ୍ଷା । ୧୭୪ ।
ନାରଦଂକ ବଚନେ ଯେ ଇନ୍ଦ୍ର କଲା ଶଂକା
ସନ୍ନିଧେ ହକାରିଲା ଅପସରୀ ମେନକା । ୧୭୫ ।
ତା ସଙ୍ଗେ ଦେଇ କନ୍ଦର୍ପ ବସନ୍ତ ସମୀର
ବିଶ୍ୱାସ କରିଣ ଯେ କହଇ ପୁରନ୍ଦର । ୧୭୬ ।

---

୧୬୯।୨ { ତହିଂର ପଶ୍ଚଭାଗେ ସାଂକୁଟ ନାମେ ବଟେ । (ଘ)
ତହିଂର ପଶ୍ଚିଭାଗେ ପରଫୁଟି ନାମେ ବଟେ । (ଥ)
ତହିଂର ପଶ୍ଚଭାଗେ ଅନ୍ତେଶ୍ୱର ନାମେ ବଟେ । (ଖ)

୧୭୧।୨ ଯେତୁକ ଆସନେ ବସିଲା ସେ ଯେତୁକଶତ ବରଷେ । (ଜ)

୧୭୬ { ଆବର ହକାରିଲା ମଳୟ ବସନ୍ତ ବେନି
ମେନକାକୁ ରାଇଣ ବୋଇଲେ ସହସ୍ରଯୋନି । (ଘ, ଜ, ଥ)

ବଶିଷ୍ଠଂକ ତୁଲେ ବିଶ୍ୱାମିତ୍ର ଯେ ବିବାଦୀ
ନିରାକାର ବୋଧି ମୋର ସମ୍ପଦ ହେନମ ଆଚ୍ଛାଦ । ୧୭୭ ।
ଋଷି ବିପ୍ର ତୁଲେ ଯେ ଭଜନ୍ତ ତପୋଧନୀ
ବିଶ୍ୱାମିତ୍ର ତପ ଭଗ୍ନକର ମଳୟ ବସନ୍ତ ହେନ । ୧୭୮ ।
ମୋହୋର ନିମନ୍ତେ ତୁହି ସହ ଯେବେ ଦୁଖ
ନ ସାଧିଲେ ମ୍ଭେ କାର୍ଯ୍ୟ ମୁଂ ହୋଇବି ନିରେଖ । ୧୭୯ ।
ଶୁଣିଣ ସାଆସ ଯେ ଉଡିଲ୍ ମେନକା
ତିନପୁର ଲୋକେ ଯେବଣ ମୁନିଂକ କରନ୍ତି ଶଂକା । ୧୮୦ ।
ହାରିଲେ ଯାହାକୁ ହିମ ବସନ୍ତ କନ୍ଦର୍ପ
ମୁଂ କିସ ଭଗ୍ନ କରିବି ତାର ଘୋରତପ । ୧୮୧ ।
ତୁମ୍ଭେ ଦେବ ଜଗତଜନ ସପୂଳ ହିତକାରୀ
ହେ ମହାପ୍ରଭୁ ମୋତେ ଆଗ୍ୟାଂ ଦିଅ ହେ ବଗୃର । ୧୮୨ ।
କେଉଂଣ ଦୋଷ ମୁଂ ତୁମ୍ଭର କରିଥିଲି ପୂର୍ବେ
ତାହାଂକ ଶାସ୍ତି ଦେବ ବିହିଲ ନାଥ ଯେବେ । ୧୮୩ ।
ଚଉଷଠି କୋଟି ଅପସରୀ ମଧ୍ୟେ ହେଲି ମୁଂ ଅପରାଧୀ
ମୋତେ ନାଶ କର ନାଥ ତୁହାଂକ କେଉଂଣ ସମ୍ପ୍ରଧି । ୧୮୪ ।
ଇନ୍ଦ୍ର ବୋଇଲେ ରେ ବାଳା ତୁ ମୋର ଦୁଃଖେ ଦୁଖୀ
ଯେ ମହାସଂକଟୁ ମୋତେ ବାରେ ରଖ ଶଶୀମୁଖୀ । ୧୮୫ ।
ଉଠିଣ ମଘବା ଧଇଲେ ମେନକାର ବେନି ହାଥ
ମୋହୋର ପାଇଂ ପ୍ରାଣେ ନାଶ ହୋଇବୁ ରେ ସଂଘାତ । ୧୮୬ ।

---

୧୭୮ { ଋଷି ତପୀମାନଂକେ ସେ ଅଟେ ବଡ ମାନୀ
ତା ତପ ବିନାଶି ମଧୁ ମଦନଙ୍କୁ ଘେନି । (ଙ, ଠ)

୧୮୦ { ଯେହୁ ଶୁଣି ଥରହର ହୋଇଲା ମେନକା
ବୋଲେ ବ୍ରହ୍ମା ଇନ୍ଦ୍ର ଯେଉଂ ମୁନିଂକ କରନ୍ତି ଯେ ଶଂକା । (ଖ)

୧୮୦ { ଶୁଣିଣ ସନମତେ ଉଚ୍ଛୁଳିଲି ମେନକା
ବ୍ରହ୍ମା ଇନ୍ଦ୍ର ରୁଦ୍ର ଯେବଣ ମୁନିଂକୁ କରନ୍ତି ଶଂକା । (ଔ, ଥ)

୧୮୧।୧ ମହା ହେମବନ୍ତରେ ସେ ହରିଲା କନ୍ଦର୍ପ । (ଘ, ଥ)

୧୮୧।୨ ମହାଦେବଙ୍କର ଯେ ମୁନି ହରିଲେକ ଦର୍ପ । (ଜ)

୧୮୦।୧ ସାଆସ—ସାହସ ।

ଅନେକ ଦ୍ରବ୍ୟେ ସନ୍ତୋଷ କହିଲେ ପୁରୁହୂତ
ଶୁଣିଣ ମେନକା ଯେ କଲ୍ଲକ ସନମତ । ୧୮୭ ।
ଅନେକ ଅଳଂକାର ଯେ କୁବେର ଯୋଗାଇ
ଅମଳାଣ ବସ୍ତ୍ର ଆଣି ଆଦିତ୍ୟ ଯେ ଦେଇ । ୧୮୮ ।
ଦିବ୍ୟବେଶ ଧୋଇଣ ସେ ନିଜଗ ମୋହିନୀ
ଚଳଇ ମେନକା ମଳୟ ବସନ୍ତକୁ ଘେନି । ୧୮୯ ।
ଶୁଣ ବଇଦସୁତ ମନୁ ବଦମୂର୍ତ୍ତି ଅଗସ୍ତି
ଦେବଇନ୍ଦ୍ର ବଚନେ ମେନକା ଗଣ୍ଡଲ ଅମର ବାରସ୍ତ୍ରୀ । ୧୯୦ ।
ମନବଚନ କର୍ତ୍ତବ୍ୟ ନିରୋଧି ପଞ୍ଚୁଆତ୍ମା
ଦେବ ବରଷେ ଅଷ୍ଟ ଉତ୍ତର ଶତେ ବରଷ ଚକ୍ଷୁ
ନ ଫେଡିଲେ ମହାତ୍ମା । ୧୯୧ ।
ମେନକା ଅପଛରୀ ମିଳିଲା ସନ୍ନିଧାନେ
ମଧୁରେ ବୀଣା ବଜାଇ ସେ କରଇ ଗାୟନେ । ୧୯୨ ।
ସାଙ୍ଗ ପ୍ରେମ ମଧୁର ଧୂନି ସପତସ୍ୱରେ ବାଣୀ
ଝଂକାରେ ଭରହରଷ କଲା ସେ ଅଣ୍ଡିଗ କୋକିଲ ଜାଣି । ୧୯୩ ।
ଥମ୍ଭନ ମୋହନ ବଶ ଉଚ୍ଚାଟନ ଆଦି ପଞ୍ଚୁବାଣ
ସନ୍ନିଧେ ପୂରେଇଣ ରହିଅଛି ସେ ମଦ୍ୟାଣ । ୧୯୪ ।
ବସନ୍ତ ପବନ ଘେନି ମଳୟ ବହଇ
ଯାହାର ବହନ୍ତେ ଶୁଖିଲା ତରୁ ପଲ୍ଲବଇ । ୧୯୫ ।
ଅବସନ୍ତେ ବସନ୍ତ ଯେ ବହଇ ଘନ ଘନ
କସ୍ତୁରୀ ଗନ୍ଧ ଘେନି ବହଇ ମଳୟ ପବନ । ୧୯୬ ।
କ୍ଷଣକେ ଗୀତନାଦ କ୍ଷଣକେ କରତାଳ
ଉନମତ୍ତ ସୁନ୍ଦରୀ ଭରହରଷେ ବୋଲ । ୧୯୭ ।

---

୧୯୩ { ତାନ ମାନେ ପ୍ରକାଶିଲା ସୁଲଳିତ ଧ୍ୱନି
{ ମଧୁରେ ଢଣିଲା ଅଣ୍ଡିର କୋକିଳ ବାଣୀ । (ଖ)

୧୯୪।୧ ସ୍ତମ୍ଭନ ସମ୍ମୋହନ ଉନ୍ମାଦନ ଶୋଷଣ ତାପନ ।

୧୯୬ { ବସନ୍ତ ଲକ୍ଷ୍ମ କରଣ ଗାୟେ ନବବାଳୀ
{ ଯେ ଲଳିତ ସ୍ୱରେ ଯାୟେ ପାଷାଣ ତରଳି । (ଖ, ଠ)

୧୯୭ { କ୍ଷଣକେ ପ୍ରୀତି ଗୀତ କ୍ଷଣକେ କରତାଳି
{ ଆନୁଆନ ସୁନ୍ଦରୀ ଭରହରଷେ ବୋଲି । (ଘ)

ବହଇ ସମୀର ସୁସଙ୍ଗ ମଳୟାନିଳ
ବାତ ବଧାତେ ଦେହରୁ ଉଡଇ ଅଞ୍ଚଳ । ୧୯୮ ।
ଅସମ୍ଭାଳ ହୋଇ ଯେ ଦେଖାଏ ସ୍ତନବେନି
ଧଣେ ବେନିଜାନୁ ଘୃଷ୍ଟିଣ ଝୀନ ପଡମା । ୧୯୯ ।
ମଳୟ ବସନ୍ତ ଯେନଣ ଯହୁଂ ବହଇ ମୟାଣ
ପଲ୍ଲବତ ହେଲେ ତହୁଂ ଶୁଖିଲ୍ଲ ବୃକ୍ଷମାନ । ୨୦୦ ।
ପୃଥିବୀ ଆପ ତେଜ ବାଇବ ଆକାଶ
ପଞ୍ଚଧାତୁ ସନ୍ଧଲେ ସେ ଧର୍ମଗଲ୍ଲ ନାଶ । ୨୦୧ ।
ପାଷାଣ ତରଳ ଯେ ନିର୍ଝର ବହଇ
ଖଣ୍ଡ ଖଣ୍ଡ ହୋଇଣ ଶିଳା ଶିଖରୁ ଖସଇ । ୨୦୨ ।
ବସନ୍ତ ଋତୁରେ କୋକିଳ ରବଇ ଘନ ଘନ
ଅକାଳେ ପଲ୍ଲବତ ହୋଇଲେ ତରୁଲତାଗଣ । ୨୦୩ ।
ବନଙ୍କର ଆଦି କରି ହରିଣ ହରିଣୀ
କୋକିଳନାଦ ଶୁଣିଣ ହୋଇଲେ ବିରହିଣୀ ।୨୦୪।
ଯେକାକାର ହୋଇଲେ ଯେ ମାନତା ଗଉରୋବୀ
ଧାରି ଧାରି ହୋଇଲେ ଟଳଇ ଭୂବଦେବୀ । ୨୦୫ ।
ବିଶ୍ୱାମିତ୍ରଙ୍କ ସନ୍ନିଧେ ପ୍ରବେଶ ମେନକା
ବନ ଜୀବଜନ୍ତୁ ନାହିଁ ସୁନ୍ଦରୀ ତହିଁ ଯେକା । ୨୦୬ ।
ଯୁବା ସେ ସୁନ୍ଦରୀ ଯେ ବିଶେଷେ ବିରହିତା
ଜଗୁଜନ ମୋହିନୀ ଯେ ଆବର ପୂରଣ ସଙ୍ଗୀତା । ୨୦୭ ।
ଉରହର ନାୟିକା ସେ ଅଳପ ହସ ହସ
ଅବଲୋକନ କରି ଗୁହାଂକେ ନାଭିଜ ଅତି ଖଞ୍ଚ । ୨୦୮ ।
ମଦନ ମାଦନ ହୋଇଣ ସେ ଆରତ ହୋଏ କାମ
ବିଶ୍ୱାମିତ୍ର ଶରୀରେ ପଡ଼ିଲ୍ଲ ପଞ୍ଚବାଣ । ୨୦୯ ।

---

୨୦୭ { ନବାଯାର ସୁନ୍ଦରୀ ସେ ପ୍ରେମରସ ଲତା
{ ମଦନ ମୋହନକାରୀ ସୁସଙ୍ଗୀତ ଗୀତା । (ଖ)
୨୦୮।୨ ଅବଲୋକନେ ଗୁହାଙ୍କେ କାମଦେବ ଉଲ୍ଲାସ । (ଜ)

ମଦନ ଅସକତେ ଯେ ଶରୀର ବିକୋଣ
ମଉନେ ସମାସ୍ୟା ନ ଦଅନ୍ତି ମହାପଣ । ୨୧୦ ।
ସନ୍ନିଧିରେ ଥାଇଣ ନାୟିକା କରେ ସେବା
ଦେଖାଇଣ ଉରଜ ବେନି ଅଙ୍ଗଭଙ୍ଗୀ ଶୋଭା । ୨୧୧ ।
ମେନକା ବୋଇଲା ମୁଂ ସଂସାର କଲି ଯେ ଉପେକ୍ଷା
ତପେଣ କାମନା ମୋର ବନକୁ ବଡ ଇଚ୍ଛା । ୨୧୨ ।
ମହାପୁଣ୍ୟତୋୟା ସେ ପରମପଦ ଭୂମି
ତୁମ୍ଭ ଚରଣେ ଖଟିଥିବ ଆଜ୍ଞା ଦେଲେ ଦେବସ୍ୱାମୀ । ୨୧୩ ।
ତପର ପ୍ରତିଆଶେ ମୁନି ବାକ୍ୟ ନ ଫୁଟିଲା ମଉନେ
ହାଥଠାରି ବୋଇଲେ ରହିଥାଅ ଆମ୍ଭ ସନ୍ନିଧାନେ । ୨୧୪ ।
ଧୂରକୁ ନ ଯିବୁ ଯେଣୁ ଅଛନ୍ତି ବ୍ୟାଘ୍ର ଯେ ଭଲ୍ଲୁକ
ଦଇତେ ଦାନବେ ଛନ୍ତି ପିଶାଚ ରାକ୍ଷସ ଅନେକ । ୨୧୫ ।
ଯେମାନେ ଦେଖିଲେ ଅବଶ୍ୟ ତୋତେ କରିବେଟି ଭକ୍ଷ
ବନ୍ଧୁ ସୋଦର କେହି ନାହିଂ ଅଛୁ ତୁ ନିରେଖ । ୨୧୬ ।
ମାୟା ଗୃହ୍ୟପହଲ ସେ ପାତିଲା ଚଉରୀ
ମତିଭ୍ରମ କରାଇଲା ଯେତେକ ବ୍ରହ୍ମଚାରୀ । ୨୧୭ ।
ଆହେ ବୁଧଜନେ ନାରୀ ଯେତେ ମୋହକାରୀ
ଯେତେ ଯତି ହେଉ ନଅନ୍ତି ତାର ଚଉ ହରି । ୨୧୮ ।
ମହାଲୟେ ତପ ଅଷ୍ଟୋତ୍ତର ଶତ ବରଷ
ମେନକା ଯେ ଖଟିଥାଇ ଋଷୁଣୀ ଦିବସ । ୨୧୯ ।
ମେନକା ଯେ ରହିଲା ତହିଂ ଦ୍ୱାଦଶ ବରଷ
ବିଶ୍ୱାମିତ୍ର ସଙ୍ଗତେ ସେ କଲା ପରିହାସ । ୨୨୦ ।
କେତେକାଳେ ମହାତମା ତପ ଛାଡି ଗଲେ ଉଠି
ମେନକାକୁ କୋଳ କରି ଧରିଲେ ସାଉଁଟି । ୨୨୧ ।

---

୨୧୧।୧ ଦେହଣ ନ୍ୟ ହୋଇଲ ମୁଂ ନାହିଂ ମୋ କୁଳବାନ୍ଧବା । (ଜ)

୨୧୨ { ମେନା ବୋଲେ ମୁନି ଯୋଗମୋହ କର ତେଜ୍ୟା
{ ତପକଇଂ ଆସିଣ ଦରିଛ କୁଶଶଯ୍ୟା । (ଥ, ଠ, ଙ)

୨୧୮ { ଆହେ ବୁଧଜନେ କାମଦେବର ଯେତେ କଷ୍ଟ
{ ବିଶ୍ୱାମିତ୍ର କଲେ ତହିଂ ଯେତେକ ଚେରେଷ୍ଟା । (ଘ)

ସେ ମେନକା ସଲଜତ ଭାବେ ପୁଣ ବୋଲି
ଧର୍ମ ଧର୍ମ ହୋଇଣ ମୁନିଂକ ବାଲୀ ପେଲି । ୨୨୨ ।
ଯେତୁଡେ ବଡ ମହାରାଜା ଭାର ସିଂହାସନ ନବାଶ
ତୁମ୍ଭର କୋପକଲେ ମୁଂ ସମ୍ଭୋଡେ ଜୀବ ନାଶ । ୨୨୩ ।
ତୁମ୍ଭ ପାଦେ ଆଶ୍ରେ କରି ରହିଲି ଯୋଗେ କରି ଇଚ୍ଛା
ମୁହିଂ ଯେ ଅନାଥୁଣୀ ନାରୀ ମୋତେ ବାରେ କର ରକ୍ଷା । ୨୨୪ ।
ମେନକା ବୋଇଲା କେଶବାସ ମଳିନ ତୁମ୍ଭର
ଅଟହିଂ ପୂତିଗନ୍ଧ ତୁମ୍ଭର ଜଟାଭାର । ୨୨୫ ।
ନଦୀର ଭିତରେ ଯାଇଂ ପଶିଲେ ତପୋଧନୀ
ଜଟା ଛଡାଯେ ମେନକା କରେ କୁଠାର ଯେ ଘେନି । ୨୨୬ ।
ପୂତିଗନ୍ଧ ଅଙ୍ଗରୁ ଯେ ଛଡାଇ କାମିନୀ
ଆପଣେ କେଶ ସେ ଯେ ପୋଛନ୍ତି ମହାମୁନି । ୨୨୭ ।
ସ୍ନାହାନ ସାରି ସେ ବିଶ୍ୱାମିତ୍ର ମହାସନ୍ତ
ଭୋଗ ଇଚ୍ଛା କରି ସେ ଗୁଡିଲେ ତପବୃତ୍ତି । ୨୨୮ ।
କଟି କଷା କଉପୁନୀ ଦୂରେ ବାଲେ ପିଙ୍ଗି
ପିନ୍ଧିଲେ ଦେବାଙ୍ଗ ବାସ କର୍ପୂର ତାମ୍ବୂଳ ଭୋଗୀ । ୨୨୯ ।

---

୨୨୨ { ଦେଖିଣ ମେନକା ଯେ ବିନୟ ଭାବ ହୋଇ
ଧର୍ମ ଧର୍ମ ବୋଲିଣ ସେ ମୁନିଂକେ ବୋଲଇ । (କ)

୨୨୨ { ସଲଜ୍ଜରେ ମେନକା ମୁନିଂକ ପେଲି ଦେଇ
ଧର୍ମପଥ ଦେଖାଇ ଯେ ମୁନିଂକେ ବୋଲଇ (ଖ)

୨୨୩ { ତୁମ୍ଭେ ରାଜଋଷି ତେଜିଣ ସ୍ୱର୍ଗ ଆଶ
ଯାହାର କୋପନ୍ତେ ଘନ ଜଗତ ଯିବ ନାଶ । (କ)

୨୨୩ { କାହପାଇଂ ମୁନି ମୋତେ କର ପରିହାସ
ତୁମ୍ଭେ କୋପକଲେ ମୁଂ ଜୀବନେ ହେବି ନାଶ । (ଙ, ଠ)

୨୨୬।୯ ମେନକା ଜଟା ଫେଡଇ ଗନ୍ଧ ତଇଲ ଘେନି ।

୨୨୭ { ନାନା ସୁଗନ୍ଧ ପଦାର୍ଥ ମୁନି ଦେହେ ବୋଳି
ଘଷି ଘଷି ଧଉତ କଲା ସେ ମେନକା ବାଳୀ । (କେତେକ ପୋଥି)

୨୨୯ ପିନ୍ଧିଲେ ଚୀନବାସ କର୍ପୂର ତାମ୍ବୂଳ ଭୋଗୀ । (ଖ, କ, ଥ, ଠ)

ଅମୃତ ଲଡ଼ୁ ନେଇ ପରଶଇ ଚତୁର୍ଷ୍ଣୀ
ହରଷରେ ଭୁଞ୍ଜିଲେ ସେ ବିଶ୍ୱାମିତ୍ର ତପସ୍ୱୀ । ୨୩୦ ।
ଭୋଜନ ସାରି ଯନ୍ତ୍ର ମେନକା ସଙ୍ଗ ମେଳେ
ବଢ଼ିଲ ରତିରସ ଯେ ଚର୍ପଟୀ ବନ୍ଧ ଛଳେ । ୨୩୧ ।
ସାତ ସହ ଆବର ଦିବସ ପର୍ଯ୍ୟନ୍ତେ
କ୍ଷଣକେ ବିଶ୍ରାମ ନାହିଁ ଶୃଙ୍ଗାର ଅନୁବ୍ରତେ । ୨୩୨ ।
ସହ ଅର୍ଦ୍ଧମାନରେ ଗଲ ସେ ମେନକା
ମାଳତୀ ମଣ୍ଡପରେ ମୁନି ରହିଲେ ଯେ ଏକା । ୨୩୩ ।
ନିଦ୍ରାରୁ ଚେଇଁ ଉଠିଲେ ଯହୁଁ ପ୍ରସନ୍ନ ହୋଇଲ ଚିତ୍ତ
ମେନକା ମେନକା ବୋଲି ଡାକନ୍ତି ଚଉକନ୍ତି । ୨୩୪ ।
ମେନକାକୁ ନ ଦେଖି ସେ ଲୋଡ଼ନ୍ତି ଘୋରବନେ
ଅନେକ ଗିରି କନ୍ଦର ଭେଦି ପଶିଲେ ଗହନେ । ୨୩୫ ।
ତହୁଁ ଗଲ ଅପ୍ସରୀ ହୋଇଣ ସାନନ୍ଦ
ଅମର ସଭାରେ ଯାଇଁ ଭେଟିଲ ଅସକନ୍ଦ । ୨୩୬ ।
ସମସ୍ତ କଉତୁକ ସେ କହଇ ଚତୁର୍ଷ୍ଣୀ
ଅନେକ ହରଷ ହେଲେ ଶୁଣି ବଜ୍ରଧାରୀ । ୨୩୭ ।
ମେନକାକୁ ନ ପାଇଣ ଯେ ମନରେ ବିଷାଦ
ଜାଣିଲେ ମୁନିବର ଏ ଦେବତାଂକର ଛନ୍ଦ । ୨୩୮ ।
ବ୍ରହ୍ମା ମୋତାରେ ଯେବେ କଲକ ଏସନ
ବ୍ରହ୍ମପଦ ନେବଇ ମୋର ଦୃଢ଼ ଏ ବଚନ । ୨୩୯ ।
ଏତେବୋଲି ମହାତମା କଲକ ସଂକଳ୍ପ
ପୁଣି ଊର୍ଦ୍ଧ୍ୱରେତା ହୋଇ ଆରମ୍ଭ କଲ ତପ । ୨୪୦ ।
ତଳରେ ଥାପିଲେ ସେ କାଳାନଳ ଆହୁତି
ଅଗ୍ନିକୁଣ୍ଡକୁହିଁ ଉହିଁ ଜାଳୁଛନ୍ତି ବିକୋଡ଼ି । ୨୪୧ ।

---

୨୩୧ { ହାସ ପରିହାସ ମୁନି କରନ୍ତି ମେନକାର ମେଳେ
{ ବଳାଇ ରତିରଙ୍ଗ ସେ ଫୁଟି ବନ୍ଧ ଛଳେ । (କେତେକ ପୋଥିର ପାଠ)

ବେନ ଖମ୍ଭ ପୋତ୍ତ ପକାଇଲ ଧାରଣା ଯେତିକାକାଠେ
ତହିଂ ଉପରେ ନେଇ ଛନ୍ଦିଲ ପାଦବୃନ୍ଦେ । ୨୪୨ ।
ମହା ଆହୁତି ଉପରେ ଥୋଇ ତମ୍ଭାର କପୋଗ
ମହାତେଜ ଅନଳରେ ମହାତେଜ ଭଗ । ୨୪୩ ।
ହୋମକୁଣ୍ଡ ଅଗ୍ନି ତେଜ ଉପରକୁ ଉଠି
ପଶିଲ ଦେହରେ ନାସାକର୍ଣ୍ଣ ଚାକ୍ଷୁ ଫୁଟି । ୨୪୪ ।
ଗଙ୍ଗାଧାର ପ୍ରାୟେକ ରୁଧିର ହେଲ ବୃଷ୍ଟି
ଯେପର କଠୋର ତପ କରେ ତପୋନିଷ୍ଠି । ୨୪୫ ।
ସେ ରୁଧିର ଝର ଝର ପଡ଼ଇ ତମ୍ଭାଭାଣ୍ଡ
ସେ ରୁଧିର ଆହୁତ ଯେ କଲେ ମୁନ ଅଗ୍ନିକୁଣ୍ଡେ । ୨୪୬ ।
ସେ ଅଗ୍ନିରେ ଦହିଜ ହୋଅଇ ବିଶ୍ୱାମିତ୍ର କାୟେ
ମାଂସ ମିଳାଇଣ ପଡ଼ଇ ଅନଳର ଘାୟେ । ୨୪୭ ।
ଯେ ବିଧିରେ ଶତେବର୍ଷ ଘୋରତପ କଲ
ବଇଶ୍ୟାନର ମୁଖରୁ ସେ ପୁଣି ଉବୁରିଲ । ୨୪୮ ।
ସେ ବେଳର ପାପ ସବୁ କଲକ ସେ ହତ
ପୁଣ୍ୟମାନ ସେ ରାଜାର ଯେ ହୋଇଲ ଉଦ୍‌ଗତ । ୨୪୯ ।
ପୁଣି ବିଶ୍ୱାମିତ୍ର ସେ ମହା ଅନନ୍ତଂ ଉତ୍ତର
ମାଂସ ପକାଇ ଅଗ୍ନିରେ ହୋମ ଯେ ଆଚର । ୨୫୦ ।
ପୁଣ ପୁଣ ଦମାଜୁ ପୋଡୁ ରହିଲା ମାତ୍ର ଅସ୍ଥି
ପୁଣି ଅଗ୍ନିରୁ ଶରୀର ହେଲା ଉତପତ୍ତି । ୨୫୧ ।
ସଭ୍ଭବ ସାତ୍ତ୍ୱଶେ ପୂର୍ବପର ହେଲା କାୟେ
ପାପ ଆତ୍ମା ଗୁଡ ରାଜା ନରକୁଳ ହୋୟେ । ୨୫୨ ।
ପବନ ବହଇ ସେ ମାତ୍ର ଆହାର ନାହିଂ
ଦଶଦ୍ୱାର ରୁନ୍ଧଣ ବସିଛନ୍ତି ନିସ୍ପୃହୀ । ୨୫୩ ।

---

୨୪୭।୨ ମାଂସ ମିଳାଇଣ ପଡଇ ରକତର ପ୍ରାୟେ । (ଠ, ଥ)
୨୫୨।୨ ପାପ ଆତ୍ମା ଗୁଡି ରାଜା ନାରକାର ଲୟେ । (ଖ, ଠ)

ଆପଣାର ପବନ ଆପଣା ଅଙ୍ଗେ ଲଗନ କଲା
ଉଜାଣି ଟେକଣ ବଜ୍ରସେନ୍ଧ୍ୟା ଯେ ଛନ୍ଦିଲା । ୨୫୫ ।
ଖେଚରୀ ଛନ୍ଦରେ ଯେ ବନ୍ଧିଲା ପଞ୍ଚମୁଦ୍ରା
ନବଧାଡ଼ ଟେକି ତୋଳିଲା ନବରନ୍ଧ୍ରା । ୨୫୬ ।
ନିରାକାର ଭଜନେ ଧୂର୍ତେ ବସିଲା ତପୋବନ୍ତ
ସେକାଳସ୍ଥେ ଆର ବସିଲ ଲୟେ ବ୍ରହ୍ମ ପରନ୍ତ । ୨୫୭ ।
ଶରୀର ଯାକ ତାର ଚରିଗଲେ ଉଇପୋକ
କଣ୍ଠ ସନେ ମୁନି ହୋଇଗଲେ ଉଇହୁଙ୍କା ସେକ । ୨୫୭ ।
ଏହିପରି ରହିଲେ ସେ ବରଷ ନଅଲକ୍ଷ
ବଲ୍ମୀକ ଭୂମିରେ ପୁଣି ହୁଂକା ଯେ ପ୍ରତ୍ୟକ୍ଷ । ୨୫୮ ।
ବାହାର ହୋଇଲା ପୁଣି ବୃକ୍ଷ ଦର୍ବୀଜଟି
ପୃଷ୍ଠି ଲମ୍ବିତ ଜଟା ପାତାଳ ଭୁବନ କଂଟି । ୨୫୯ ।
ଶୀତ ବାତ ବର୍ଷଣ ଯେବଣ ବହନ
ଆହାର ମଳମୂତ୍ର ନିଦ୍ରା ଉପେକ୍ଷିଲ ତନ । ୨୬୦ ।
ଯେମାନ ନ ଭେଦେ ବିଶ୍ୱାମିତ୍ରଂକର କାୟେ
ମୁଣିହିଂ ଦଶଲକ୍ଷ ବରଷ ତପ କଯେ । ୨୬୧ ।
ବ୍ରହ୍ମା ସନେ ବୋଇଲେ ତୁ ଯାଅ ଯା ବଶିଷ୍ଠ
ଘେନିଆସ ଯାଇଂଣ ସେ ବିଶ୍ୱାମିତ୍ର ତପିଷ୍ଠ । ୨୬୨ ।
ପିତାର ବଚନେ ସେ ଚଳିଲେ ବ୍ରହ୍ମବେତ୍ତା
ବିଶ୍ୱାମିତ୍ରଂକୁ କହିଲେ ଆକାଶର ବାରତା । ୨୬୩ ।
ଆସ ହୋ ବିଶ୍ୱାମିତ୍ର ବୋଲି ବୋଇଲେ ବଚନେ
ତପୀଂକର ତୁଲେ ବସ ମହର୍ଷି ପଣେ । ୨୬୪ ।
ତହୁଂ ବିଶ୍ୱାମିତ୍ର ବୋଇଲେ ତୁ ଶୁଣ ହୋ ବଶିଷ୍ଠ
ତୋହୋ ସମାନେ ମୁନିହିଂକ ହୋଇଲି ତପିଷ୍ଠ । ୨୬୫ ।

---

୨୫୯ { ବାହାର ହୋଇଲା ପୁଣ ଜହ୍ନା ଉଇହୁଦା ପଟି
ପାତାଳକୁ ନେଲେ ଜଟା ମଞ୍ଜୁରେ କଟି । ( ୯,୦ )

୨୬୦ { ଶୀତ ବାଢ ବରଷଣ ସକଳ ସହଇ
କାହାକୁ ନ ଛନ୍ଦେ ବିଶ୍ୱାମିତ୍ର ନରସାଇଂ । ( ୯ )

ବଶିଷ୍ଠେ ବୋଇଲେ ତୋହୋର ଯେତେକ ତପ କାହୁଁ
ରାଜଋଷି ପଣ ପାଇଲୁ ମେନକାର ତହୁଁ । ୨୬୬ ।
ପୁଣି ତପ କଲାରୁ ହୋଇଲୁ ଯେ ମହଋଷି
ବ୍ରହ୍ମଋଷି ହୋଇଲେଟି ଆମ୍ଭ ସଙ୍ଗେ ବସି । ୨୬୭ ।
ବିଶ୍ୱାମିତ୍ର ବୋଇଲେ ମୁଂ କମ୍ପାଇଂ ତେବେ ଯିବ
ତୋହୋର ସମାନେ ଋଷି ହେଲେ ତପରୁ ଉଠିବ । ୨୬୮ ।
ବଶିଷ୍ଠ ନେଉଛି ଯାଉଂ ସେ ନିରାଶେ ଭଜିଲା
ପୁଣି ଦଶଲକ୍ଷ ବରଷ ବସିଣ ତପକଲା । ୨୬୯ ।
ମହା ଅନଳରେ ସେ ମାସ୍ୟେଂମ୍ବ ହସ୍ତେ କାଟି
କପୋଲରେ ଭରି ରୁଧିର କରଇ ଯେ ବୃଷ୍ଟି । ୨୭୦ ।
ସ୍ୱେ ସ୍ୱଧିରେ ଦେହରୁ ସମସ୍ତ ମାଂସ କାଟି ଦଲା
ବଶିଷ୍ଠ ସମାନେ ଋଷି ହୋଇବ ବୋଲି ଅଗ୍ନିରେ ଝାସିଲା । ୨୭୧ ।
ଅନଳେ ଶରୀର ଯହୁଂ ଦହନ ନୋହିଲା
ଶତେକ ବରଷ ତହୁଂ ଅଗ୍ନିରେ ସେ ଗଡ଼ିଲା । ୨୭୨ ।
ଅଗ୍ନିକୁଣ୍ଡ ମଧ୍ୟେ ପଶି କରଇ ଯେତୁକଲଯେ
ମନ୍ତ୍ର ପରିଯନ୍ତେ ବସିଲା ନିରଞ୍ଜନଂକୁ କରି ଧ୍ୟାୟେ । ୨୭୩ ।
ଅନଳରୁ ପୁଣି ଯହୁଂ ହୋଇଲା ବାହାର
ନଖ ମୁଖ ନାସା ହେଲା ଆଗହୁଂ ତେଜକର । ୨୭୪ ।
ମହାମୂର୍ତ୍ତି ହୋଇ ଯହୁଂ ପୁଣି ଉତ୍ତୁରିଲା
ନିରାକାର ଧ୍ୟାୟି ପୁଣି ଅଗ୍ନିରେ ପଶିଲା । ୨୭୫ ।
ଅଗ୍ନି ବେଢ଼ି ଜଳଇ ସେ ତାହାର ଶରୀର
ଯୋଗଲୟେ କରି ବସିଅଛି ସେ ଅଗ୍ନିର ଭିତର । ୨୭୬ ।
ସେହି ସରୂପେ ଅନେକ କାଳ ଗଲା ଯହୁଂ
ପୁଣି ପିତାମହ ବଶିଷ୍ଠଂକୁ ଆଗ୍ୟାଂ ଦଲେ ତହୁଂ । ୨୭୭ ।
ବ୍ରହ୍ମା ବୋଇଲେ ବଶିଷ୍ଠ ବିଶ୍ୱାମିତ୍ରଂକୁ ଯେବେ ଦେନିଆସ
ଦେବଋଷି ପଣେ ବସନ୍ତୁ ସେ ଋଷିଂକର ପାଶ । ୨୭୮ ।

---

*୭୦।୨ କପୋଲରେ ନିଜ ରକ୍ତ କରଇ ଆହୁତି । (ଠ)

ଯାଇଂ ବଶିଷ୍ଠେ ବୋଇଲେ ହୋ ବିଶ୍ୱାମିତ୍ରେ ଶୁଣ
ଆସ ଆମ୍ଭ ସଙ୍ଗତେ ବସିବ ଦେବଋଷି ପଣ । ୨୭୯ ।
ଆସ ହୋ ଆକାଶକୁ ଯିବାସି ବହନ
ଶୁଣିଣ ବିଶ୍ୱାମିତ୍ରେ ତେଜିଲେ ଆସନ । ୨୮୦ ।
ବଶିଷ୍ଠଂକ ସଙ୍ଗତେ ସେ ଚଳିଲେ ମୁନିବର
ଦେବଋଷି ହୋଇଣ ସେ ଯେ ବସିଲେ ସଭାର । ୨୮୧ ।
ଦେବଋଷି ପଣେ ଯାଇଂ ସ୍ୱର୍ଗରେ ବସିଲେ
ଦଶଲକ୍ଷ ବରଷ ସେ ସେଠାରେ କଟାଇଲେ । ୨୮୨ ।
ଏକଦିନେ ସେହି ବିଶ୍ୱାମିତ୍ର ଦେବଋଷି
ଦଣ୍ଡ କମଣ୍ଡଳୁ ଘେନି ଯଶୋବନ୍ତୀ ପୁରକୁ ଯାନ୍ତେ ପଶି । ୨୮୩ ।
ପିତାମହଂକ ଦ୍ୱାରପାଳ ଶବକମଳ ବୋଲି ରାଜା
ବିଶ୍ୱାମିତ୍ରଂକୁ ବୋଇଲା ସେ ଭିତରକୁ ନ ଯା । ୨୮୪ ।
ନ ମାନି ଦ୍ୱାରକୁ ଖଅଂନ୍ତେ ପକାଇ ଦିଲା ପେଲି
ମୁହଂ ମାଡି ପଡିଗଲେ ସେ ଧର୍ମ ଧର୍ମ ବୋଲି । ୨୮୫ ।
ଦଣ୍ଡ କମଣ୍ଡଳୁ ଛାଡି ମୁନି ହୋଇଲେ ଅସାସ୍ଥ୍ୟମ
ଆରେ ଆରେ ଦ୍ୱାରପାଳ ତୋର ଯେତେ ଦୁଷ୍ଟକର୍ମ । ୨୮୬ ।
ଆରେ ମୁଂ ଯେବେ ଅଟଇ ବ୍ରହ୍ମ ସମାନେ ଋଷି
ଯାଅ ରେ ଶବକମଳ ତୁମ୍ଭେ ବ୍ରହ୍ମ ରାକ୍ଷସ ହୁଅସି । ୨୮୭ ।
ମେଣ୍ଟି ନ ହେଲା ଯେ ବିଶ୍ୱାମିତ୍ରଂକର ଶାପ
ତକ୍ଷଣେ ଶବକମଳ ହୋଇଲା କଉଣେପ । ୨୮୮ ।
ରାକ୍ଷସ ହୋଇଣ ଗୋଡାଏ ସେ ବିଶ୍ୱାମିତ୍ରଂକୁ
ନଉଡ ଉଞ୍ଚାଇ ବୋଲଇ ଆହାର ଦିଅ ମୁକୁ । ୨୮୯ ।
ଏ ବିଧିରେ ପାଞ୍ଚଦଶ ବରଷ ଗୋଡାଇ
ପୁଣି ହିନେ ମୁନି ବ୍ରହ୍ମା ଭୁବନକୁ ଯାଇଂ । ୨୯୦ ।

---

୨୮୪।୧ { କନକସମ ପାଦ, ସମାକ୍ଷିମ, କଲ୍ୟାଣ, କନ୍ୟାସ ପ୍ରଭୃତି ଦ୍ୱାରପାଳମାନଙ୍କର ନାମ ପୋଥିମାନଙ୍କରେ ମିଳେ ।

୨୮୮।୧ ଗଡଡ ଦ ଗଲା ସେ ବିଶ୍ୱାମିତ୍ରଂକର ଶାପ । (କ, ଚ)

ବ୍ରହ୍ମାଂକର ଦ୍ୱାରେ ଥିଲେ ବଶିଷ୍ଠଂକ ଶତେପୁତ୍ରେ
ରହ ରହ କାହ୍ନଂକ ଯାଉଛୁ ଆହୋ ବିଶ୍ୱାମିତ୍ରେ । ୨୯୧ ।
କଟାକ୍ଷେ ଗୃହ୍ନଂ ବୋଇଲେ ରେ ସ୍ୱେଡେକ ଦର୍ପ ବୋଲ
ପଶନ୍ତେ ବିଶ୍ୱାମିତ୍ରଂକୁ ପକାଇ ଦେଲେ ପେଲ । ୨୯୨ ।
ଅସାଷ୍ଟମ ହୋଇଣ ସେ ପଡ଼ିଲେ ତପନିଷ୍ଠ
ମୁହଂମାଡ ଚଡ ପୁଣି ଚେତା ପାଇ ଉଠି । ୨୯୩ ।
କଲ୍ମଷପାଦକୁ ମୁନି ଦେଖାଇଣ କର
ବୋଇଲେ ବଶିଷ୍ଠଂକର ଶତେପୁତ୍ର କରସି ଆହାର । ୨୯୪ ।
ମୁନିର ଆଗ୍ୟାଂ ପାଇ କଲ୍ମଷ ରାକ୍ଷସ
ବଶିଷ୍ଠଂକ ଶତେପୁତ୍ରନ୍ତ ଧରି କଲ୍ଲକ ସେହୁ ଗ୍ରାସ । ୨୯୫ ।
ସେଥୁ ଅନନ୍ତରେ ବିଶ୍ୱାମିତ୍ର ଋଷି
ବ୍ରହ୍ମାଂକର ଭୁବନେ ବହନ ଯାଇଂ ପଶି । ୨୯୬ ।
ବିଶ୍ୱାମିତ୍ର ଆସନ୍ତେ ଭୟ କଲେ ବଶିଷ୍ଠେ
ବ୍ରହ୍ମାଂକର ଆସନେ ବସିଅଛନ୍ତି ଅନେକ ତପୋନିଷ୍ଠେ । ୨୯୭ ।
ପଉଲସ୍ତି ବିଶ୍ରବା ସେ ସୁଦେବ ଅଗସ୍ତି
ମାରକଣ୍ଡ ସୁମନ୍ତେକ ଉଦ୍ଧାଳେକ ଯନ୍ତି । ୨୯୮ ।
ଭରଦ୍ୱାଜ କାଶ୍ୟପ ଅଙ୍ଗିରା ମହାଋଷି
ସେମାନେ ବ୍ରହ୍ମାଂକର ସଭାସ୍ଥେ ଛନ୍ତି ବସି । ୨୯୯ ।
ମଧ୍ୟରେ ପିତାମହ ସେ ବସିଣ ଅଛନ୍ତି
ସେମନ୍ତର ସମସ୍ତେ ପ୍ରବେଶ ହେଲେ ଯନ୍ତି । ୩୦୦ ।
ବସ ବୋଲ ତାହାକଇଂ ସେ ନ ବୋଇଲେ ବ୍ରହ୍ମା
ଅପମାନ ପାଇ ତହୁଂ ସେ ଅଇଲେ ମହାତମା । ୩୦୧ ।

---

୨୯୩।୨ ମୋହ ଭେଜ ଝେଡି ବରଷେ ଉଠିଲେ ମୁନିବରେ । (ଜ)
୨୯୯।୧ ଭାର୍ଗବ କାଶ୍ୟପ ସେ ଅରୁଣପାଠ ଋଷି । (ଖ, ଚ, ଜ, ଥ)
୦୧ { ବିଶ୍ୱାମିତ୍ରଂକୁ ଦେଖି ସମସ୍ୟା ନ ଦେଲେକ ବ୍ରହ୍ମା
{ ଅଭିମାନ ପାଇ ବାହୁଡ଼ି ଅଇଲେ ମହାତ୍ମା । (ଜ)

ପୁଣ ପ୍ରତଗ୍ୟାଂ ବିଶ୍ୱାମିତ୍ର କଲେକ ପ୍ରଚଣ୍ଡେ
ଯେଉଁଥାନ୍ତ ବ୍ରହ୍ମାପଦ ଯେଣେମି ସ୍ରିଜିବ ବ୍ରହ୍ମାଣ୍ଡେ । ୩୦୨ ।
ଲମ୍ବିତ ଜଟା ମୁନିଂକର ଅଙ୍ଗେଣ ଚରିକୁଟି
ହାଥେ ଶୂଳେକ ଧରି କଟିରେ ବଜ୍ର ଯେ କାଚ୍ଛେଛି । ୩୦୩ ।
ବିଦ୍ୟାଧରି ପୁରୁଷେକ ଆସୁଛନ୍ତି ଖେଦ
ତାହାନ୍ତ ଜିଣିଲେ ଯେ ନବସୃଷ୍ଟି ହୋଇବ ସମ୍ବାଦ । ୩୦୪ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେଉଁ ତ୍ରିଜଗଭୁବନେ
କାହୁଂ ପଶି ନୁଆରିଲେ ବିଦ୍ୟାଧର ପୁରୁଷମାନେ । ୩୦୫ ।
ସ୍ୱାୟମ୍ଭୁବ ମନୁକାଳେ ଯେଉଁକଇ ସତ୍ୟଯୁଗେ
ବିଶ୍ୱାମିତ୍ରଂକର ଭୟେ ବିଦ୍ୟାଧର ପୁରୁଷେ ରହି ନୁଆରିଲେ
ତିନ ସ୍ୱର୍ଗେ । ୩୦୬ ।
ସେ ସତ୍ୟଯୁଗରେ ହରିଚନ୍ଦନ ସତ୍ୟବାଦୀ
ଦାନେ ମାନେ ଅବଧାନେ ଶରଣ ସମ୍ବାଦ । ୩୦୭ ।

---

୩୦୨ { ଯେଉଁଥାନ୍ତ ବ୍ରହ୍ମପଦ ହରିବ ଭିଆଇବ ନବଖଣ୍ଡ
{ ମୋହୋର ତେଜ ବିକାଶିବ ସପତବ୍ରହ୍ମାଣ୍ଡ । (ଖ, ଥ)

୩୦୬ "ବିଶ୍ୱାମିତ୍ରଂକର ଭୟେ ବିଦ୍ୟାଧର ପୁରୁଷେ ରହି ନୁଆରିଲେ ତିନସ୍ୱର୍ଗେ"
ପରେ 'କ' ପୋଥିରେ ଭିନ୍ନ ପାଠ:—

ସତ୍ୟଯୁଗେ ସୂର୍ଯ୍ୟବଂଶେ ହରିଚନ୍ଦନ ନୃପତି
କହିତେ ଅସଂଖ୍ୟ ଯେ ତାହାର ବିଭୂତି ।
ବଡ଼ାଇ ପ୍ରତାପୀ ସେ ଅଟଇ ନୃପବର
ତାହାର ଦାନାପଣ ବିଖ୍ୟାତ ତିନପୁର ।

ଶତେରଥ ସୁବର୍ଣ୍ଣ ରାଜା ନିତ୍ୟେହେଂ ଦିଅଇ ଦାନ
ଅନେକ ପ୍ରଶଂସା ଯେ କରନ୍ତି ବିବୁଜନ ।

ସେମନ୍ତେ ଯେକଦିନେ ବିଶ୍ୱାମିତ୍ର ମୁନିବର
ବିଜୟେ କଲା ଯାଇଂ ହରିଚନ୍ଦନ ନୃପତି ପୁରର ।

୩୦୭।୨ ଦାନେ ମାନେଣ ଯେ ସଂସାରେ ପରସିଦ୍ଧି (ଜ)

ବିଶ୍ୱାମିତ୍ରେ ଗୋଡାନ୍ତି ବିଦ୍ୟାଧର ପୁରୁଷେ ପଳାନ୍ତି ବେଗି ବେଗି
ସେ ହରିଚନ୍ଦନ ରାଜାକୁ ଶରଣ ସମ୍ଭାଳ ବୋଲି ଅଭ୍ୟର୍ଥନା ମାଗି ।୩୦୮।
ବିଦ୍ୟାଧରେ ବୋଇଲେ ଆମ୍ଭକୁ ଶରଣ ରଖ ହରିଚନ୍ଦନ ରାଏ
ଲକ୍ଷେ ବରଷ ହୋଇଲା ପଳାଇଲୁ ବିଶ୍ୱାମିତ୍ରଙ୍କର ଭଏ । ୩୦୯ ।
ଆମ୍ଭକୁ ଧରିଣ ସେ ଯେବେ କରିବ କାର୍ଯ୍ୟସିଦ୍ଧି
ତେବେ ସେ ନବସୃଷ୍ଟି କରିଅଛିବ ବ୍ରହ୍ମାଏ ବିବାଦୀ । ୩୧୦ ।
ହରିଚନ୍ଦନ ରାଜା ଯେ ଶରଣ ସମ୍ଭାଳି
ଯେମନ୍ତର ସମୟେ ବିଶ୍ୱାମିତ୍ର ଆସି ମିଳି । ୩୧୧ ।
ବେଦ ଆଧ୍ୟାନ ସେ ଯେ କରନ୍ତି ତପନିଷ୍ଠି
ବେଦଧ୍ୱନି ଶବଦେ ସପତ ବ୍ରହ୍ମାଣ୍ଡ ଘୋଷି । ୩୧୨ ।
ରହ ରହ ବ୍ରାହ୍ମଣ ଅସଂଖ୍ୟ ମହିମା ତୋହୋର
ଯେଣେ ତୋହୋର କାର୍ଯ୍ୟ ମାଗ ହୋ ମୁନିବର । ୩୧୩ ।
କୁଶହସ୍ତ ହୋଇଣ ସେ ବିଶ୍ୱାମିତ୍ରେ ବୋଇଲେ
ଆମ୍ଭେ ଦାନ ଘେନମୁଂ ରାଜା ସତ୍ୟକରି ତୋହୋର
ଉପର ହାଥେ ଦିଲେ । ୩୧୪ ।
ତାହାଣାନ୍ତରେକ ଶଙ୍ଖେ ଜଳ ତିଳ ଭରି
ଉପର ହାଥେ ଦାନ ଦିଅଇ ଦଣ୍ଡଧାରୀ । ୩୧୫ ।
ସାକ୍ଷ ନିମନ୍ତେ ମୁନି ଦେବତାଂକ ନାମ ଯେ ଉଚ୍ଚାରି
ବିଶ୍ୱାମିତ୍ରେ ଦାନ ଘେନନ୍ତି ତଳ ହାଥ କରି । ୩୧୬ ।
ଉପର ହାଥେ ହରିଚନ୍ଦନ ରାଜା ଛାଡନ୍ତେଣ ପାଣି
ତୋହୋର ରାଜ୍ୟଯାକ ଦେବୁ ହୋ ନୃପମଣି । ୩୧୭ ।
ଯେ ତୋର ଧନଭଣ୍ଡାର ରଥ ଗଜ ଅଶ୍ୱ ଯେ ପାଦାନ୍ତି
ନବସହସ୍ର ଯୋଜନେ ଭୂ ଅଟୁ ଆଧିପତି । ୩୧୮ ।

---

୩୦୮ { ଗୋଡାନ୍ତେ କଉଶିକେ ବିଦ୍ୟାଧର ପଳାଇଲେ
ହରିଚନ୍ଦ୍ର ରାଜାଠାରେ ଶରଣ ପଶିଲେ । (ଙ,ଠ)

୩୧୭।୨ "ତୋହୋର ରାଜ୍ୟଯାକ ଦେବୁ ହୋ ନୃପମଣି" ପରେ
'କ' ପୋଥିରେ ଭିନ୍ନ ପାଠ:—
ଯେତେକ ରଥ ଗଜ ଅଶ୍ୱ ଭଣ୍ଡାର ପାଦାନ୍ତି
ସନ୍ତୋଷ ମନେ ଯେହା ଦେବୁ ଚକ୍ରବର୍ତ୍ତୀ

ଗୋଧନ ଧନ ଧାନ୍ୟ ସାଧନ ସକଳ ଗୃହବାସ
ଘେନି ସେ ମହାଦାନ ହୋଇଲେ ହରଷ । ୩୧୯ ।
ରାଜା ହରିଚନ୍ଦନ ରାଣୀ ଶବ୍ୟା କୁମାର ରୋହିତାକ୍ଷ
ସ୍ୱେ ତିନିଜଣଂକୁ ରାଜ୍ୟୁଂ ବାହାର କରି ମୁନି ଦକ୍ଷ । ୩୨୦ ।
ରାଜାରାଣୀ ପୁତ୍ର ତିନିଂକ ବାହାର କରିଦ୍ୟନ୍ତେ ବିଶ୍ୱାମିତ୍ରେ
ବୋଇଲେ ମୋର ରାଜ୍ୟେ ଅନ୍ନମାଗି ନ ଖାଇବୁ ନୃପଚ୍ଛେ । ୩୨୧ ।
ନବସହସ୍ର ଯୋଜନ ଯେ ରାଜ୍ୟ ଆସୃତନ
ରାଜାରାଣୀ ଅଶକତ ନ ପାଇଣ ପାଣି ଅନ୍ନ । ୩୨୨ ।
କୁମାର ରୋହିତାକ୍ଷ ଯେ ନୁଆରଇ ଚାଲି
କାହିଁକି ନ ଚାଲୁ ବୋଲି ବିଶ୍ୱାମିତ୍ର ତାକୁ ପକାଇ ଦଳେ ପେଲି । ୩୨୩ ।
ସୁକୁମାର କୁମର ସେ ପଡ଼ିଲା ମୂହିଂ ମାଡ଼ି
କୋପେଣ ବିଶ୍ୱାମିତ୍ର ନେଇ ପିଟିଲେକ ବାଡ଼ି । ୩୨୪ ।

---

ପରପୃଷ୍ଠାର ଅବଶିଷ୍ଟାଂଶ:—

ସତ୍ୟ ପାଳି ହରିଚନ୍ଦନ ସର୍ବ୍ୱୋକ୍ଷେ ଦାନ ଦେଲା
ପଛେ ବିଶ୍ୱାମିତ୍ର ମୁନି ଦକ୍ଷିଣା ମାଗିଲା ।
ଦକ୍ଷିଣା ଦେବୁ ଯେବେ ନାହିଂ ରାଜ୍ୟ ଧନ
ସମସ୍ତ ରାଜ୍ୟ ଯାକତ ପ୍ରଥମେ ଦେଲୁ ଦାନ ।
ଦକ୍ଷିଣା ନିମନ୍ତେ ମୁନି କଲାକ ଘଞ୍ଚାଳ
ଦେଖିଣ ବିସ୍ମୟେ ହରିଚନ୍ଦନ ମହୀପାଳ ।
ଶବ୍ୟାରାଣୀ ରୋହିତାକ୍ଷ କୁମାରକୁ ଧରି ନୃପମଣି
ବୋଇଲା ବିକେ କରି ଦକ୍ଷିଣା ଦେବି ଆଣି ।
ଶୁଣି ବିଶ୍ୱାମିତ୍ର, ରାଜାନ୍ତ ସଙ୍ଗେ ଘେନି
ବିକେ କରିବା ନିମନ୍ତେ ନେଲା ମହାମୁନି ।
ଶବ୍ୟାରାଣୀ ସହିତେ ରୋହିତାକ୍ଷ କୁମାର
ଦକ୍ଷିଣା ନିମନ୍ତେ କାଶୀପୁରକୁ ନିୟନ୍ତି ମୁନିବର ।
ରାଜାର କୁମର ରୋହିତାକ୍ଷ ଯେ ନୁଆରଇ ଚାଲି ।

୯। ହୋତାହୋଲ ଦାନେ ସେ ହୋଇଲା ( ନୋହିଲା ) ସର୍ବ୍ୱୋକ୍ଷ । (ଙ, ଚ)
୧୦। ସ୍ୱେତେକ ଘେନି ବାହାର ହୋଇଲା ନୃପ ଦକ୍ଷ । ( ଚ, ଙ )

ମୁଖବାଟେ କୁମରର ବହଇ ଶ୍ରୋଣିତ
ତହିଁର ଉପରେ ମୁନ ମାଇଲେକ ନାତ । ୩୨୫ ।
ବୃନ୍ଦାଅର୍କମାନେ ଆଇଂ ତାହା ଦେଖୁଥିଲେ ଆକାଶେ
ସହି ନୁଆର ବୋଇଲେ ବିଶ୍ୱଦେବା ପଞ୍ଚ ଯେ ପୁରୁଷେ । ୩୨୬ ।
ବିଶ୍ୱଦେବାଯେ ବୋଇଲେ ତୁହୋ ବିଶ୍ୱାମିତ୍ର ମନ୍ଦ ଅଚୁ
ବାଳୁତ ରାଜକୁମାରକୁ କମାଇଂ ଯଷ୍ଟି ଯେନ ପିଟୁ । ୩୨୭ ।
ଯେତେକ ବୋଲନ୍ତେ ଆପଣେ ହୋଇଲେ ବଇରାଗୀ
କେମନ୍ତେ ନବସୃଷ୍ଟି ଭିଆଇବ ବେଗି । ୩୨୮ ।
ଯେ ତୋହୋର ଅବଧି ଅଟଇ ମୁନିବର
ଅକାରଣେ ନାଶକରୁ ବାଳୁତ କୁମର । ୩୨୯ ।
କୋପେଣ ବିଶ୍ୱାମିତ୍ର ଯେ ଗୃହିଂଲେ କଟାକ୍ଷେ
ଆରେ ଯିସ କରପାରବି ଯେ ମୋହୋର ଶକ୍ୟେ । ୩୩୦ ।
ମୋହୋର କଥାରେ କମ୍ପେ ତୁମ୍ଭେ କଥା କହ
ଆରେ ପଞ୍ଚ ଦେବାଯେ ତୁମ୍ଭେ ମାନୁଷେ ଜାତହୋଅ । ୩୩୧ ।
ପଞ୍ଚ ବିଶ୍ୱଦେବାଂକୁ ଶାପ ଦିଅନ୍ତେ ବିଶ୍ୱାମିତ୍ରେ
ବିଶ୍ୱାମିତ୍ରଂକୁ ସେବାକଲେ ସେ ଶତେ ବରଷ ପରଯନ୍ତେ । ୩୩୨ ।
ଶତେ ବରଷେ ତାହାଂକୁ କଲେକ ସଦଯେ
ମୋହୋର କୋପକୁ ତୁମ୍ଭେ କଲ କରେ ଭଯେ । ୩୩୩ ।
ମୁହିଂ ତୃପତ୍ତ ହୋଇଲ ଯେବେ ମାଗ ତୁମ୍ଭେ ବର
ବିଶ୍ୱାଦେବାଯେ ବୋଇଲେ ସ୍ୱାମୀ ଆମ୍ଭନ୍ତ ଅନୁଗ୍ରହ କର । ୩୩୪
ଆମ୍ଭେମାନେ ଅଚୁ ଯେ ବିଦେହା ପୁରୁଷେ
କଳ୍ପ କଳ୍ପାନ୍ତରେ ଆମ୍ଭେ ଥାଉଂ ଯେ ଆକାଶେ । ୩୩୫ ।

---

୩୨୮ { ଯେତେ ବଡ ରାଜା ତୁମ୍ଭେ ଅଟ ମନ୍ଦବାଦୀ
{ ଯେମନ୍ତେ କ ନବସୃଷ୍ଟି ପାରବୁ ସମ୍ପାଦ । ( କ )

୩୩୧ { ଆରେ ଆରେ ବିଶ୍ୱଦେବାଯେ ମାନବେ ଜାତହୋଅ
{ ଅନମିତେ କମ୍ପେ ମୋତେ କରାଇଲ କୋହ । ( କ )

୩୩୫।୨ କଳ୍ପ କଳ୍ପାନ୍ତର ହୋଇ କରୁଂ ସ୍ୱର୍ଗବାସ । ( ଟ, ତ, )

ବାର ବ୍ରତ ଯଶ୍ୟାଂଦ୍ଧ ଆମ୍ଭେ ଭଗପାଉଂ ଯେଣୁ
ମର୍ତ୍ତ୍ୟପୁରେ ଜନ୍ମି ରହି ନୁଆଁରୁ ତେଣୁ । ୩୩୬ ।
ଅଳପ ଦୋଷକୁ କଲୁ ମୁନି ବହୁତ ଭାଗ
ତୁମ୍ଭେ ଶାନ୍ତ ଭଜଲେ ଆମ୍ଭେ ଅଳ୍ପକେ ଆସିବୁ ସ୍ୱର୍ଗ । ୩୩୭ ।
ଲେଞ୍ଛେଣ ଜାତ ମୁନି ନ କରବା ଆମ୍ଭନ୍ତ
ଆଗ୍ୟାଂଦଅ ଯେମନ୍ତେ ଉତ୍ତମ କୁଳେ ହେବୁଂ ଜାତ । ୩୩୮ ।
ଦୟାକଲେ ମୁନି ଯେ ଭଗନ୍ତି ବାକଲେ
ସୋମବଂଶେ ଜାତହୋଅ ତୁମ୍ଭେ ପାଣ୍ଡବଂକ କୋଳେ । ୩୩୯ ।
ଦ୍ରୋପଦୀ ଗର୍ଭ୍ଭେଂ ଜନ୍ମେଣ ପ୍ରମାଦ ଲଭିବ
ଭାରଥ ଯୁଦ୍ଧାନ୍ତେ ଦ୍ରୋଣି ସବୁନ୍ତ ଛେଦିବ । ୩୪୦ ।
ଶୁଣ ବଇବସୁତ ମନୁ ବଦସୁନ୍ତ ଅଗସ୍ତି
ତୁମ୍ଭେ ବୋଇଲ ଅଦାଭାସ୍ୟେ ଶିରଚ୍ଛେଦନ କେବଣ ଯୁଗତି । ୩୪୧ ।
ବିଶ୍ୱାମିତ୍ର ଶାପେ ଯେ ମାନବେ ଜାତ ହେଲେ
ସାତ ସାତ ବରଷେ ଶିରଚ୍ଛେଦନ ହୋଇ ସ୍ୱର୍ଗ କଇଂ ଗଲେ ।୩୪୨।
ତୁ ଯେ ପୁଛାକଲୁ ପାଞ୍ଚାଳୀ କୁମରଂକ କଥା
ବିଶ୍ୱାମିତ୍ର ଶାପେ ବିଶ୍ୱଦେବାସ୍ୟେ ହୋଇଥିଲେ
ଯେସନେକ ଅବସ୍ଥା । ୩୪୩ ।
ଜୟ ତୁ ନିରାଲମ୍ବ ମୂର୍ତ୍ତି ନିର୍ମଳ ବାସୁଦେବ
ନିର୍ଗୁଣ ନିରାକାର ଦେବ ତୁ ଶୂନ୍ୟରୁ ସମ୍ଭବ । ୩୪୪ ।
ଆଦ୍ୟ ମଧ୍ୟ ଅନ୍ତେ ଯାର ଅବକାଶ ନାହିଂ
ଶୂନ୍ୟକୁ ଶବଦ ଶୁଭଇ ପାଇବା ଅମ୍ଭେ କାହିଂ । ୩୪୫ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ତୁମ୍ଭେ ବ୍ରହ୍ମ
ଅନୁବ୍ରତେ ସ୍ମୃତ୍ତି ମୋତେ ଶ୍ରୀରାମଂକ ନାମ । ୩୪୬ ।

---

୩୩୬ { ବ୍ରତ ବନ୍ଦାପନା ଯଜ୍ୟଂରେ ଆମ୍ଭନ୍ତ ଯେ କର
ମୁଖୁ ମଣ୍ଡଳେ କେମନ୍ତେ ରହିବୁଂ ମାନବ ତନୁ ଧର । ( କ )

୩୩୬ { ବତ୍ତ ବ୍ରତ ବିଘ୍ନ ସୀମନ୍ତ ସିଦ୍ଧି ଯଜ୍ୟଂ ଯେ କର
ମୃତୁପୁରେ ରହି ନ ପାରିବୁଂ ମନୁଷ୍ୟ ରୂପ ଧର । ( ଙ )

୩୩୭।୨ ଅନୁଗ୍ରହ କର ଯେମନ୍ତେ ବହନ ଆସୁଂ ସ୍ୱର୍ଗ । (ଚ, ଛ, ଠ)
୩୪୧।୨ ତୁମ୍ଭେ ବୋଇଲ ଅଦାଭାସ୍ୟେ ଶିରଚ୍ଛେଦନ ଅଟଇ ଅଗତି । (କ)
୩୩୮।୧ ଲେଞ୍ଛ—ନୀଚ ।

ଜପ ମନ୍ତ୍ର ଧ୍ୟାଯେ ଶାହାସ୍ର ଅନୁକ୍ରମେ
ଅନୁକ୍ଷଣେ ସୁମରଇ ଶତ୍ରେ ମୁଂ ଶ୍ରୀରାମର ନାମେ । ୩୪୭ ।
ସେ ବେଦ ଅକ୍ଷର ଯାହାର ନାମଗୋଟି
କଣ୍ଠରେ ବୋଇଲେ କୋଟିଯେ ବ୍ରହ୍ମାଣ୍ଡ ଯାଇଂ ଘୋଟି । ୩୪୮ ।
ସ୍ୱାମୀ ଚରଣଯେ ଅନୁବ୍ରତେ କରଇ ମୁହିଂ ଆଶା
ଯମଦଣ୍ଡ ବଞ୍ଚାଇବାକୁ ବଳାଇଲା ମନୀଷା । ୩୪୯ ।
ଢବା ରବେ ଚରଣଯେ ଶ୍ରୀରାମ ନାମକୁ
ଯେ ଘୋର ସଂସାରୁ ସ୍ୱାମୀ ପାର କରବା ମୁକୁ । ୩୫୦ ।
ସ୍ୱାମୀ ମାୟା ଦଉଡରେ ବନ୍ଧନ ମୁଂ ବଡ ଅପରାଧୀ
ରାଗ ମୋହ ଅହଂକାର ହିଂସା ଅପବାଦ ବଡ କ୍ରୋଧୀ । ୩୫୧ ।
ଅନର୍ଥୀପାପ ସଂସାରକୁ ଯେ ସକଳ ସଞ୍ଚା
ମନ ଚଇତନ ନାଥ ତୁ ପ୍ରଳୟ କାଳ ବଞ୍ଚା । ୩୫୨ ।
ମଧ୍ୟରେ ଅଣାକାର ଯେ ପାଷାଣର ଭେଳା
ଭାସିଲ କଳକାଳେ ନ ପାଇ ତବ କୁଳା । ୩୫୩ ।
ସ୍ୱାମୀ ତ୍ରଇଲୋକ୍ୟ ଭିତରେ ଯାହା ନାମ ଅଟେ ଶ୍ରେଷ୍ଠ
ଦୟା କରନ୍ତୁ ସେ ରାମ ସହିତେ କନଷ୍ଠ । ୩୫୪ ।
ଯୋଗୀଜନ ଜୀବନ ନାଥ ପରମ ଜ୍ୟୋତିମୂର୍ତ୍ତି
ଚରଣଯେ ପ୍ରାପତ ମୋତେ ଭକତି ମୁକତି ଗତି । ୩୫୫ ।
ସ୍ୱାମୀ ଯାବତ ଚନ୍ଦ୍ର ଯେ ଦିବାକର ଆଦି
ଶରଣ ରକ୍ଷଣ ନାଥ ନବସୃଷ୍ଟି ସମ୍ପାଦି । ୩୫୬ ।
କାଳ କାମ ନିଦ୍ରା ସ୍ୱାମୀ ସମସ୍ତ କଲୁ ତେଜ୍ୟା
ନିରାକୁଳ ପୁରୁଷ ତୁ ସ୍ୱାମୀ କ୍ଷୀରୋଦ୍ରେ ଅନନ୍ତ ଶଯ୍ୟା । ୩୫୭।

---

୩୫୦।୨ ଅଗାଧ ଜଳକୁ ସ୍ୱାମୀ ଭୟ ଅଛଇ ମୁକୁ । ( ଜ )
୩୫୦।୨ ଅଗାଧ ସାଗରେ କଲି ବଡ ବାଧା ମୁଝୁ । ( ଥ )
୩୫୧ { ଦିବାରାତ୍ରେ ସୁମରଇ ରାମନାମ ଶୁଦ୍ଧି / ସ୍ୱାମୀ ମାୟା ଦଉଡରେ ବନ୍ଧନ ମୁଂ ବହୁତ ଅପରାଧୀ । ( ଟ )
୩୫୪।୨ ସଦୟେ କର ନାଥ ଫେଡିବା ମୋର କଷ୍ଟ । ( ଜ )
୩୫୭।୧ ସ୍ୱାମୀ କାଳ ଅଲ୍ପକାଳେ ତୁ ସମସ୍ତ କଲୁ ତେଜ୍ୟା । ( ଜ )

ଅଗାଧ ସମୋଦ୍ରେ ସ୍ୱାମୀ ଫୁଟିଲି କମଳ
ତୁମ୍ଭ ନାମ ସୁମରି ସେ ପାଇଲ ଥଳକୂଳ । ୩୫୮ ।
ଅସଂଖ୍ୟ ଅକଳିତ ସଞ୍ଚିଲି ବାକ୍ୟଦେବୀ
ନାଥ ତୁମ୍ଭର ପ୍ରସାଦେ ମୁଂ ଯେ ସେହିଦାନ୍ତ ବର୍ଣ୍ଣିବି । ୩୫୯ ।
ହୃଦ ପଦ୍ମରେ ମୋର ଶ୍ରୀରାମ ନାମ ଗୋଟି
ଶ୍ରୀକୃଷ୍ଣଂକ ଚରଣେ ପୁଣ ପୁଣ ଶିର ମମ ଲୋଟି । ୩୬୦ ।
ଅଭୟେ ମଙ୍ଗଳା ମା ଗୋ ଯାହାର ନାମ ଶତଶ୍ରିୟା
କମଳ ମାଳ ହୋଇ ଗୋ ବସସ ମୋର ହିଆ । ୩୬୧ ।
ଦୁରନ୍ତେକ ସଂସାରୁ ତୁହି ସେ କରୁ ପାର
ବଦନ୍ତି ସାରୋଳ ଦାସ ଶ୍ରୀହରି ନାମ ଧର । ୩୬୨ ।
ଶ୍ରୀ ବାକ୍ୟଦେବୀ ପ୍ରସାଦେ ମୁଂ କଲି ମହାଭାରଥ
ସେହିା ଶୁଣି ନରେ ହୋଇବେ ମୁକତ । ୩୬୩—୪୩୬ ।



## ଶ୍ରୀକୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥ ଆଗମନ ପାଣ୍ଡବଙ୍କୁ ପାଞ୍ଚାଳୀ ପଞ୍ଚପୁତ୍ର ସହ ଧୃଷ୍ଟଦ୍ୟୁମ୍ନ ଶିରଚ୍ଛେଦନ ବାର୍ତ୍ତା ପ୍ରଦାନ ଓ ଅଶ୍ୱତ୍ଥାମା ଅସ୍ତ୍ର ହରଣ

ମଙ୍ଗଳ ଦଧିବାବନ ଜୟ ତୁ ବଦ୍ଧଗଜ
ଭଗତ ଜନବନ୍ଧୁ ପାବଂଶ ଆତ୍ମଜ । ୧ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଅନନ୍ତ କୋଟି ବ୍ରହ୍ମାଣ୍ଡ
ସକଳ ବିଶ୍ରାମଇଂ ଯାହାର ଉଦରେ ପୃଥ୍ୱୀ ନବଖଣ୍ଡ । ୨ ।

---

୩୬୦ { ହୃଦସ୍ଥ କମଳେ ଜଳସ୍ତେ ମୋହୋର ରାମନାମ
{ ଶ୍ରୀରାମ ଚରଣେ ମୋର ଶତେସହସ୍ର ପରଣାମ ( ଜ )

୩୬୨ { ଶ୍ରୀ ପୁରୁଷୋତ୍ତମ ନାମଗୋଟି ସୁମରଇ କତ
{ ବଦନ୍ତି ଶୁଦ୍ରମୁନି ସାରୋଳ ଦାସ ଶ୍ରୀରାମ ହୃଦଗତ । ( ଚ, ଙ, ଝ, ଟ )

ଯମଦଣ୍ଡ ଫିଟଇ ଯାହାର ନାମ ସୁମରନ୍ତେ
ବିଘ୍ନ ବିନାଶନ ନାଥ ଶକ୍ତେ ମମ ହୃଦଗତେ । ୩ ।
ବିସ୍ତାର ହୃଦୟ ଯାହାର ଉଦର ଅତୁଲ କୃଶବାହୁ ପ୍ରଲମ୍ବ
ଅମୃତ ଲଡ଼ୁ ଭୁଞ୍ଜୁ ଜୟ ତୁ ବିଘ୍ନଦେବ । ୪ ।
ଅଇରାବତର ନନ୍ଦନ ସୁହସ୍ତା ନାମେ ହାଥୀ
ପୁଷ୍ପଦନ୍ତ ମହାନାଗ ଯାହାର ପଣନାନ୍ତି । ୫ ।
ସେ ନାଗର ବଦନ ଯାହାର ବକ୍ଷସ୍ଥଳେ
ମେରୁ ଟଳଇ ଯାହାର ନୃତ୍ୟରସ କାଳେ । ୬ ।
କୋଟିଏ ପର୍ବତ ଯାହାର ଚରଣେ ଘାଘୁଡ଼ିମାଳ
ଅନନ୍ତ ନାଗ ଫଇତା ଯାହାର ବକ୍ଷସ୍ଥଳ । ୭ ।
ଯଜନ ଯାଜନ ଯାର ଚିତା ମାରତଣ୍ଡ
ଅନୁବ୍ରତେ ମଦନେ ଭେଳ ଭଇରବ ନାମ ଯାହାର ପ୍ରଚଣ୍ଡ । ୮ ।
ପ୍ରଶୁ ମୃଦୁଗର ପାଶ ଅଂକୁଶ ଖ୍ଷମୂନା
ଭବଭଞ୍ଜନ ନାଥ ହରତାଣ୍ଡବ ରସନା । ୯ ।
କୋଟିଏ ଯୋଗୀ ଗଲେ ଯାହାକୁ ଆରାଧି
ଶୂନ୍ୟଳଇ କାରଣ ଯାର ନିରଞ୍ଜନ ପ୍ରବୋଧି । ୧୦ ।
ଚରଣେ ନୂପୁର ରୁଣୁଝୁଣୁ ବାଜଇ ଯାର ପାଉଂ
ତବ ବଦନ ଦେଖିଲେ ଦୁଷ୍କୃତ ମୋର ଯାଉ । ୧୧ ।
ଶଇଲଜାର ନନ୍ଦନ ଚଳୟେ ମମହୃଦେ
କାଳ ବିମୋଚନ କରିବ ନାଥ ତୁମ୍ଭର ପ୍ରସାଦେ । ୧୨ ।

---

୫ { ଅଇରାବତର ନନ୍ଦନ ବଇରାବତ ହାଥୀ
ପୁଷ୍ପଦନ୍ତ ନାମ ତୋର ଅଟଇ ଗଣପତି । (ଙ, ଚ, ଗ, ଡ) }

୭ { କୋଟିଏ ଅଶ୍ୱ (କନ୍ଦର) ଯାହାର ଚରଣରେ ମିଳ
ଅନନ୍ତ କୋଟି ବ୍ରହ୍ମାଣ୍ଡ ପ୍ରଳୟ ବକ୍ଷସ୍ଥଳୀ (ଚ, ଖ, ଙ, ଚ, ର) }

୮ { ଅନୁବ୍ରତେ ମଢୋଲ ଭଇରବ ଯାର କଳା
ଭରହର ନାୟକ ଯେ ତାଣ୍ଡବ ରସଖେଳା । (ଘ) }

ସେ ନାଥର ପାଦପଂକଜେ ଅନୁବ୍ରତେ ସେବ
ସାରଳା ଦାସ ଇଚ୍ଛଇ ହେବାପାଇଁ କବ । ୧୩ ।
ଜୟ ତୁ ଜୟ ତୁ ଦେବ ଶଶାଂକ ମଣ୍ଡଳ
ଜୟ ତୁ ଜୟ ତୁ ଦେବ ମହାମନ୍ତ୍ର ଭେଳ । ୧୪ ।
ଜୟ ତୁ ଜୟ ତୁ ଦେବ ଅନାଦ୍ୟ ସୁସାଧୁ
ଜୟ ତୁ ଦେବ ଦୀନବନ୍ଧୁ ଜୟ କୃପାସିନ୍ଧୁ । ୧୫ ।
ଜୟ ତୁ ଜୟ ତୁ ଦେବ ଭଗତମହଳ
ଭୂଷଣ ହୋଇଛୁଂ ସଦା ବକ୍ଷରେ କପାଳ । ୧୬ ।
ଜୟ ତୁ ଜୟ ତୁ ଦେବ ଅଗ୍ନି ସୂର୍ଯ୍ୟଚନ୍ଦ୍ର ନେତ୍ରା
ଜୟ ତୁ ଜୟ ତୁ ଦେବ ଅନନ୍ତ ନାଗ ଯାହାର ପଦ୍ମସା । ୧୭ ।
ସ୍ୱାମୀ ତବ ପଦ୍ମପାଦେ ଯେ ଜନ୍ମିସ୍ତେ ଭଗତ
କହିବ ବସ୍ତୁ ପୁରାଣ ଯେଣେ ସେ ମୁକତ । ୧୮ ।
ଯଙ୍ଗେରପୁର ବାସିନୀ ଅଭୟେ ମଙ୍ଗଳେ
ଜନ୍ମେ ଜନ୍ମେ ଶରଣ ମୁଂ ତୁମ୍ଭ ପଦ୍ମପାଦ ତଳେ । ୧୯ ।
ଅଭେଦ ସ୍ୱର୍ଗକଳା କଳକାଳ ଦର୍ପ ଧ୍ୱଂସି
ତାରେଣୀ ବଇଷ୍ଣବୀ ଗୋ କାଳଫାଶି ନାଶି । ୨୦ ।
ଅନୁବ୍ରତେ ଆନନ୍ଦ ମା ଗୋ ପରମ ଅନାଦ୍ୟ
ସୁରସିଦ୍ଧ ମୁନି ଯାର ଚରଣରେ ବନ୍ଧ । ୨୧ ।
ମୁହିଂତ ମାନେବ ଜନ୍ମ ଗୋ ସବ ମଙ୍ଗଳେ
ମମ ଆତ୍ମା ରହୁ ମା ଗୋ ତବ ପାଦକମଳେ । ୨୨ ।
କୁମାରୀ ରୂପେ ମା ଗୋ ଖେଳୁ କୁତୂହଳେ
ଭଗତ ଜନ ମଣ୍ଡଳୀ ଗୋ ସଦା ତୁ ମଙ୍ଗଳେ । ୨୩ ।
ସେ ଦେବୀ ଚରଣେ ମୁଂ ଅନୁବ୍ରତ ସେବ
ମମ ମନ ଅନ୍ତର ଗୋ ନୋହୁ ବାକ୍ୟଦେବୀ । ୨୪ ।

---

୧୮।୨ ଆଗ୍ୟାଂ ହଅ ଲେଖିବ ଶ୍ରୀ ଭାରଥ ଭାରତୀ । (ଖ)
୧୯।୨ ମମ ଆତ୍ମା ରହୁଁଥିଲି ତବ ପାଦତଳେ । (ଗ)

ଯାହା ସେ ମୋତେ ଆଜ୍ଞାଂ ହେଲେ ଶ୍ରୀରଣ୍ଡୀ ସାରେଳେ
ଶୂଦ୍ରମୁନ ସାରେଳ ଦାସ ଭାବନ୍ତ ହୃଦୟ କମଳେ । ୨୫ ।
ବଇବସୁତ ମନୁ ଯେ ଅଗସ୍ତିଂକ କଲେ ପୃଚ୍ଛା
ସମସ୍ତେ ପଡ଼ିଲେ ଆର କେ କେ ହେଲେ ରକ୍ଷା । ୨୬ ।
ଶୁଣ ବଇବସୁତ ମନୁ ବଦୟନ୍ତ ଅଗସ୍ତି
ଦ୍ୱାରକା ଭୁବନରେ ଯେ ପାଣ୍ଡବେ ଅଛନ୍ତି । ୨୭ ।
ରଜନୀ ପ୍ରଭାତେ କୃଷ୍ଣଂକୁ ବୋଇଲେ ଧର୍ମରାୟେ
ହେ ହରି ଯିବା ଚାଲ ଇନ୍ଦ୍ରପ୍ରସ୍ଥ ଯାଏ । ୨୮ ।
ଗୋବିନ୍ଦେ ବୋଇଲେ ଦେବ ଆଜକ ରହ ଯେଥ
ମୁହିଂ ଯାଇଂ ବୁଝିଇ ମାନଗୋବିନ୍ଦ କଲା କେମନ୍ତ । ୨୯ ।
ସ୍ୱାମୀ ଯେଥିର ଚରିତ ଜାଣି ଆସଇ ଭଲେ
ତୁମ୍ଭନ୍ତ ନେଇ ନୁଆରଇ ଦୁର୍ଯୋଧନ ପ୍ରାଣେଥିଲେ । ୩୦ ।
ପାଣ୍ଡବନ୍ତ ସମାଜି ସେ ଚଳିଲେ ଜନାର୍ଦ୍ଦନ
ବିଜୟେ ଜଗମୋହନ ବଇନେୟ ବାହାନ । ୩୧ ।
ବେଲ ଛନଘଡି ତହିଂ ହୋଇଲେ ପ୍ରବେଶ
ଇନ୍ଦ୍ରପ୍ରସ୍ଥେ ଯାଇଂ ପ୍ରବେଶ ହୋଇଲେ ହୃଷୀକେଶ । ୩୨ ।
ବାହାନୁଂ ଉତୁରି କରି ପଶିଲେ ଭିତରେ
ଦେଖିଲେ ଭଇରେବ ରୂପ ରହଣ ଅଛି ଦ୍ୱାରେ । ୩୩ ।
ସନ୍ଧିଘଟରେ ପ୍ରବେଶ ହୋଇଲେ ଦେବ ହରି
ଭଗ୍ନ ହୋଇଅଛି ଦେଖିଲେ ଗଡ ଦକ୍ଷିଣ ଆଡର ପାଚେରି । ୩୪ ।
ଗୋବିନ୍ଦେ ବିଜେ କଲେ ଭଗ୍ନ ଗଡଦ୍ୱାରେ
ଦେଖିଲେ ବେନି କ୍ଷୌହଣୀ ବଳ ପଡିଛନ୍ତି ଭିତରେ । ୩୫ ।
ଦେଖି ନାରାୟଣଂକର ନ ପୂରଇ କଷ୍ଟ
ଦେଖିଲେ ଭିତର ଦ୍ୱାରେ ଧୃଷ୍ଟଦ୍ୟୁମନ ପଡିଅଛି । ୩୬ ।
ମନେ ମନେ ବିଗୁରିଲେ ସ୍ୱାମୀ ଦେବରାଜେ
ଉତ୍ତର ଦ୍ୱାରେ ଯାଇଂ ଗୋବିନ୍ଦେ କଲେ ବିଜେ । ୩୭ ।

---

୨୭। ଯେଥି କେବଣ କଥା ହୋଇଲା ମୋତେ କହିବା ବୁଝିବଚ୍ଛା । (ଙ,ଝ,ଟ)
୨୯। ମୁହିଂ ଯାଇଂ ବୁଝିଇ ମାନଗୋବିନ୍ଦ ଅଛଇ କେମନ୍ତ । (ଖ, ଚ)

ଅନ୍ୱେଷି ନାରାୟଣ ଚନ୍ଦ୍ରଶାଳାପୁରେ
ସ୍କନ୍ଧେ ମୁଣ୍ଡ ନାହିଁ ପଡିଛନ୍ତି ଦେଖିଲେ ପାଞ୍ଚାଳୀ କୁମରେ । ୩୮ ।
ଚହୁଁ ଚଳଗଲେ ଦେବ ମନରେ ବସର
ବ୍ୟାସ ସରୋବର ତୀରେ ଯାଇଁ ଭଜେ କଲେ ଦେବହର । ୩୯ ।
ଦେଖିଲେ ମାନଗୋବିନ୍ଦ ପଡିଛି ମହୀଲେଟି
ଗ୍ରୀମୁରେ ପଡିଛି ପାଞ୍ଚାଳୀ କୁମରଙ୍କ ମୁଣ୍ଡ ପାଞ୍ଚଗୋଟି । ୪୦ ।
ଖଗବର ପିଠିରୁ ଓହ୍ଲାଇଲେ ଦେବ ଯେ ଶ୍ରୀବତ୍ସ
ଦେଖିଲେ ମାନଗୋବିନ୍ଦ ସୀମସ୍ଥାନେ ବସିଛି ଦୃଦକ୍ଷ । ୪୧ ।
ଶ୍ରୀକୃଷ୍ଣଙ୍କୁ ଦେଖି ଦୃଦକ୍ଷ ହୋଇଲା ଅସାଷ୍ଟମ
ଭୋ କୃଷ୍ଣ ବୁଡିଲା ଓହୋ କୁଳ ଧର୍ମ । ୪୨ ।
ହାରିଲେ କଉରବେ ଯେ ସାରିଲେ ସଂପଦ
ଜଗଜ୍ଜିତା ପାଣ୍ଡବନ୍ତ କର୍ମେ ପଡିଲା ଯେତେକ ପ୍ରମାଦ । ୪୩ ।
ସ୍ୱାମୀ ପାଞ୍ଚାଳୀ କୁମରଙ୍କର ଦେଖି ମୁଣ୍ଡ ପାଞ୍ଚଗୋଟି
ଶରୀରୁ ଆତ୍ମା ଛାଡିଲା ରାଜା ଧୃତରାଷ୍ଟ୍ରି । ୪୪ ।
ସ୍ୱାମୀ ଅବରଣେ ଶ୍ୱେତଦୁବ ଯେ ମଥାରେଣ ଘେନି
ଅଶ୍ୱତ୍ଥମା ସେନାପତି ହୋଇଲେ ଆଜର ରପୁେଣୀ । ୪୫ ।
ଦୁଇକ୍ଷୌହିଣୀ ବଳ ଧୃଷ୍ଟଦ୍ୟୁମ୍ନନକୁ ପକାଇଲା ମାରି
ପାଞ୍ଚାଳୀ କୁମରଙ୍କ ମୁଣ୍ଡ ଆଣିଲା ଘର କରି । ୪୬ ।
ଧୂ ରୁ ଦ୍ରୁଯୋଧନ ପାଣ୍ଡବଙ୍କ ପ୍ରାପ୍ତେ ମଣି
ଅନେକ ପୁରୁଷାର୍ଥ ବଚନ ସେ ଭଣି । ୪୭ ।
ପାଣ୍ଡବଙ୍କ ମୁଣ୍ଡ ବୋଲି ରାଜା ତୋଷ ଯେ ହୋଇଲା
ସନ୍ନିଧେ ଦେଖି ଚିହ୍ନି ସେ ଅନେକ ଶୋକକଲା । ୪୮ ।
ଅନେକ ନିଂଶ୍ୱାସ ତାକୁ କଲା କୁରୁରାଜା
ଅଶ୍ୱତ୍ଥମା ପାଇଲା ଯେ ବହୁତ ପୁଣି ଲଜ୍ଜା । ୪୯ ।
ପାଞ୍ଚାଳୀ କୁମରଙ୍କ ମୁଣ୍ଡ ଲଗାଇ ହୃଦରେ କୁରୁରାଜା
ହା ହା ବୋଲି କହି ସେ ମନୋଦୁଃଖ ପ୍ରାଣ କଲା ତେଜ୍ୟା । ୫୦ ।

---

୪୨।୧ ଶ୍ରୀକୃଷ୍ଣଙ୍କୁ ଦେଖି ଦୃଦକ୍ଷ ହୋଇଲା ସାଷ୍ଟମ । (ଙ, କ)

ଶୁଣିଣ ହରଷ ସେ ଯେ ହୋଇଲେ ନାରାୟଣ
ପୁଣ ପୁଣ ଦୃଢଦକ୍ଷକୁ ବୋଲନ୍ତ ବଚନ । ୫୧ ।
କୃଷ୍ଣ ବୋଇଲେ ଦୃଢଦକ୍ଷ ଥାଅ ତୁ ସ୍ନେହଠାରେ
ଚାନ୍ଦ୍ରବନ୍ତ ଘେନି ମୁଂ ଆସଇଂ ବ୍ୟାସ ସରୋବର ତୀରେ । ୫୨ ।
ବଇନେଶ ପିଠିରେ ଆରୋହି ଚଳିଲେ ଜଗନ୍ନାଥେ
ଦ୍ୱାରକା ଭୁବନେ ଯାଇଂ ହରଜଘ୍ୟେ ତୁରତେ । ୫୩ ।
ଅନେକ ସାନନ୍ଦେ ହରିଜେ ପାଣ୍ଡବଂକ ସନ୍ନିଧାନେ
କୁଶଳ ବାରତା ଯେ ପୁଚ୍ଛନ୍ତ କୃଷ୍ଣଂକୁ ପଞ୍ଚୁଜନେ । ୫୪ ।
ଗଲୁ ଯେ ବାସୁଦେବ ଭୁବନ ଇନ୍ଦ୍ରପ୍ରସ୍ଥେ
ଭଲେ ଅଛନ୍ତିଟି କ ପାଞ୍ଚାଳୀ କୁମରେ ଧୃଷ୍ଟଦ୍ୟୁମ୍ନ ସହିତେ । ୫୫ ।
ସମସ୍ତ କୁଶଳ ଯେ କହନ୍ତ ମଧୁରିପୁ
ହରଜଘ୍ୟେ କରିବା ସ୍ନେହେ ଜଇନ୍ତା ଭୁବନକୁ । ୫୬ ।
ଆସ ଯିବା ବୋଲି ବୋଲନ୍ତ ଜଗମୋହନ
ସ୍ନେକାନ୍ତ ହୋଇଲେ ଦେବ ସହଦେବ ସନ୍ନିଧାନେ । ୫୭ ।
ଶ୍ରୀ ଗୋବିନ୍ଦେ ବୋଇଲେ ହେ ଶୁଣ ସହଦେବ
ଅଶ୍ୱତ୍ଥମା ସେନାପତି ହୋଇ ମାଇଲେକ ସବ । ୫୮ ।
ଦୁଇକ୍ଷଉଣୀ ବଳ ତୁଲେ ଧୃଷ୍ଟଦ୍ୟୁମ୍ନକୁ
ଆବର ନାଶକଲ ପାଞ୍ଚାଳୀ କୁମାରଂକୁ । ୫୯ ।
କୃପ ଅଶ୍ୱତ୍ଥମା ହୋଇଲେ ସ୍ନେକସ୍ଥାନ
ତାହାନ୍ତ ଦେଖିତେ ଭୟ ଲଗିଲ ମୋର ମନ । ୬୦ ।
ଆଜକ ତୁମ୍ଭେ ରହିଣ ଥାଅ ସ୍ନେ ଦ୍ୱାରକା
କୃପ ଅଶ୍ୱତ୍ଥମା ତହିଂକ ମୁହିଂ ଯିବ ସ୍ନେକା । ୬୧ ।
ପାଣ୍ଡବେ ରୋଦନ କରନ୍ତ ପାଞ୍ଚାଳୀକୁମାର ହତ ଶୁଣି
ଗତ ଆଗତ ଦୁଇକୁଳ ବୁଡାଇଲୁ ନୃପମଣି । ୬୨ ।
ଦ୍ରୋପଦୀଂକର କ୍ରୋଧ କହିତେ କ ପାରି
ସନ୍ନିଧେ ବସି ସମ୍ବୋଧନା କରନ୍ତ ନରହରି । ୬୩ ।

---

୫୪।୧ ପାଣ୍ଡବେ ହରଷ କୃଷ୍ଣଂକୁ ଦେଖି ସନ୍ନିଧାନେ । (ଡ)
୫୫।୨ ଭଲ ମନ୍ଦର ବାରତା କହନ୍ତୁ ସମୃତରେ । (ଖ)

ମହାଲକ୍ଷା କଲେ ଦ୍ରୋପଦ କୁମାରୀ
ଶରୀର ବିସର୍ଜନ ମୋର କରିବ ବନମାଳୀ । ୬୪ ।
ପୁଣ ବୋଲନ୍ତି ହେ। ଶୁଣ ଚକ୍ରପାଣି
ମୋର ପୁତ୍ର ବଇରି ମାରିବୁ ଯେହ୍ନ୍ହକ୍ଷଣି । ୬୫ ।
ଦ୍ରୋପଦୀଙ୍କ ସମ୍ବୋଧନା କରିଣ ଦେବରାଜେ
ବଇନେତ୍ର ବାହାନେ କଲେକ ଦେବ ବିଜେ । ୬୬ ।
ଗୁରୁଡ଼ ବାହାନେ ଚଳିଲେ ଦେବରାଜ
ନନ୍ଦୀକେଶ୍ୱର ବନେ ଶ୍ରୀ ବାସୁଦେବ ବିଜେ । ୬୭ ।
ସେହି ବନେ ଗୁପତ ହୋଇ ରହିଲେ ବଇନେତେ
ବ୍ରାହ୍ମଣ ରୂପ ସେ ଯେ ଧଇଲେ ଜଗନ୍ନାଥ । ୬୮ ।
ଶ୍ରୀବଲ୍ଲଲକ୍ଷନ ଦ୍ୱାଦଶ ଶତ ହସ୍ତେ କୁଶବାଡ଼
ଗୋପ୍ୟୋନ ହୋଇଣ ଦୋହୋରା କାଖେ ଜାକନ୍ତି
ବେଦ ଯେ କରନ୍ତି । ୬୯।
ଶୁକଳ ଧୋତି ଛତା ଗଣ୍ଡୁ ଉତୁରି ପୁରାଣ ଯେ ପୋଥି
ତପୋଧନ ରୂପ ଧରି ବନସ୍ତେ ବୁଲୁଛନ୍ତି । ୭୦ ।
ଅନେକ ବୋଲିଣ କରି ଯେତକଇ ନବାଗୋଷ୍ଠି
ତହିଂ ଯାଇଂ କୃପ ଅଶସ୍ତମାକଇଂ ଭେଟି । ୭୧ ।
ଅଶସ୍ତମା ବୋଇଲେ ପଣ୍ଡାଯ୍ୟେ ତୁମ୍ଭେ କେବଣ ଦେଶୀ
ଆମ୍ଭର ତୁଲେ ତୁମ୍ଭେ ହୋଇଲ ବନବାସୀ । ୭୨ ।
ଗୋବିନ୍ଦ ବୋଇଲେ ଆମ୍ଭେ ଥାଉଂ ସର୍ବତୀର୍ଥେ
ସୁସ୍ଥାନ ସୁସଙ୍ଗ ପାଇଲେ ରହୁ ପଞ୍ଚ ଦିବସ ପଞ୍ଚ ରାତେ । ୭୩ ।
କୃପ ବୋଇଲେ ଆମ୍ଭେ ନୋହୁନା ସୁସଙ୍ଗ
ଅନେକ ପାତକ କଲା ଆମ୍ଭର ଯେହି ଅଙ୍ଗ । ୭୪ ।
ଆମ୍ଭେ ଭାରଥ ଯୁଦ୍ଧେ ହୋଇଥିଲୁ ସେନାପତି
ଗୋହତ୍ୟା ବ୍ରହ୍ମହତ୍ୟା ଆମ୍ଭେ କଲୁ ଅପ୍ରମିତି । ୭୫ ।
ଦ୍ରୋଣଂକ ଶଳା ଆମ୍ଭେ ଆମ୍ଭନାମ କୃପବ୍ରହ୍ମା
ଆମ୍ଭର ଭଣଜା ଯେ ନାମ ଅଶସ୍ତମା । ୭୬ ।
ପ୍ରଶୁରାମ ପ୍ରସନ୍ନେ ଯେ ହୋଇଲା ଚିରଜୀବୀ
ମାନଗୋବିନ୍ଦ ବୋଇଲା ମୁଂ ତୋତେ ସେନାପତି କରିବି । ୭୭

ପିତା ନିଧନ ହୋଇଲେ ସେହିମାଂକର ଭରଥ ଯୁଦ୍ଧେ
ଶହସ୍ର ସୈନ୍ୟ ତେଜ୍ୟା କଲେ ପିତାଂକର କ୍ରୋଧେ । ୭୮ ।
ଅବଭୃତେ ଗଲେ ସୈନ୍ୟ ପରଦ୍ଧନ ଘନେ
ସାତ ସାତ ବରଷର ଦ୍ରୋପଦୀଂକ ପୁନେ । ୭୯ ।
ତାହାନ୍ତ ନାଶକଲ୍ ସୈନ୍ୟ ବିନା ଯୁଦ୍ଧେ
କୁମ୍ଭୀପାକ ରଉରବ ପାଇ ଅଦୋଷେ ବାଳବଧେ । ୮୦ ।
ସେତେକ ପାତକ ଯେ ଅର୍ଜିଅଛୁଂ ଆମ୍ଭେ
କେମନ୍ତେ ଆମ୍ଭର ତୁଲେ ଥିବନ୍ତି ହାଦେ ତୁମ୍ଭେ । ୮୧ ।
କୃପଂକ ବଚନ ଶୁଣି ବୋଲନ୍ତ ଦେବରାୟେ
ତୁମ୍ଭେ ବେଦମନ୍ତ୍ରେ ନିର୍ଜିତ ବ୍ରାହ୍ମଣର ପୋୟେ । ୮୨ ।
ବ୍ରାହ୍ମଣ ହୋଇ ଯେବେ ସାଧିଲ ଛତ୍ରୀ ବିଦ୍ୟା
ସାଂଗ୍ରାମେ ଶିରଛେଦନ ତୁମ୍ଭର ଅଟଇ କସ ବାଧା । ୮୩ ।
ଶିରଛେଦନ୍ତୁଂ ଭୟେ କଲ ଯେ ବେନି
ସେବେ ଚଳ ତୁମ୍ଭେ ଆମ୍ଭର ବଚନ ଘେନି । ୮୪ ।
ତପର ଫଳ ଯେ ନୋହଇ ରଜଗୁଣି
ମନ୍ତ୍ର ଅର୍ଥେ ଥିବା କର୍ମେ ଶହସ୍ର ଘେନି । ୮୫ ।
ଶହସ୍ର ଥିଲେ ରାଗ ତମେ ହୋଏ ବାଦ
ରଜଗୁଣେ ଅବଶ୍ୟ ପଡଇ ପରମାଦ । ୮୬ ।
ପୁଣି ଗୋବିନ୍ଦେ ପ୍ରତିବାକ୍ୟ ଦିଅନ୍ତ କପଟେ
ତୁମ୍ଭର ଧନୁ ହୋଣ ଥୁଅସି ବୃକ୍ଷ କୋଟେ । ୮୭ ।
ଗମିବା ଗଙ୍ଗା ଗୟା କୃଷ୍ଣାବେଣୀ ଆଦି କରି
ନର୍ମଦା ସରସ୍ୱତୀ ଗଉତମୀ କାବେରୀ । ୮୮ ।
ନାରାୟେଣୀ ହେମକେଦାର ପ୍ରୟାଗ ବଇତରଣୀ ଗଣ୍ଡୁକୀ
ଲୋକାଲୋକ ଗିରି ଆଦିନାଥ ସେତୁବନ୍ଧ ଯିବା ଦେଖି । ୮୯ ।

---

୮୪ { ସେବେ ଆମ୍ଭର ବଚନ ଶୁଣ ତୁମ୍ଭେ ବେନି
ମନ୍ତ୍ର ପୂତ ହୋଇଣ ଯେ କର ବେଦଧ୍ୱନି । (ଖ, ଠ, ଦ)

୮୬ { ରାଗ ଦ୍ୱେଷରେ ସମସ୍ତ ହୋଇଥାଇଂ ବଧ
ରାଗ ଦ୍ୱେଷ ଥିଲେ ନଚେ ପଡ଼େ ପରମାଦ । (ଖ, ଠ, ଦ, ଚ)

କୃଷ୍ଣଙ୍କର ବଚନେ ସେ ହୋଇଲେ ଯେ ବଶ
ଶଙ୍ଖସ୍ତ୍ରମାନ ବୁଡାଇଲେ କପାଳେଶ୍ୱର ତୀର୍ଥ ପାଶ । ୯୦ ।
ମହାଓଡ଼ପା ଗଙ୍ଗୋଡ଼ଗ୍ର ସରତ ଭିତରେ
ସମସ୍ତ ଶଙ୍ଖସ୍ତ୍ରମାନ ବୁଡାଇଲେ ଅଗାଧ ଗମ୍ଭୀରେ । ୯୧ ।
ଗୁଡ଼ିଲେ ଛତ୍ରୀବୃନ୍ଦ କପାଳେଶ୍ୱରେ କରି ସାକ୍ଷୀ
ଗୋମତୀ ତୀର୍ଥେ ତୋଷନ୍ତି ମାତା ପିଙ୍ଗଳାକ୍ଷୀ । ୯୨ ।
ଅନେକ ଗମିଲେ ସେ ଗଣ୍ଡୂକୀର ତୀର୍ଥେ
ଲୋଡ଼ିଲେ ଶାଳଗ୍ରାମ ବିଷ୍ଣୁପୂଜା ଅର୍ଥେ । ୯୩ ।
ସେ ଗଣ୍ଡୂକୀ ନଦୀ ତୀରେ ରତ୍ନଗିରି ନାମ ପର୍ବତରେ
ବଜ୍ରକୀଟ ନାମେ ପୋକ ଥାନ୍ତି ତା ଭିତରେ । ୯୪ ।
ଶିଳାଏକ କରଇ ସହସ୍ରେ ବରଷ ମୂର୍ତ୍ତି
ନବାଡ ଶିଳା ଗୋଟିଏ ଯେ କରଇ ଉତପତ୍ତି । ୯୫ ।
ନିରନ୍ତରେ ସେ କୀଟ ଯେ ଶିଳା କରିବାରେ ଲାଗିଥାନ୍ତି
ଯେତ୍ନରୂପେ ଶିଳା ସେ ଯେ ନିର୍ବାଣ କରନ୍ତି । ୯୬ ।
ହୀରା ନୀଳା ମାଣିକ୍ୟ ଅଷ୍ଟରତ୍ନେ ନିର୍ମିତ ତାର କାଏ
ନୟନ ଦିଶଇ ତାର ମର୍କତ ଲିଙ୍ଗ ପ୍ରାଏ । ୯୭ ।
ଦନ୍ତ ପ୍ରବାଳ ତାର ହୀରା ଝଳ ଜାଣି
ସହସ୍ର ବରଷେ ଏକ ଶିଳା ନିରବାଣି । ୯୮ ।
ମହାପ୍ରତାପୀ ସେ ଅଟଇ ବଜ୍ରକୀଟ
ମହାପ୍ରଳୟ କାଳେ ସେ ଥାଇ ପର୍ବତର କୋଟ । ୯୯ ।
ଜଳ ଅନଳ ତାରଣ ଯାହାର କାଏ
ମହାପ୍ରଳୟ ଗଲେ ମଣଇଂ ଦିବସ ଅନ୍ତ ପ୍ରାଏ । ୧୦୦ ।
ସେ ଶିଳା ନବାଡଇ ଯେ ଅନନ୍ତ କୋଟି ମୂର୍ତ୍ତି
ସେହି ସେ ଜାଣଇ ସିନା ଶିଳାଂକର ସଙ୍ଗତି । ୧୦୧ ।

୯୨।୨ ଗମନ୍ତି ନାନା ତୀର୍ଥେ ତୋଷନ୍ତି କମଳାକ୍ଷୀ । (ଙ, ଚ)
୯୩।୨ ଲୋଡନ୍ତି ଶାଳଗ୍ରାମ, ଶିଳା ଯେଉଁ ବାଛନ୍ତି ହାଥେ ମୂର୍ତ୍ତିବନ୍ତେ । (ଜ,ଙ,ଚ,ଛ)
୧୦୦।୧ ଜଳ ଅନଳ ଦହନ ନୋହଇ ତାହାର କାଏ । (ଛ)

ସେହି ନଗ୍ରାକୂଳେ ରହିଲେ କୃପ ଅଶତ୍ଥାମା ମାଧବ
ଗ୍ରହେଣ ତାହାଙ୍କୁ ଯେ ଛାଡିଲେ ବାସୁଦେବ । ୧୦୨ ।
ଗଣ୍ଡୂକା ନଗ୍ରର ଈଶାନ୍ୟ ଭାଗେ ଥିଲେ
ସଙ୍ଗ ଛାଡି ହରି ପର୍ବତେ ବିଜେ କଲେ । ୧୦୩ ।
ତତକ୍ଷଣେ ସୁମରଣା କଲେ ଖଗେଶ୍ୱରେ ଚକ୍ରଧର
ରମ୍ୟକ ଦ୍ୱୀପରୁ ଗ୍ରହ ପାଞ୍ଚଘଡିରେ ମିଳିଲା ଛାମୁର । ୧୦୪ ।
ବିଜେ କଲେ ଭଗବାନ ବଇନେହେୟ ପିଠି
କପାଳ ଲୋଚନ ଷ୍ଠର୍ଥେ ପାଇଂ ଭେଟିଲେ ଯେ କୃଷ୍ଣ କପଟି । ୧୦୫ ।
କୃପ ଅଶତ୍ଥାମା ଯେତେ ଶହସ୍ର ଥିଲେକ ଲୁଗ୍ରଇ
ଜଳେ ବୁଡିଣ ତାହା ଯେ ଆଣିଲେ ଯଦୁସାଇଂ । ୧୦୬ ।
ଗରୁଡ ପିଠିରେ ନେଇ ଥୋଇଲେ ଧନୁଶର
ଯାଇଂ ଗ୍ରହେ ବିଜେ କଲେ ପ୍ରଭୁ ଦ୍ୱାରାବତୀପୁର । ୧୦୭ ।
କୃଷ୍ଣ ବିଜେ କରିବାର ଜାଣିଣ ଦ୍ରୋପଦୀ
କାନ୍ଦ କାନ୍ଦ ହୋଇଣ ସେ ଆସି ମିଳିଲେକ କତି । ୧୦୮ ।
ଗୋବିନ୍ଦେ ବୋଇଲେ ଶୁଣ ଗୋ ଦ୍ରୋପଦ କୁମାରୀ
ଅସ୍ତ୍ର ଆଣିଲ ଗୋ ତୋ ପୁତ୍ର ବଇରି ଛଳକରି । ୧୦୯ ।
ଦ୍ରୋପଦୀ ଛାମୁରେ ଦିଲେକ ଦେବହରି
ଦେଖି ସାନନ୍ଦ ହୋଇଲେ ଯେ ଦ୍ରୋପଦ କୁମାରୀ । ୧୧୦ । ୫୪୫ ।

---

## ଶ୍ରୀକୃଷ୍ଣଙ୍କଠାରୁ ନନ୍ଦ ଓ ବସୁଦେବଙ୍କର ମହାଭାରତ ଯୁଦ୍ଧବୃତ୍ତାନ୍ତ ଶ୍ରବଣ

ଶ୍ରୀକୃଷ୍ଣଂକ ବିଜେ ଦେଖି ପୁଚ୍ଛେ ଆନନ୍ଦେ ଉଗ୍ରସେନ
ନନ୍ଦ ବସୁଦେବ ଯାଇଂ ଭେଟିଲେ ସନ୍ନିଧାନ । ୧ ।
ବସୁଦେବ ବୋଇଲେ ଦେଖି ନୁଆରଇ ତୋତେ ଦିବାରାତ୍ରେ
କନ୍ଦ୍ରୁତ କାରଣେ ତୁମ୍ଭେ ଯେତେ ଚନ୍ତା ଅର୍ଥେ । ୨ ।
ଗୋବିନ୍ଦ ବୋଇଲେ ତାତ କହଇଂ ମୁହିଁ ସାଧେ
ପାଣ୍ଡବପ୍ରିୟେ ହୋଇ ପଶିଲ ମହାଭାରଥ ଯୁଦ୍ଧେ । ୩ ।

ବସୁଦେବ ବୋଇଲେ ମହାଭାରଥ ଯୁଦ୍ଧ କଥା
ସଂକ୍ଷେପି କହିବା ମୋତେ ଶୁଣିମା ମହାଭାରଥ ବାରତା । ୪ ।
ଆହ୍ଵ ଅନ୍ତ ମଧ୍ୟେ ତୁମ୍ଭେ ହୋଇଥିଲ ରଥବାହି
କେତେକ ପଡ଼ିଲେ କେତେ ଛନ୍ତି ରହି । ୫ ।
ଗୋବିନ୍ଦେ ବୋଇଲେ ତାତ ଶୁଣ ସାବଧାନେ
ପ୍ରଥମ ଯୁଦ୍ଧ ମକର ମାସ ଶୁକ୍ଳପକ୍ଷ ପ୍ରତିପଦାଦିନେ । ୬ ।
ବୁଧବାର ସେଦିନ ଧନିଷ୍ଠା ନକ୍ଷତ୍ର
କୁମ୍ଭରେ ଚନ୍ଦ୍ର ମକର ରାଶିରେ ଆଦିତ୍ୟ । ୭ ।
ବାଳବ ନାମେ କରଣ ପରିଘ ନାମେ ଯୋଗ
ତିନିଜଣା ଶତାଶୋହିଣୀ ସହସ୍ର ରାଜା ଦୁର୍ଯ୍ୟୋଧନର ଭାଗ । ୮ ।
ତିନିପଦ୍ମ ରଥୀ ବତିଶ ପଦ୍ମ ହାଥୀ
ବଶାଶତେ ପଦ୍ମ ଅଶ୍ୱ ତିନି ବାସ୍ତରି ଷଉଣୀ ପାଦାନ୍ତି । ୯ ।
ଯେତେ ସଇନ ସାହା ହୋଇଲେ କଉରବେ
ଯେକଜଣା ତିନିସହସ୍ର ନୃପତି ହୋଇଲେ ପାଣ୍ଡବେ । ୧୦ ।
ବାସ୍ତରି ଷଉଣୀ ପାଦାନ୍ତି ମର୍ବୁଦେକ ରଥୀ
ଦୁଇ ମର୍ବୁଦ ହାଥୀ ଚାରି ମର୍ବୁଦ ଅଶ୍ୱ ହୋଇଲେ ପାଣ୍ଡବଂକର
କଟି । ୧୧ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଅଶସ୍ତମା
ଭୂରିସବା ସୋମଦତ୍ତ ବାହ୍ଲିକ ଯେ କୃପବ୍ରହ୍ମା । ୧୨ ।

---

୧୨।୨ କେତେକ ପୋଥିରେ ଯଦ୍ୟରଥ ପାଠ ଅଛି ଓ ସୋମଦତ୍ତ ନାହିଁ । ଥ, ଝ, ଙ, ଜ ପୋଥିରେ ସୋମଦତ୍ତ ଓ (ଯଦ୍ୟରଥ) ଜୟଦ୍ରଥ ଉଭୟ ନାମ ଅଛି ।

୧୨।୨ "ଭୂରିସବା ସୋମଦତ୍ତ ବାହ୍ଲିକ ଯେ କୃପବ୍ରହ୍ମା" ପରେ (ଖ, ଥ) ରେ ପାଠ:—

ଅଭିମନ୍ୟୁ ଅର୍ଜୁନ ଯେ ପାଣ୍ଡବଂକ କଟି
କଉରବେଂକର ହୋଇଲେ ତାତ ନବ ମହାରଥୀ
ଦ୍ରୋପଦ ବିରାଟ ଶ୍ୱେତ ଉତ୍ତର ଧୃଷ୍ଟଦ୍ୟୁମ୍ନ ଶ୍ରୀଖଣ୍ଡୀ ।
ଯେତେ ମହାରଥୀ ଯେ ପାଣ୍ଡବଂକର କଟି
ପାଣ୍ଡବଂକର ଆଉ ଯେ ନାହାନ୍ତି ମହାରଥୀ ।

କଉରବେ ହୋଇଲେ ତାହ ନବ ମହାରଥୀ
ଯେତେକା ମହାରଥୀ ଅର୍ଜୁନ ହୋଇଲେ ପାଣ୍ଡବଂକର କତି । ୧୩ ।
ଭୀଷ୍ମ ସେନାପତି ହେଲେ ପ୍ରଥମ ଦିବସେ
ତେନ ଅକ୍ଷଉଣୀ ବଳ ଯେନ ବୃଦକ୍ଷ ଶରଣ ପଶିଲେ ପାଣ୍ଡବଂକର ପାଶେ । ୧୪ ।
ପ୍ରଥମ ଦିନ ଯୁଦ୍ଧେ ଭୀଷ୍ମ ମହାରଥୀ
ପାଣ୍ଡବଂକର କଡରେ ପଡିଲେ ଦଶସହସ୍ର ରଥୀ । ୧୫ ।
ପଞ୍ଚଦଶ ସହସ୍ର ପଡିଲେ ମତ୍ତହାଥୀ
କୋଡିଏ ସହସ୍ର ଅଶ୍ୱ ଚାଳିଶି ସହସ୍ର ପାଦାନ୍ତି । ୧୬ ।
ପ୍ରଥମ ଯୁଦ୍ଧେ ଯେତେକ ସଇନ ନାଶଗଲା
ମାନଗୋବନ୍ଦର ଆଠୁଂ ଅର୍ବୁଦେକ ରଥୀ ପଡିଲା । ୧୭ ।
ଦୁଇଅର୍ବୁଦ ଗଜ ପାଞ୍ଚଅର୍ବୁଦେକ ଅଶ୍ୱଯୋଧୀ
ଦଶଲକ୍ଷ ପାଦାନ୍ତ ପଡିଲେ ଯେ ବିଧି । ୧୮ ।
ପୁଣି ସମର ହୋଇଲା ମକରମାସ ଶୁକ୍ଳପକ୍ଷ ଦ୍ୱିତୀୟାର ତିଥି । ୧୯ ।
ଶତଭିଷା ନକ୍ଷତ୍ର ଯେ ବାର ବୃହସ୍ପତି
କଉଳବ ନାମେ କରଣ ଶିବ ନାମେ ଯୋଗ
ସେ ଦିନ ଅଂସକ୍ଷେପ ହୋଇଲା ରଣରଙ୍ଗ । ୨୦ ।
କଉରବଂକର ଅଚ୍ୟନ୍ତ ଭୀଷ୍ମ ମହାରଥୀ
ଦ୍ୱିତୀୟ ଦିନ ସମରେ ଭୀଷ୍ମ ପାଡିଲେ କୋଡିଏ ସସ୍ର ରଥୀ । ୨୧ ।
ପାଞ୍ଚ ଅଯୁତେ ଅଶ୍ୱ ତିନ ଅର୍ବୁଦେକ ହାଥୀ
ତେନ କୋଟି ଯୋଦ୍ଧା ଯେ ସମରେ ନପାତି । ୨୨ ।
ଚାରି ଅକ୍ଷଉଣୀ ପାଦାନ୍ତ ପାଡିଲେ ସମରେ
ଯେତେକ ପଡିଲେ ଯେ ପାଣ୍ଡବଂକ ଆଠରେ । ୨୩ ।
ମାନଗୋବନ୍ଦର ପଡିଲେ ତେନକୋଟି ରଥୀ
ନବକୋଟି ଅଶ୍ୱ ପଞ୍ଚକୋଟି ହାଥୀ । ୨୪ ।

---

୧୩ { କଉରବେ ହୋଇଲେ ପଛେ ଭୀଷ୍ମେ ସେନାପତି
ପାଣ୍ଡବଂକର କଡରେ ଯେ ଶ୍ୱେତ ମହାରଥୀ । (କ)

୨୦।୨ ସେହିଦିନ ସଇନଂକୁ ପଡିଲା ରଣଭଙ୍ଗ । (ଘ)

୨୨।୧ ପାଞ୍ଚଅର୍ବୁଦ ଅଶ୍ୱ ନବଅର୍ବୁଦ ହାଥୀ । (କ)

ଷୋଳ କ୍ଷଉଣୀ ଯେ ପାଦାନ୍ତ ସମରେ ପଡ଼ିଲା
ଦ୍ୱିତୀୟ ଦିନ ସମର ଯେତେକେତେହେଁ ରହିଲା । ୨୫ ।
ହେ ତାତ ମକରମାସ ଶୁକ୍ଳପକ୍ଷ ତୃତୀୟା ଭୃଗୁବାର ଦିନ
ପୂର୍ବଭାଦ୍ର ନକ୍ଷତ୍ର ଯେ ଅଟଇ ବଦ୍ୟମାନ । ୨୬ ।
ତଇତଳ ନାମେ କରଣ ଶିବ ନାମେ ଯୋଗ
ସେ ଦିନ ସମର ଯେ ହୋଇଲା ରଣରଙ୍ଗ । ୨୭ ।
ସମରେ ସେ ଦିନ ସଜ ହୋଇଲେ ଭୀଷ୍ମ ମହାରଥୀ
ପାଣ୍ଡବଙ୍କ ଥାଠେ ଶ୍ୱେତ କୁମର ହୋଇଲେ ସେନାପତି । ୨୮ ।
ଲକ୍ଷେକ ରଥ ରଥୀ ଯେ ବେନିଲକ୍ଷ ହାଥୀ
ଗୃଲକ୍ଷ ଅଶ୍ୱ ଯୋଦ୍ଧା ପାଞ୍ଚଲକ୍ଷ ପାଦାନ୍ତ । ୨୯ ।
ଭୀଷ୍ମ ବଧକଲେ ଯେ ପାଣ୍ଡବଙ୍କ ଯେତେ ବଳ
ବଢ଼ାଇ ସମର କଲା ବଡ଼ିଟର ବାଳ । ୩୦ ।
ମାନଗୋବନ୍ଦର ପଡ଼ିଲା ଯେ ବେନିଲକ୍ଷ ରଥୀ
ସାତଲକ୍ଷ ଗଜ ନବଲକ୍ଷ ଅଶ୍ୱ ଷୋଳ କ୍ଷଉଣୀ ପାଦାନ୍ତ । ୩୧ ।
ସମର କରନ୍ତେଣ ଆଦିତ୍ୟ ଅସ୍ତଗଲା
ଓହୋବଳ ସଇନ ସେଦିନ ସମର ଭୂମିରେ ରହିଲା । ୩୨ ।
ହେ ତାତ ମକରମାସ ଶୁକ୍ଳପକ୍ଷ ଚଉଠି ଶଉରିବାର
ଉତ୍ତରଭୋଦୁଅ ନକ୍ଷତ୍ର ବିଷ୍ଟି କରଣ ସିଦ୍ଧି ନାମେ ଯୋଗର । ୩୩ ।
ମହାଗୋଳ ସମର ଗୋଟିଏ ହୋଇଲା ସେ ଦିନର
ଅଷ୍ଟାଦଶ କ୍ଷଉଣୀ ସଇନ୍ୟ ପଡ଼ିଲେ କଉରୋବଙ୍କର । ୩୪ ।
ପାଣ୍ଡବଙ୍କର ପଡ଼ିଲେ ଯେ ସଇନ୍ୟ ପାଞ୍ଚକ୍ଷଉଣୀ
ଶ୍ୱେତ କୁମାର ପଡ଼ିଲା ସେ ଦିନର ରଯେ୍ୟଣୀ । ୩୫ ।
ମକର ମାସ ଶୁକ୍ଳପକ୍ଷ ପଞ୍ଚମୀ ରବିବାର
ରେବତୀ ନକ୍ଷତ୍ରକୁ ଭୋଗ୍ୟ ସେ ଦିନର । ୩୬ ।
ବିଷ୍ଟି ନାମେ କରଣ ଯେ ପ୍ରୀତି ନାମେ ଯୋଗ
ଓହୋବଳ ହୋଇଲା ସେ ଦିନ ରଣରଙ୍ଗ । ୩୭ ।

---

୩୪।୨ ଯେଗାର କ୍ଷଉଣୀ ସଇନ ପଡ଼ିଲେ କଉରୋବଙ୍କର । ( ୯, ୫ )

କଉରବେଙ୍କ ଅଟନ୍ତି ଖ୍ରିଷ୍ଟ ମହାରଥୀ
ପାଣ୍ଡବଙ୍କ କତି ସେ ଦିନ ଅର୍ଜୁନ ଯେ ରଥୀ । ୩୮ ।
ପାଣ୍ଡବଙ୍କ କତି ସେ ଦିନ ପଡିଲେ ପାଞ୍ଚଶତ ନୃପତି
ଅଶି ସହସ୍ର ରଥୀ ବେନ ସହସ୍ର ହାଥୀ । ୩୯ ।
ଚଉରଲକ୍ଷ ଅଶ୍ୱଯୋଦ୍ଧା ପାଞ୍ଚକ୍ଷଉଣୀ ପାଦାନ୍ତି
ଯେତେ ସଇନ ମାଇଲେ ଖ୍ରିଷ୍ଟ ମହାରଥୀ । ୪୦ ।
ଦ୍ରିଯୋଧନର ପଡେ ନବଶତ ମାଣ୍ଡଳିକ
ନବଲକ୍ଷ ଅଶ୍ୱ ଅନ୍ଥବ୍ରତେ ହାଥୀ ମୃତ୍ୟୁପିଣ୍ଡ । ୪୧ ।
ଷୋଳକ୍ଷଉଣୀ ଯେ ସଇନ ନାଶକଲା
ବେଳ ତିନ ପ୍ରହରକୁ ଯେ ସମର ରହିଲା । ୪୨ ।
ଶ୍ରୀ ଚାତ ମକର ଶୁକଳ ହୋଏ ଷଷ୍ଠୀ ଚନ୍ଦ୍ର ବାର
ଅଶ୍ୱିନୀ ନକ୍ଷତ୍ର କଉଳବ କରଣ ଶୁକ୍ଲଯୋଗ ସେ ଦିନର । ୪୩ ।
ସେଦିନ ସମର କଲେ ଖ୍ରିଷ୍ଟ ମହାରଥୀ
ପାଣ୍ଡବଙ୍କ ଥାଠେ ମାଇଲେ ଦଶସସ୍ର ରଥୀ । ୪୪ ।
ପାଞ୍ଚ ଅନ୍ଥବ୍ରତ ହାଥୀ ବେନଲକ୍ଷ ହୟେ
ପନ୍ଦର କ୍ଷଉଣୀ ପାଦାନ୍ତି ତିନସସ୍ର ଗୟେ । ୪୫ ।
ଯେତେକ ସଇନ ପଡିଲେ ଯେ କଉରବେ
ପାଣ୍ଡବଙ୍କର ପଡିଲେ ତିନକ୍ଷଉଣୀ ବଳ ସର୍ବେ । ୪୬ ।
ଶ୍ରୀ ଚାତ ମକର ଶୁକଳପକ୍ଷ ସପ୍ତମୀ ଭଉମବାର
(ଦ୍ୱିଜା) ଭରଣୀ ନକ୍ଷତ୍ର ଯେ ଶ୍ରୀଗ୍ୟ ସେ ଦିନର । ୪୭ ।
ଗର ନାମେ କରଣ ବ୍ରହ୍ମ ନାମେ ଯୋଗ ସେ ଦିନର
ଦଶ ସହସ୍ର ଯୋଦ୍ଧା ପଡିଲେ କଉରବେ ଥାଠର । ୪୮ ।
ଲକ୍ଷେକ ରଥୀ ଯେ ବେନଲକ୍ଷ ହାଥୀ
ପାଞ୍ଚ ଅନ୍ଥବ୍ରତ ଅଶ୍ୱ ଚଉରକ୍ଷଉଣୀ ପାଦାନ୍ତି । ୪୯ ।
ଯେତେକ ସଇନ ଯେ ପାଣ୍ଡବଙ୍କର ଖ୍ରିଷ୍ଟେ ନାଶକଲେ
ଲକ୍ଷେକ ଯୋଦ୍ଧା କଉରବେଙ୍କର ପଡିଲେ । ୫୦ ।
ଚଉରଲକ୍ଷ ଅଶ୍ୱ ପଡିଲେ କୋଡିଏ କ୍ଷଉଣୀ ପାଦାନ୍ତି
ମାଣ୍ଡଳିକ ପଡିଲେ ସହସ୍ରେକ ସେନାପତି । ୫୧ ।

ଅଷ୍ଟମୀ ବୁଧବାର କୃତ୍ତିକା ନକ୍ଷତ୍ର
ସେଦିନ ଗାଙ୍ଗେୟ ପାଡିଲେ ରଥୀ ବାର ଯେ ସହସ୍ର । ୫୨ ।
ସାତ ସହସ୍ର ତିନି ଅନ୍ତ୍ରିବ୍ରତ ନାଗ
ବାର କ୍ଷଉଣୀ ପାଦାନ୍ତ ତିନିକ୍ଷଉଣୀ ତୁରଙ୍ଗ । ୫୩ ।
କଉରବଙ୍କର ପଡିଲ ବାର ସହସ୍ର ପାଶଦଣ୍ଡ
ନବଲକ୍ଷ ରଥୀ ପନ୍ଦରଲକ୍ଷ ଗଜଦଣ୍ଡ । ୫୪ ।
ତିନିକୋଟି ତୁରଙ୍ଗ ବାରକ୍ଷଉଣୀ ପାଦାନ୍ତ
ଏତେକ ସଇନ ମାରି ରଣ ଜୟକଲେ ଭୀଷ୍ମ ମହାରଥୀ । ୫୫ ।
ଭେ ତାତ ମକରମାସ ଶୁକ୍ଳପକ୍ଷ ନବମୀ ଗୁରୁବାର
ରୋହିଣୀ ନକ୍ଷତ୍ର ଅଟଇ ସେ ଦିନର । ୫୬ ।
ବାଳବ ନାମେ କରଣ ବଇଧୃତି ନାମେ ଯୋଗ
ସେଦିନ ଭୀଷ୍ମେ ପାଡିଲେ ନବଲକ୍ଷ ତୁରଙ୍ଗ । ୫୭ ।
ତିନି ସହସ୍ର ପାଶଦଣ୍ଡ ଚାରି ସହସ୍ର ରଥୀ
ଲକ୍ଷେକ ଗଜ ଅଶ୍ୱ ଚାରି କ୍ଷଉଣୀ ପାଦାନ୍ତ । ୫୮ ।
ଏତେକ ପାଣ୍ଡବେ ମାଇଲେ କଉରବଙ୍କର କତି
ଏତେକେହେଁ ସମର ରହିଲ ଅଦ୍ୟାପିଟି । ୫୯ ।
ଭେ ତାତ ମକରମାସ ଶୁକ୍ଳପକ୍ଷ ଦଶମୀ ଶୁକ୍ରବାର
ମୃଗଶିରା ନାମେ ନକ୍ଷତ୍ର ବିଷକୁମ୍ଭ ଯୋଗ ତଇତିଳ କରଣ
ସେ ଦିନର । ୬୦ ।
କୋଟିଏ ରଥ ପାଡିଲେ ଭୀଷ୍ମ ସେନାପତି
ଏଗାର ସହସ୍ର ଯେ ମାଇଲେ ନୃପତି । ୬୧ ।
ବିଶାଶତ ମର୍ଭୂତ ଯେ ମାଇଲେ ମତ୍ତନାଗ
ବାଇଶିକ୍ଷଉଣୀ ସଇନ ନବଲକ୍ଷ ତୁରଙ୍ଗ । ୬୨ ।
ଦଶମୀ ଦିନର ସମରେ ଗଙ୍ଗାର ଆତ୍ମଜା
ଅର୍ଜୁନର ବାଣେ ସେ କଲେ ସମର ଶେଯ୍ୟା । ୬୩ ।
ଭେ ତାତ ମକରମାସ ଶୁକ୍ଳ ଏକାଦଶୀ ଶନିବାର
ଆର୍ଦ୍ରା ନକ୍ଷତ୍ର ପ୍ରୀତି ନାମେ ଯୋଗ ସାର । ୬୪ ।
ଏ ଦିନ ମୁକୁଟ ବାନ୍ଧି ସେନାପତି ହୋଇଲେ ଗୁରୁଦ୍ରୋଣେ
ଚତୁର୍ଭୁଜ ଗୋଟାଏ କଲେକ ଭିଆଣେ । ୬୫ ।

ସେ ଭୂଅ ଆବୋର ବହୁତ ସମର କଲ ସୋଦ୍ଦୋଦ୍ରା ତନୁ । ୬୬ ।
ପାଞ୍ଚଲକ୍ଷ ରଥୀ ମାରିଲା ଯେତିକା ଅଭିମନ୍ୟୁ
ଆଠଲକ୍ଷ ଗଜ ଯୋଦ୍ଧା ଦଶଲକ୍ଷ ହୟେ
ଆଠଲକ୍ଷ ପାଦାନ୍ତ ପଡ଼ିଲେ ଅଭିମନ୍ୟୁର ଘାୟେ । ୬୭ ।
ସମରେ ନୁଆର ଦ୍ୱ୍ର୍ଯୋଧନ କଲାକ କୂଟ
ଗୋଳଯୁଦ୍ଧ କରି ସେ ବେଢ଼ିଲେ ସବଂଥାଠ । ୬୮ ।
ଧୂଶାସନ ବଧକଲା ଦେବ କୁମାର ଅଭିମନ୍ୟୁକୁ
ଅର୍ଜୁନକୁ ଘେନ ମୁଂ ଗଲ ଜଳନ୍ଧର ଭୂଅକୁ । ୬୯ ।
ଅର୍ଜୁନ ସେଦ୍ଦନ ଜଳନ୍ଧର ଭୂଅ ଭେଦା
ଚଉଦଲକ୍ଷ ସଇନ୍ୟ ସେ ପକାଇଲାକ ଛେଦ୍ଦ । ୭୦ ।
ଦ୍ୱେ ତାତ ମକରମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଅର୍କବାର
ପୁନର୍ବସୁ ନକ୍ଷତ୍ର ଯେ ଦ୍ୱେଗ ସେ ଦ୍ଦନର । ୭୧ ।
ଶକଟ ଭୂଅ ଗୋଟିଏ ରଚିଲେ ଦ୍ରୋଣ ସେନାପତି
ଭୂଅ ଭେଦ୍ଦ ଗଲା ଯେତିକା ଅର୍ଜୁନ ମହାରଥୀ । ୭୨ ।
ସାତ୍ୟକି ଭୀମସେନ ଅଇଲେ ତାହାର ପଛ
ମୁକୁଟବନ୍ଧା ଯୋଦ୍ଧା ପଡ଼ିଲେ ତେରଲକ୍ଷ । ୭୩ ।
ଗଜ ଯୋଦ୍ଧା କୋଟିଏ ପାଞ୍ଚକୋଟି ଅଶ୍ୱଯୋଦ୍ଧା
ଭୂରିସବାଂକ ଭୂଲେ ଯେତେକ ଗଲେ ବଧା । ୭୪ ।
ଭୂଅଦ୍ୱାର କତି ଥିଲେ ବତିଶସହସ୍ର ରାୟେ
ଯେତେକ ବଧକଲେ ପାଣ୍ଡବ ଧନୁର୍ଜୟେ । ୭୫ ।
ଯଦ୍ୟରଥ ପଡ଼ିଲାକ ଆଦ୍ଦତ୍ୟ ଅସ୍ତକାଳେ
ଷୋଳକ୍ଷଉଣୀ ପଡ଼ିଲେ ଯେ ସେଦ୍ଦନର ରେଳେ । ୭୬ ।
ସେହ୍ୱ ରାତ୍ରେ ପୁଣି ସମର ଯେ ହେଲା
କର୍ଣ୍ଣର ବଜ୍ରଶକ୍ତି ଘାତେ ଘଟଉତ୍କଟ ନାଶଗଲା । ୭୭ ।
ଘଟଉତ୍କଟ ନନ୍ଦନ ଘଣ୍ଟିକା ମହାତ୍ରସୀ
ଯେହାର ଭୂଲେ ପଡ଼ିଲେ ଦଶସହସ୍ର ରଥୀ । ୭୮ ।
ପାଞ୍ଚାଳ ଦେଶର ରାଜା ଦ୍ରୋପଦେଶ୍ୱର ରାୟେ
ପାଞ୍ଚ ଅକ୍ଷ୍ୱୃତ ଯୋଦ୍ଧା ଘେନ ପଡ଼ିଲେ ଦ୍ରୋଣଂକର ଘାୟେ । ୭୯ ।

ଛନକ୍ଷଉଣୀ ବଳ ସଙ୍ଗେ ଯେ ଯେମନ୍ତ ସେ ଥାଠ
ପାଞ୍ଚଶତ ପାର୍ଥଙ୍କ ଭୁଲେ ପଡ଼ିଲେ ଝଗଡ଼ । ୮୦ ।
ମରୁତ ଦେଶର ରାଜା ଭୀମ ଚନ୍ଦ୍ରବର୍ତ୍ତୀ
କୃପଙ୍କ ସମରେ ସେ ପଡ଼ିଲେ ଭୁଲେ ଯେନ ଅକ୍ଷୟବଟେକ ହାଥୀ । ୮୧ ।
ଗୋବିନ୍ଦେ ବୋଇଲେ ତାତ ଗୋଳଯୁଦ୍ଧ ହୋଇଲା ସେଦିନର ବୃତ୍ତ
ସମରେ ପଡ଼ିଲେ ତହିଁ ଅନେକ ନୃପତି । ୮୨ ।
ମଙ୍ଗଳ ଦେଶର ରାଜା ମାନଅରଜୁନ
ଅଶ୍ୱତ୍ଥାମା ସମରେ ସେ ହୋଇଲା ନିଧନ । ୮୩ ।
ପଦ୍ମଦଳ ଦେଶର ରାଜା ପଦ୍ମ ଯେ କେଶରୀ
ଧୃଷ୍ଟଶାସନ ନାଶକଲା ଭୁଲେ ଅଶ୍ୱ ଗଜ ଲକ୍ଷ ଗୁରୁ । ୮୪ ।
ବୃନ୍ଦାଅର୍କ ଦେଶ ରାଜା ଅଟେ ମନସିଜ
ଦୁର୍ଜୟ ମାଇଲା ତାର ଭୁଲେ ନବସହସ୍ର ହାଦେ ଗଜ । ୮୫ ।
ମହ୍ଲାର ଦେଶର ରାଜା ଅଟଇ ତ୍ରିଗର୍ତ୍ତ
କର୍ଣ୍ଣ ମାଇଲା ତାର ଭୁଲେ ଅକ୍ଷୟବଟେକ ରଥ । ୮୬ ।
ନର୍ଦ୍ଧର ଦେଶର ରାଜା ଅଟଇ ଗଣପତି
ଦୃଢ଼ବନ୍ଧ ନାଶକଲା ଭୁଲେ ସାତସହସ୍ର ହାଥୀ । ୮୭ ।
ଶ୍ରୀଗୋବିନ୍ଦେ ବୋଇଲେ ତାତ ଗୋଳଯୁଦ୍ଧ ଘୋର ଯେ ଅନ୍ଧାର
ନିଶାବୃତ୍ତ
ପାଣ୍ଡବଙ୍କ ଥାଟେ ପଡ଼ିଲେ ଯେତେଗାରଶତ ପଞ୍ଚସ୍ତୋର . ନୃପତି । ୮୮ ।
ମର୍ଭୁଟେକ ରଥୀ ଯେ ପାଞ୍ଚ ମର୍ଭୁଟେକ ଗଜ
ନବ ମର୍ଭୁତ ଅଶ୍ୱ ନବକ୍ଷଉଣୀ ପାଦାନ୍ତ ରାଜ । ୮୯ ।
କୃଷ୍ଣ ବୋଇଲେ ହେ ତାତ ମୁଁ ଯେତେକ କହିଲି
ପାଣ୍ଡବଙ୍କ ଆଡେ ଯେତେକ ପଡ଼ିଲେ ତୁମ୍ଭ ଆଗେ ବୋଇଲି । ୯୦ ।
ଦୁର୍ଯୋଧନ ପକ୍ଷରୁ ରଣେ ପଡ଼ିଲେ ଯେତେକ ସଇନ
ଥୋକାଏ କହିବି ତାତ ସାବଧାନେ ଶୁଣ । ୯୧ ।

---

୮୧। { ମରୁତ ଦେଶର ରାଜା ମାନଚନ୍ଦ୍ରବର୍ତ୍ତୀ । (ଡ, ଘ)
ମରୁତ ଦେଶର ରାଜା ଖେଟେକ ଚନ୍ଦ୍ରବର୍ତ୍ତୀ । (ଙ, ଥ, ଚ) }

୮୪। ଧୃଷ୍ଟଶାସନ ନାଶକଲା ଭୁଲେ ସାତସହସ୍ର ରଥୀ । (ଘ, ଙ, ଥ)

ଘଟଉତ୍କଚ ସମରେ ପଡ଼ିଲା ଅଳମ୍ବୁଷ
ଅଳାୟୁଧ ତୁଲେ ମଲେ ମର୍ତ୍ତ୍ୟରେ ରାକ୍ଷସ । ୯୨ ।
ଦୁର୍ଯୋଧନ ଶ୍ୱଶୁର ଅଟଇ ଭୂମନ୍ୟୁ
ସାତସହସ୍ର ରାଜା ତୁଲେ ସଂଗର୍ତ୍ତି ରାଜା ତେଜିଲାକ ତନୁ । ୯୩ ।
ମାଳବ ଦେଶର ରାଜା ନାମ କୃତବର୍ମା
ନବଲକ୍ଷ ଗୁଞ୍ଜର ଯେନ ପଡ଼ିଲା ତାହାର ହାଥୀ ଅଶ୍ୱତ୍ଥମା । ୯୪ ।
ବୀରଭଙ୍ଗ ଦେଶର ରାଜା ବୀରମାଳ
ଲକ୍ଷେକ ଯୋଦ୍ଧା ତୁଲେ ସେ ପଡ଼ିଲାକ ତଳ । ୯୫ ।
କୁମୁଦ ଦେଶର ରାଜା ଚନ୍ଦ୍ରନଉର୍ମୀ
ତିନସହସ୍ର ରାଜା ସହ ପଡ଼ିଲାକ ଭୂମି । ୯୬ ।
ଚନ୍ଦ୍ରବାହୁ ସୁବାହୁ ଯେ କୁନ୍ଧାଣ ବଙ୍ଗରାୟେ
ପାଞ୍ଚକ୍ଷଉଣୀ ବଳ ତୁଲେ ଯେ ପଡ଼ିଲେ ବେଳଗ୍ରାୟେ । ୯୭ ।
ଅଶ୍ୱତ୍ଥମା ହତ ଶୁଣି ପ୍ରଭାତେ ଶସ୍ତ୍ର ଯେ ଗ୍ଭଡ଼ିଲେ ଦ୍ରୋଣଗୁରୁ
ଧୃଷ୍ଟଦ୍ୟୁମ୍ନ ଶିର ଛେଦିଲେ ତାହାଂକର ଦୁରୁଂ । ୯୮ ।
ବସୁଦେବ ବୋଇଲେ ପ୍ରଶୁରାମ ସାଦ୍ରଶେ ଦ୍ରୋଣ ଯୋଧୀ
ବିନା ଯୁଦ୍ଧେକ କର୍ମେ ଯେତୃତେକ ଅପରାଧୀ । ୯୯ ।
ଗୋବର୍ଦ୍ଧେ ବୋଇଲେ ତାତ ଅନର୍ଯ୍ୟାପ ହେଲା ଶର ବୃଷ୍ଟି
ଅଶ୍ୱତ୍ଥମା ଗଜକୁ ଭୀମ ଗଦାଯେ ନେଇ ପିଟି । ୧୦୦ ।
ଅଶ୍ୱତ୍ଥମା ହତ ବୋଲି ଓହୋବନେ ଶୁଭିଲାକ ବାଣୀ
ଦ୍ରୋଣଗୁରୁ ଶହସ୍ର ଗ୍ଭଡ଼ିଲେକ ତାହା ଶୁଣି । ୧୦୧ ।

---

୯୫। ଲକ୍ଷେକ ରାଜା ତୁଲେ ସେ ହୋଇଲା ପଞ୍ଚାଳ । (ଚ)

୯୭। "ପାଞ୍ଚକ୍ଷଉଣୀ ବଳ ତୁଲେ ଯେ ପଡ଼ିଲେ ବେଳଗ୍ରାୟେ" ପରେ 'ଜ' ପୋଥିର ପାଠ:—

ଅଶ୍ୱତ୍ଥମା ରଥ ସହିତେ ଫିଙ୍ଗିଦେଲା ଭୀମସେନ
ସାଂଗ୍ରାମ ଭୂମି ଗ୍ଭଡ଼ି ପଡ଼ିଲା ବିଶାଶତ ଯୋଜନ ।
ତେଣୁ ସେ ପୁତ୍ରକୁ ଯେ ନ ଦେଖିଲେ ଦ୍ରୋଣେ
ପୁତ୍ର ହତ ଶୁଣି ଶସ୍ତ୍ର ଗ୍ଭଡ଼ିଲେ ବସ୍ତାଣେ । (ଜ)

୯୪। ଗୁଞ୍ଜର—କୁଞ୍ଜର, ହସ୍ତୀ ।

ଧୃଷ୍ଟଦ୍ୟୁମନଂକର ସେ ପିତାର ବଇରି
ଧାଇଁକାରେ ଦ୍ରୋଣଂକୁ ସେ ପକାଇଲେ ମାରି ।୧୦୨।
ଦ୍ରୋଣଂକର ପଡନ୍ତେ ଦୁର୍ଯୋଧନ ବଇକୁଣ୍ଠ
ମୁକୁଟ ବାନ୍ଧିଲେ ସେନାପତି କର୍ଣ୍ଣ ମହାମଲ୍ଲ ।୧୦୩।
ଶ୍ରୀଗୋବିନ୍ଦେ ବୋଇଲେ ତାତ ମକରମାସ ଶୁକଳ ପକ୍ଷ
ପଞ୍ଚମୀ ବୁଧବାର
ମଘାଗତେ ପୂର୍ବ ଫାଲଗୁନୀ ନକ୍ଷତ୍ର ଅଟଇ ସେ ଦିନର ।୧୦୪।
ବବ ନାମେ କରଣ ଅତିଗଣ୍ଡ ନାମେ ଯୋଗ
ମକର ସଂକ୍ରାନ୍ତିକ ଯେ ଅଠର ଦିନ ଭୋଗ ।୧୦୫।
ଯୁଦ୍ଧ ହୋଇଲା ଶେଷ ପଞ୍ଚଦଶ ଦିବସ
ଆର ଦିବସ ସେନାପତି ହୋଇଲା ରାଧେବର ଶିଷ ।୧୦୬।
ଷୋଳ ଦିନରେ ସେ ସେନାପତି ହୋଇଲାକ କର୍ଣ୍ଣ
ଦୁର୍ଯୋଧନର ସତାଶୋଇ ଭାଇ ସାଂଗ୍ରାମେ ମାଇଲା ଭୀମସେନ ।୧୦୭।
ପଞ୍ଚ ଅର୍ବୁଦ ରଥୀ ଦଶ ଅର୍ବୁଦ ହାଥୀ
ବାଇଶି କ୍ଷଉଣୀ ତାତ ପଡିଲେ ପାଦାନ୍ତି ।୧୦୮।
ପାଣ୍ଡବଂକ କତରୁ ପଡିଲା ତିନସହସ୍ର ରଥ
ପାଞ୍ଚସହସ୍ର ଗଜ ଅଶ୍ୱ ତିନ ଅର୍ବୁଦ ।୧୦୯।
ଆରଦିନ ପୁଣି ସମର କଲା ବୀର କର୍ଣ୍ଣ
ସେଦିନର ସମର ଯେ ହୋଇଲା ମହାରଣ ।୧୧୦।
ଭୋ ତାତ କୁମ୍ଭମାସ କୃଷ୍ଣପକ୍ଷ ଗୁରୁବାର ଦିନ
ହସ୍ତା ନକ୍ଷତ୍ର ସେ ଦିନ ବିଷ୍ଟି ନାମେ କରଣ ।୧୧୧।
ନବଲକ୍ଷ କୁଞ୍ଜର ଯେନି କଳିଙ୍ଗସେନ ଥିଲା
ଭୀମ ଗଦା ବୁଲନ୍ତେ ଗଗନେ ଉଡିଗଲା ।୧୧୨।
ସାତକ୍ଷଉଣୀ ବଳ ନବକ୍ଷଉଣୀ ମାତଙ୍ଗ
ଅଗାଧ ସାଗରେ ଯାଇଂ ସେ ପଡିଲେକ ବେଗ ।୧୧୩।
ସୁହସ୍ତା ହାଥୀ ଚଢିଣ ଭଗଦତ୍ତ ରାୟେ
ଲକ୍ଷେ ଯୋଦ୍ଧା ଭୁଲେ ତାକୁ ମାଇଲେ ଧନୁର୍ଜୟେ ।୧୧୪।
ଗୁର୍ଜ୍ଜର ମଗଧ ସଉରାଷ୍ଟ୍ର ମରହଟ୍ଟା କଉଶିକ
କୁବୁଜ କନାଉଜ ରାଜା ପଡିଲେ ଅନେକ ।୧୧୫।

ଯେମନ୍ତ ସମୟେ ତାତ ବେଳ ପାଞ୍ଚଘଡ଼ି
ଘୋର ଧୂଶାସନ ଦୁର୍ବୋଂକର ଭେଟପଡ଼ି । ୧୧୬ ।
ଧୂଶାସନ ଭୁଜ ଉପାଡ଼ି ବୃକୋଦର
ରୁଧିର ବୃଷ୍ଟିକଲା ନେଇ ଦ୍ରୋପଦୀର ଶିର । ୧୧୭ ।
ବସୁଦେବ ବୋଇଲେ ଦ୍ରୋପଦୀ ପରମଲକ୍ଷ୍ମୀ
ରୁଧିର ସ୍ନାହାନ କର୍ମେ କଲ୍ପକ ରଣଭୂମି । ୧୧୮ ।
ଶ୍ରୀଗୋବିନ୍ଦ ବୋଇଲେ ଯୁଧିଷ୍ଠି ଦ୍ରିଯୋଧନ ପଶାଖେଡ଼େ
ଶକୁନି କପଟ ଭିଆଇଲା ସଂକୋଡ଼େ । ୧୧୯ ।
ପଶାଯେଂ ଯୁଧିଷ୍ଠି ହାରଲେ ରାଜ୍ୟଭାର
ସଭାତଳେ ନେଇ ବସାଇଲା ପାଣ୍ଡବ ପଞ୍ଚୁଭାର । ୧୨୦ ।
ଦ୍ରୋପଦୀକ ଆଣ ବୋଲି ବୋଇଲା ମାନଗୋବିନ୍ଦ
ପବନହୁଂ ବେଗେ ଧାଇଂଲା ଧୂଶାସନ ମନ୍ଦ । ୧୨୧ ।
ଲୁଚନ୍ତେଣ ପାଞ୍ଚାଳୀର ଧଇଲା ଯାଇଂ ବାଳ
ଭୂମିରେ ଚରଣ ତାର ନ ପଡ଼ଇ ତଳ । ୧୨୨ ।
ଜାନୁସ୍ତନ ଦେଖିବାକୁ ରାଜା ଆଜ୍ଞା ଦିଲା
ସଭାତଳେ ଦ୍ରୋପଦୀଂକ ଧୂଶା ବିବସନ କଲା । ୧୨୩ ।
ବିରଞ୍ଚି ନାରାୟଣ ଦେଖିଲେ ନୟନେ
ସତୀର ହିଂସାସ ଦେଖି ଭୟେ କଲେ ମନେ । ୧୨୪ ।
ପାଞ୍ଚାଳୀ ଧୀନବାସ ଯେ ଥିଲା ପଞ୍ଚାଶନ କୋଟି
ଗ୍ରୁପ୍ତାକନ୍ୟା ବେଢାଇଲେ ଯେ ଦ୍ରୋପଦୀର କଟି । ୧୨୫ ।
ମେରୁତୁଲ୍ୟ ହୋଇ ବସ୍ତ୍ର ଗୃହଦ୍ୱାରେ ଗୃହକୁଡ଼ ପଡ଼ି
ପାମର ମୂରୁଖେ କେହ୍ବ ତା ନୁଆରଲେ ବାର । ୧୨୬ ।
ଗୋବିନ୍ଦେ ବୋଇଲେ ଯହୁଂ ହିଂସାସ କଲେ କଉରେବେ
କୋପାନଳ କର ଦେଖା ବୃହ୍ମାଂଲେ ଅପାଙ୍ଗେ । ୧୨୭ ।
ଦୋହରା ଘରୁ ଧାଉକାରେ ଉଠିଲା ବହ୍ନନ
ଅନେକ ଅବସ୍ଥା ହୋଇଲେ କଉରେବ କାମିନୀ । ୧୨୮ ।

---

୧୨୮ { ଦେହରୁ ତାଂକର ଉଠିଲା ବହ୍ନନ
ତ୍ରାସେ ପଳାଇଲେ ସକଳ ସଜନ । (ଙ, ଚ)

କେଶ ଧରି ଯେଉଁଦିନୁ ଆଣିଲା ଧୃଶାସନ ମହାବଳୀ
ସେହିଦିନୁ କେଶ ଆଉ ନ ବାନ୍ଧିଲା ଜଜ୍ଞସେନୀ ବାଳୀ । ୧୨୯ ।
ଭାରେଣ ଦ୍ରୋପଦୀ ପ୍ରତିଜ୍ଞା° ବୋଇଲେ ଆରେ ଆରେ ଧୃଷା
କାଳସର୍ପ ଗୃହିଲୁ ରେ ତୋର ଯେତେକ ଭରସା । ୧୩° ।
ଯେବଣ କରେ ଧଇଲୁ ମୋହୋର କବରୀ
ସେ ଭୁଜ ଉପାଡ଼ିଲେ ରୁଧିରେ ସ୍ନାହାନ ମୁହିଂ କରି । ୧୩୧ ।
ତେବେ ସିନା ବାନ୍ଧିବି ସେ ମୋହୋର ଯେ କେଶ
ସେ ଭାଗେ କେଶ ନ ବାନ୍ଧିଲେ ଚଉଦ ବରଷ ସାତମାସ । ୧୩୨ ।
ଶ୍ରୋ ତାତ ଦ୍ରୋପଦୀ ବୋଲି ଯେବଣ ଜଜ୍ଞସେନୀ
ଅଗ୍ନିରୁ ଜାତ କଲେ କୋଟିଯେ ଋଷି ଘେନି ବ୍ୟାସ ମୁନି । ୧୩୩ ।
ଶ୍ରୋ ତାତ ପଞ୍ଚୁପାଣ୍ଡବେ ତାହାନ୍ତ ଘେନ ଲାଗି
ଯେ କଇ ଶରୀର ପାଞ୍ଚକୁହିଂ ଦିଅଇ ଅଙ୍ଗଭୋଗି । ୧୩୪ ।
ପଞ୍ଚୁପାଣ୍ଡବେ କରନ୍ତି ଭୋଗ ପାଞ୍ଚରାତି
ପ୍ରଥମ ଦିବସେ ଶୟନ କରନ୍ତି ଯୁଦ୍ଧେଷ୍ଠିଙ୍କ କତି । ୧୩୫ ।
ରଜନୀ ଭାଗେ ସ୍ୱାମୀକି ଦିଅଇ ଅଙ୍ଗଭୋଗ
ପ୍ରଭାତେ ପଶଇ ଯାଇଂ ମାହାଅନଳ ଯୋଗ । ୧୩୬ ।
ସେ କାୟାଗୋଟି ଦହନ କରଇ ମହାସତୀ
ଆନ କାୟା ଗୋଟିଯେ ଯେ କରଇ ଉତପତ୍ତି । ୧୩୭ ।
ସେ କାୟା ଗୋଟିକ ପୁଣି ଭୀମସେନେ ନିଯୋଗୀ
ଦିବସ ଯାଇଂ ରାତେ ଭୀମସେନକୁ କରଇ ଅଙ୍ଗଭୋଗୀ । ୧୩୮ ।
ପୁଣ ପ୍ରଭାତକାଳେ ପଶଇ ବହ୍ନିନ
ସେ କାୟା ଦହନେ ନବତନ କାୟା ଘେନ । ୧୩୯ ।
ଦିନକୁ ଦିନହିଂ ପୁଣ ନବତନ କାୟେ
ଶରୀର ସମର୍ପଇ ସେ ପାଣ୍ଡବ ଧନୁର୍ଜୟେ । ୧୪° ।
ସେ ଦିବସେକ ରାତ୍ରରେ ଅର୍ଜୁନ ହୋଯେ ଲାଗି
ପୁଣି ପ୍ରଭାତେ ଅଗ୍ନିରେ ପଶି ଶରୀର ପରିତ୍ୟାଗି । ୧୪୧ ।

---

୧୩୧।୨ ସେହି ଦିନରୁଂ ଦେବୀର କେଶ ଯେ ହୋଇଥିଲା ମୁକ୍ତଳ (ଙ,ଝ,ଘ)
୧୩୮।୨ ଦିବାରାତେ ଭୀମସେନକୁ କରଇଲା ଲାଗି । (ଝ, ଝ, ଙ)

ପୁଣିହିଂ ନବତନ ଶରୀର ପରକାଶି
ନକୁଳେ ଅଙ୍ଗଭେଗ ଢଅଇ ଶୁଭ୍ରକେଶୀ । ୧୪୨ ।
ରଜନୀ ପ୍ରଭାତେ ପୁଣି ପଶଇ ବହ୍ନିନ
ସେ କାୟା ଦହନ କରି ନବତନ କାୟା ଘେନ । ୧୪୩ ।
ପୁଣି ଅଙ୍ଗଭେଗ ଢଅଇ ସେ ସହଦେବର ଭୁଲେ
ପୁଣି ଅଗ୍ନିରେ ପଶଇ ସେ ପ୍ରଭାତକାଳ ହେଲେ । ୧୪୪ ।
ଗୋବନ୍ଦେ ବୋଇଲେ ଆହେ ଶୁଣ ଦେବ ତାତ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ମରୁତ ପାଣ୍ଡବ ପଞ୍ଚ ଭ୍ରାତ । ୧୪୫ ।
ସମସ୍ତ ମହାସତୀ କରନ୍ତି ଜଳରେ ସ୍ନାହାନ
ଅଗ୍ନି ସ୍ନାହାନ ଦ୍ରୋପଦୀ କରଇଂ ପ୍ରତିଦିନ । ୧୪୬ ।
ଯେତୁକଇ ରମଣୀ ଆରେକ ଉତ୍କୃଷ୍ଟ ହୋଯେ ବୋଲି
ତେଣୁ କରି ପିଣ୍ଡକୁ ସେ ଦହନ୍ତି ପାଞ୍ଚାଳୀ । ୧୪୭ ।
ଗୋବନ୍ଦେ ବୋଇଲେ ଦ୍ରୋପଦୀଂକର ଯେସନେକ ମହିମା
ତାହାର କୋପକୁ ଭୟ କରନ୍ତି ଦେବ ବ୍ରହ୍ମା । ୧୪୮ ।
ତାର କେଶ ଧରିବାକୁ ସାମର୍ଥ ହୋଇଲା ଧୃସା
ମୃତ କଉରବେଂକର ଯେତେକ ଭରସା । ୧୪୯ ।
ତେଣୁ ଭୁଜ ତାର ଉପାଡିଲା ଭୀମସେନ
ପଂକଜଲୋଚନୀ କଲା ରୁଧିରେ ସ୍ନାହାନ । ୧୫୦ ।
ଯେତିହା ଶୁଣି ଆଶ୍ଚର୍ଯ ହୋଇଲେ କୃଷ୍ଣଂକର ପିତାମାଯେ
ମୂର୍ଛପଣେ ନାଶଗଲେ ଧୃତରାଷ୍ଟ୍ର ଶତପୋଯେ । ୧୫୧ ।
ଧୃଶାସନ ପଡନ୍ତେ ହୋଇଲା ରଣଗୋଳ
ସେଦିନ ଶିରଚ୍ଛେଦ ହୋଇଲା ରାଧେବର ବାଳ । ୧୫୨ ।

---

୧୪୯ { ତାହାର କେଶ ଧରିବାକୁ ସାମରଥ ହେଲେ ଧୃସା
ବୃଦ୍ଧିଲକ କଉରବେ ବଳଂକର ଯେତେକ ଭରସା । (କ, ଘ, ଖ)

୧୫୦ { ତେଣୁ ସେ ଭୁଜକୁ ଉପାଡିଲ ପାବେନୀ
ରୁଧିରେ ସ୍ନାହାନ କଲା ଚୋପଦେଲ ଜଗ୍ନସେନୀ । (ଜ)

୧୫୨ { ଧୃଶାସନ ପଡନ୍ତେ ସମର କଲା ବୀର କର୍ଣ୍ଣ
ତାହାର ଶିର ଯେ ଛେଦିଲା ବୀର ଅରଜୁନ । (ଜ)

କର୍ଣ୍ଣ ଭୁଲେ ପଡ଼ିଲେ ତିନିକୋଟି ରଥୀ
ପାଞ୍ଚକୋଟି ଅଶ୍ୱ ଯେ ଚାରିକୋଟି ହାଥୀ । ୧୫୩ ।
ପାଞ୍ଚକୋଟି ପାଦାନ୍ତ ପଡ଼ିଲେ କର୍ଣ୍ଣ ଭୁଲେ
ଆରଦିନ ସେନାପତି ହୋଇଲେ ରାଜ୍ୟେ ଶଲ୍ୟେ । ୧୫୪ ।
ଯୁଧିଷ୍ଠିରଙ୍କ ସମରେ ଯେ ଶଲ୍ୟେ ନାଶଗଲେ
ତିନିଶତ ରାଜା ପାଞ୍ଚଶତ ହାଥୀ ଯେ ପଡ଼ିଲେ । ୧୫୫ ।
ବେନି ଲକ୍ଷ ଅଶ୍ୱ ଚାରିକ୍ଷଉଣୀ ଯେ ବଳ
ଯେତେକ ସଇନ୍ୟ ଘେନିଣ ଯେ ପଡ଼ିଲେକ ଶଲ୍ୟ । ୧୫୬ ।
କୁମ୍ଭ କୃଷ୍ଣ ଦ୍ୱିତୀୟା ଦିନର ବାରତା
ସେନାପତି ହୋଇଲେ ଯେ କୃପ ମହାରଥୀ । ୧୫୭ ।
ଅପାର ସମର ହେଲା ସେହି ଯେ ଦିନର
ଯେତେକୋଇଶ କ୍ଷଉଣୀ ବଳ ପଡ଼ିଲେ ପାଣ୍ଡବଙ୍କର । ୧୫୮ ।
ଅନେକ କଷ୍ଟୋରେ ସେ ଯେ ସମର କରନ୍ତେ
କୃପକଇଂ ସମରେ ଜିଣି ତ ନୁଆରିଲେ ବୀର ପାର୍ଥେ । ୧୫୯ ।
ମାଳବାଣ ଭୁଜବାଣ ବୋଲିଣ ଶର ବେନି
କୋପେଣ ପେଷିଲେ ତାହାନ୍ତ ବୀର ଫାଲ୍‌ଗୁନି । ୧୬୦ ।
ବ୍ରହ୍ମଶର ଅଛନ୍ତି ସେ ଅପାଳଟକ ବେନି
କୃପଙ୍କର ଶିର ଛେଦିଲେ ସେ ତତକ୍ଷଣି । ୧୬୧ ।
ଅର୍ଜୁନ ଆଗ୍ୟାଂରେ ସେ କଲେ ବେନିଖଣ୍ଡ
ବ୍ରହ୍ମହତ୍ୟା ନିମନ୍ତେ ମନ କଲେକ ଅଖଣ୍ଡ । ୧୬୨ ।
ମହାମନ୍ତ୍ର ପଢ଼ି ଦିଲେ ସେ ମୃତ୍ୟୁ ସଞ୍ଜୀବନୀ
କୃପଙ୍କୁ ଜିଆଂଇଲେ ମାଳବାଣ ଭୁଜବାଣ ବେନି । ୧୬୩ ।
ପଳାଇଲେ କୃପେ ଯେ ନ ରହିଲେ ସମରେ
ପଳାଇ ପଶିଲେ ଯାଇ ପର୍ବତର କନ୍ଦରେ । ୧୬୪ ।
ସେହିଦିନ ସମର ତାତ ହୋଇଲା ଶେଷ ଗଦା
ପଡ଼ିଲେ ଓହୋବଳ ହୋଇଲେକ ପଦା । ୧୬୫ ।

---

୧୬୪ { କୁମ୍ଭ କୃଷ୍ଣପକ୍ଷ ଦୁତୀୟାର ଦିନ
 { ସେ ଦିନ କୃପ ଆଚାର୍ଯ୍ୟେ ପଶିଲେ ଆସି ରଣ । (କ)
୧୬୫।୨ ପଡ଼ିଲେ ସର୍ବବଳ ହୋଇଲେକ ପଦା । (ଚ, ଠ)

କଉରବଙ୍କର ଥିଲେ ଯେ ନବଲକ୍ଷ ରଥୀ
ତିନକୋଟି ତୁରଙ୍ଗ ବେନକୋଟି ହାଥୀ । ୧୬୬ ।
ବତିଶ କ୍ଷଉଣୀ ପାଦାନ୍ତ ସହସ୍ରେକ ପାରଦଣ୍ଡ
ଶେଷ ଗଦା ସମରେ ଲୋଟିଲା ରାଜାମାନଂକର ପିଣ୍ଡ । ୧୬୭ ।
ସାତ କ୍ଷଉଣୀ ବଳ ପାଣ୍ଡବଂକର ଥିଲା
ପାଞ୍ଚ କ୍ଷଉଣୀ ନାଶଗଲା ବେନ କ୍ଷଉଣୀ ରହିଲା । ୧୬୮ ।
ସେଦିନ ସମର କରନ୍ତେ ହୋଇଲା ଅର୍ଦ୍ଧରାତ୍ରି
ରଣଜୟ କରି ବାହୁଡିଲେ ପାଣ୍ଡବ ପାଞ୍ଚମୂରତି । ୧୬୯ ।
ରୁଧିର ନଦୀ ଭିତରେ ଦୁର୍ଯୋଧନ ଥିଲା ବୁଡି
କ୍ଷତ ହୋଇଣ ପୁଣି ପଳାଇଲା ଗୁଡି । ୧୭୦ ।
ପଳାଇ ଯାଇଂ ବ୍ୟାସ ସରୋବରେ ପଶିଲା ଶରଣ
ସେ ମହାତ୍ମାଙ୍କ ତାକୁ କଲାକ ରକ୍ଷଣ । ୧୭୧ ।
ରଣଜୟ କରି ପାଣ୍ଡବେ ଗଲେ ଇନ୍ଦ୍ରପ୍ରସ୍ଥେ
ଅର୍ଘ୍ୟ ଘେନଣ ବାହାର ହୋଇଲେ ଦେବୀ କୋନ୍ତେ । ୧୭୨ ।
ସମରେ ମାଇଲା କେ ରେ ମାନଗୋବିନ୍ଦକୁ
ଜ୍ୟେଷ୍ଠ ହୋଉ କନିଷ୍ଠ ହୋଉ ଅର୍ଘ୍ୟ ଦେବି ତାକୁ । ୧୭୩ ।
ଦୁର୍ଯୋଧନକୁ ମାରିବାର ନ ଜାଣନ୍ତି କେହି
ତାହା ଶୁଣି ସର୍ବେ ପୁଣି ବାହମି ଧାଇଂଲେ ରଣଭୂଇଂ । ୧୭୪ ।
ମଡା ନେଉଟାଇ ସେ ଚାହିଁଲେ ସବୁନ୍ତି
ଲୋଡି ନ ପାଇଲେ କେହି ମାନଚକ୍ରବର୍ତ୍ତି । ୧୭୫ ।
ସହଦେବେ ବୋଇଲେ ବ୍ୟାସ ସରୋବରେ ଅଛି ପଶି
ଭୀମସେନ ମାଗୁଂ ସିଂଘନାଦ ଦିଲେ କାଶୀ । ୧୭୬ ।
ଭୀମସେନ ସିଂଘନାଦ ଦିଅଇ ଗଳଗାଜ
ରେ ରେ କାର ଶବଦେ ମାନଗୋବିନ୍ଦ ଲକ୍ଷ୍ମୀଂକ ବେଗି ତେଜ ।୧୭୭।
ଅନେକ ଯୁଦ୍ଧ ହୋଇଲା ସରୋବର ତୀରେ
ଦୁର୍ଯୋଧନ ଜାନୁଭଙ୍ଗ କଲାକ ବୃକୋଦରେ । ୧୭୮ ।
ମାନଗୋବିନ୍ଦ ରାଜା ପଡ଼ୁଂ ହୋଇଲା ଜାନୁଭଗ୍ନ
ପାଦରେ ମୁକୁଟ ମର୍ଦ୍ଦିଲା ବୀର ଭୀମସେନ । ୧୭୯ ।

ପାଣ୍ଡବେ ଚଳଲେ ହାଦେ ରଣଜୟ କରି
ପ୍ରବେଶ ହୋଇଲେ ଯାଇଂ ଜୟନ୍ତୀ ନାମେ ନଗରୀ । ୧୮୦ ।
ମୁହିଂ ବୋଇଲି ଶୁଣିମା ଯୁଝେଷ୍ଟି ଦେବସ୍ୱାମୀ
ପଞ୍ଚୁବିଛ ରହି ନ ଯୋଗାଇ ରଣଜୟେ ଭୂମି । ୧୮୧ ।
ପାଣ୍ଡେବ ପଞ୍ଚୁଭାଇ ଦ୍ରୋପଦୀ କୋଇନ୍ତୀ ସୁଭଦ୍ରା ଉତ୍ତରାକୁ
ନନ୍ଦଘୋଷେ ବସାଇ ଆଣିଲି ଦ୍ୱାରକାକୁ । ୧୮୨ ।
ବାହୁଡ ବୋଲି ପାଞ୍ଚାଳୀ କୁମାରନ୍ତ ଶୁଆଇ
ଧୃଷ୍ଟଦ୍ୟୁମନକୁ ପୁରରେ ସେ ପୁଅନ୍ତ ଅଇଲୁଂ ଜଗାଇ । ୧୮୩ ।
ତିନସହସ୍ର ରଥୀ ନବସହସ୍ର ହାଥୀ
ବତିଶସହସ୍ର ଅଶ୍ୱ ଦୁଇ କ୍ଷଉଣୀ ପାଦାନ୍ତି । ୧୮୪ ।
ଯେତେକେ ରଖାଇ ପାଞ୍ଚାଳ କୁମରଂକୁ
ସେ ରାବେ ସେନାପତି କଲି ମାନଗୋବନ୍ଦ ଅଶତ୍ଥମାକୁ । ୧୮୫ ।
ସେ ଅଶତ୍ଥମା ଅଇଲି ମହା ନିଶାକାଳେ
ଦୁଇ କ୍ଷଉଣୀ ସଇନ ସେ ମାଇଲିକ ହେଳେ । ୧୮୬ ।
ଗଜ ଅଶ୍ୱ ଯୋଦ୍ଧା ଯେ ସକଳ ପାରିଦଣ୍ଡ
କୃପାଣ ଧରି ଛେଦିଲା ସେ ସବୁଂକର ମୁଣ୍ଡ । ୧୮୭ ।
ଧୃଷ୍ଟଦ୍ୟୁମନେ ଦେଖି ତାହାର ପିତାର ବଇରି
ଭିତରି ଦ୍ୱାରେ ପଶିଣ ତାହାକୁହିଂ ମାରି । ୧୮୮ ।
ପାଞ୍ଚାଳୀ କୁମରେ ଶୋଇଥିଲେ ପଲଂକରି
ପାଣ୍ଡବେ ବୋଲି ଛେଦିଲା ତାହାଂକର ଶିର । ୧୮୯ ।
ପାଞ୍ଚଂକର ମୁଣ୍ଡ ଘେନ ଗଲା ଭରକରି ନିଶାରାତି
ଦ୍ୱ୍ରଯୋଧନ ଗ୍ରୁମୁରେ ଯାଇଂ ମିଳିଲା ପାହାନ୍ତି । ୧୯୦ ।
ଦେଖିଣ ଅନେକ ହରଷ ହୋଇଲା କୁରୁନାହା
ସାଧୁ ସାଧୁ ଅଶତ୍ଥମା ତୋହୋର ବେନବାହା । ୧୯୧ ।
ଅନେକ ପ୍ରଶଂସା କରୁ ପାହିଲା ରଜନୀ
ପାଞ୍ଚାଳୀ କୁମାର ବୋଲି ରାଜା ଦ୍ୱ୍ରଯୋଧନ ଚହ୍ନି । ୧୯୨ ।

---

୧୮୭।୨ ବିଶାପନେ ଛେଦିଲା ସେ ସବୁଂକର ମୁଣ୍ଡ । (ଘ, ଜ)

ହରଷ ଚିତ୍ତ ରାଜା ହରସ ହୋଇଲା
ଅନେକ ଧିକାର କରି ଅଶ୍ୱତ୍ଥାମାଂକୁ ବୋଇଲା ।୧୯୩।
ପାଞ୍ଚାଳୀ କୁମାରନ୍ତ ଶୀର୍ଷେ ହୃଦରେ ଲଗାଇଲା
ପାଞ୍ଚମୁଣ୍ଡ ଧରି କୋଳେ ପ୍ରାଣ ବିସର୍ଜିଲା ।୧୯୪।
ଶୁଣ ଦେବ ପିତାମହ ପରିଚରିଲ ଯାହା
ସାବଧାନ ହୋଇ ତକ୍ଷେକର ମୁଂ କହିଲଇଂ ତାହା ।୧୯୫।
କର୍କଶ ମଧୁପିଙ୍ଗଳ ମାନଚକ୍ରବର୍ତ୍ତୀ
ଅଷ୍ଟାଦନେ ପ୍ରଦାନ ସେ ହୋଏ ଭାନୁମତି ।୧୯୬।
ଅନୁବ୍ରତେ ବରବେଶ ହୋଇଥାଇ କୁରୁବୀର
ଦେବାସୁର ବ୍ରହ୍ମାଂକୁ ନୁହଇ ନମସ୍କାର ।୧୯୭।
କୁରୁପାଣ୍ଡବଂକର ତାତ ଯେତେକ ମହିମା ଯେତେବେଳ ବଂଶ
ଯେକା ଦୁର୍ଯୋଧନ ଜଣକେ ଓହୋକୁଳ ଗଲା ନାଶ ।୧୯୮।
ଉତ୍ତରେ ଯେକଉଣା ଚାଳିଶ ସହସ୍ର ନୃପତି
ପଶ୍ଚିମେ ଦୁଇଉଣା ପାଞ୍ଚସହସ୍ର ନୃପତି ।୧୯୯।
ଯେକଉଣା ସାତସହସ୍ର ରାଜା ଦକ୍ଷିଣେ
ଯେକଉଣା ଛନଶହସ୍ର ରାଜା ପୂର୍ବହିଗ ଈଶାନ୍ୟ କୋଣେ ।୨୦୦।
ବ୍ରହ୍ମ କ୍ଷତ୍ରିୟ ବଇଶ୍ୟ ଶୂଦ୍ର ଦଇତ ପିଶାଚ ରାକ୍ଷସ
କନ୍ଧ ମହ୍ଲାର ଚଣ୍ଡାଳ ଆଦି ଯେତେ ବଂଶ ।୨୦୧।
ଯେ ବିଧିରେ ଅଷ୍ଟାଦଶ ବଂଶେ ନିମନ୍ତ୍ରଣ ପାଇ ଅଇଲେ
ଚାରିଉଣା ଲକ୍ଷେ ରାଜା
ଯେ ଯାହାର ଅନରୂପେ ଆସିଣ କଲେ ପାଦପୂଜା ।୨୦୨।
ଚାରିଦିଗରେ ସତାଶୋଇସହସ୍ର ନୃପତି
ଯେତେକ ରାଜା ହୋଇଲେ ମାନଗୋବିନ୍ଦର କତି ।୨୦୩।

---

୧୯୭।୨ ମାତା ପିତା ଦେବତା ବ୍ରାହ୍ମଣଙ୍କୁ ସେ ନ କରେ ନମସ୍କାର । (କ)
୧୯୮।୧ ଯେ ତାତ କୁରୁପାଣ୍ଡବ ଯେ ଜଗତ ତାରଣ ବଂଶ । (କ)
୧୯୫।୧ ପିତାମହ—ପିତା, ମହ ଶବ୍ଦ ପୂଜା ଅର୍ଥରେ, ପୂଜ୍ୟପିତା ।

ରଣର ଦିଗରୁ ରଣଜଣା ତିନି ସହସ୍ର ରାଜା
ସର୍ବେ ଯେତେକ କଲେ ପାଣ୍ଡବଙ୍କୁ ପୂଜା । ୨୦୪ ।
ଏ ତାତ ପାଞ୍ଚପଦ୍ମ ରଥୀ ବାସ୍ତୋରପଦ୍ମ ହାଥୀ
ଏକାଶତେ ସାଗର ଅଶ୍ୱ ଅଶିସହସ୍ର
ମୁକୁଟବନ୍ଧା ଯୋଦ୍ଧା ମାନଗୋବିନ୍ଦର କତି । ୨୦୫ ।
ଏ ତାତ ପାଣ୍ଡବଂକର ତିନି ମର୍ବୁଦ ରଥୀ ବତିଶ ମର୍ବୁଦ ହାଥୀ
ପାଞ୍ଚବୃନ୍ଦ ଅଶ୍ୱ ବାସ୍ତର କ୍ଷୋହଣୀ ପାଦାନ୍ତ । ୨୦୬ ।
ପାଣ୍ଡବଂକ ଥାଟେ ଥିଲେ ଯେତେକ ଯେ ବଳ
ଦୁଇ ବାସ୍ତୋର କ୍ଷୋହଣୀ ବଳ ଥିଲେ ମାନଗୋବିନ୍ଦ ମହୀପାଳ ।୨୦୭।
ପୂର୍ବେ ପାଣ୍ଡବେ ଯେ ପଶ୍ଚିମେ କୌରବେ
ପ୍ରଥମେ ସେନାପତି ଯେ ହୋଇଲେ ଗାଙ୍ଗେବେ । ୨୦୮ ।
ଦଶଦିନ ସମରେ ଶରଶେଯ୍ୟା କଲେକ ଗାଙ୍ଗେବେ
ଦ୍ରୋଣ ଶିରଚ୍ଛେଦ ହେଲେ ପାଞ୍ଚଦିନ ମଧ୍ୟେ । ୨୦୯ ।
କର୍ଣ୍ଣ କୃପ ଶଲ୍ୟ ହୋଇଲେ ତିନଦିନ
ଅଷ୍ଟାଦଶ ଦିବସେଣ ହତ ହୋଇଲେ ସର୍ବ ସଇନ । ୨୧୦ ।
ଯେତେକ ସଇନ ତାତ ଓହୋବଳର ମଲେ
ଆଜ ଦିନ ସରିକ ତାତ ତେରଜଣ ଯେ ରହିଲେ । ୨୧୧ ।
ବସୁଦେବ ବୋଇଲେ ବାବୁ ଶୁଣ ନାରାୟଣ
ଯେତେବେଳେ ସମରେ ରହିଲେ କେ କେ ତେରଜଣ । ୨୧୨ ।
ଗୋବିନ୍ଦେ ବୋଇଲେ ତାତ ଶୁଣିମା ସାବଧାନ
ପ୍ରଥମେ ବର୍ତ୍ତିଲେ ଯେ ପାଣ୍ଡବ ପାଞ୍ଚଜଣ । ୨୧୩ ।

---

୨୦୫ { ଏ ତାତ ପାଣ୍ଡବଂକର ତିନି ମର୍ବୁଦ ରଥୀ ବତିଶ ମର୍ବୁଦ ହାଥୀ
{ ପଞ୍ଚାଶ ମର୍ବୁଦ ଅଶ୍ୱଯୋଦ୍ଧା ତିନି କ୍ଷୋହଣୀ ପଦାନ୍ତ । (ଝ, ଟ)

୨୦୯ { ଦଶଦିନ ଅନ୍ତେ ଭୀଷ୍ମେ କଲେ ଶରଶଯ୍ୟା
{ ପାଞ୍ଚଦିନେ ଦ୍ରୋଣଙ୍କର ଶିରଚ୍ଛେଦନ କଲେ ଦ୍ରୋପଦ ତନୁଜା । (ଜ)

୨୧୦ { କର୍ଣ୍ଣ ଶଲ୍ୟ ସମର କଲେ ତିନି ଯେ ଦିବସ
{ ଅଠର ଦିନରେ ଏ ତାତ ସମସ୍ତେ ଗଲେ ନାଶ । (ଜ)

ଅଶତ୍ଥମା କୃପ ଆଚାର୍ଯ୍ୟ ବିଦୁର ଧୃଷ୍ଟଦ୍ୟୁମ୍ନ
ସଞ୍ଜୟେ ମୁହିଂ ସାତ୍ୟକି ଦୃଦକ୍ଷ ଦ୍ୟୁର୍ଯୋଧନର କନିଷ୍ଟ । ୨୧୪ ।
ଯୁଦ୍ଧେଷ୍ଟି ତହିଂ ଦୃଦକ୍ଷ ପଶିଲ ଶରଣ
ବିଦୁର ବ୍ରତଲା ଯେ ନ ପଶିଲ ରଣ । ୨୧୫ ।
ମୋତେ ଲେଖ ଚାର ତେରଜଣର ମଧ୍ୟେ
ଆଉମାନେ ସବୁ ଯେ ପଡ଼ିଲେ ଘୋରଯୁଦ୍ଧେ । ୨୧୬ ।
ଶୁଣି ଉଗ୍ରସେନ ବହୁତ କଲା ସ୍ତୁତି
ତୁ ଦେବ ପ୍ରଳୟାନ୍ତେ ସବୁନ୍ତ କଲୁ ଉତପତ୍ତି । ୨୧୭ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ବୃକ୍ଷଖାନ
ଚଉରାଶୀଲକ୍ଷ ଜୀବ ଯେ ଯେତେ ତୋହୋର ସୃଷ୍ଟି । ୨୧୮ ।
ପର୍ବତମାନନ୍ତ ଯେ ଆଠଲକ୍ଷ ଗଣି
ଛପନକୋଟି ଜୀବଜନ୍ତୁ ଯେତେକେଣ ଗଣି । ୨୧୯ ।
ସ୍ୱାମୀ ଦେବଲୋକେ ନବଲକ୍ଷ ତାରକ ବଧି
ଅଦାଯେତେ ଚତୁର୍ଦ୍ଦଶ ଲୋକ ଜୀବ ସମ୍ବାଦ । ୨୨୦ ।
ବଶାଶତେଲକ୍ଷ ଯେ ଜଙ୍ଗମ ବଖାଣି
ଯେତେକୋଇଶଲକ୍ଷ ସ୍ୱେଦଜ ଯେ ପୁଣି । ୨୨୧ ।
ପାତାଳରେ ନବଲକ୍ଷ ଅଛନ୍ତି ନାଗଲୋକ
ଚତୁଲକ୍ଷ ଜୀବ ଯେ ଅଛନ୍ତି ଯମଲୋକ । ୨୨୨ ।
ଯେତେକୋଇଶଲକ୍ଷ ଯେ ଅଣ୍ଡଜ ଗଣିବଇଂ
ଯେତେ ବଧିରେ ବେନଲକ୍ଷ ଜୀବ ଯେ ପୁଟଇ । ୨୨୩ ।
କ୍ଷୀରପାନେ ଅଷ୍ଟଲକ୍ଷ ଜୀବ ଯେ ଖଟଇ
ତରଣ ଚର ବଞ୍ଚଇ ପାଞ୍ଚଲକ୍ଷ ଜୀବଇ । ୨୨୪ ।
ଯେତେକଲକ୍ଷ ଜୀବ ଜାରଜଖାନ ଅଟଇ
ଆଠଲକ୍ଷ ଜୀବ ଯେ ଜଳରେ ବ୍ରତଇ । ୨୨୫ ।
ନବଲକ୍ଷ ବୃକ୍ଷର ଯେ ନାହିଂ ଗନ୍ଧ ବାସଇଂ
ଚାରଲକ୍ଷ ବୃକ୍ଷର ଯେ ଗନ୍ଧ ଆମୋଦଇ । ୨୨୬ ।

---

୨୧୮ { ସ୍ୱାମୀ ଯେତେପର ବୃକ୍ଷଖାନରେ ଚଉରାଅଶି ଜୀବ
ସମସ୍ତଂକ ଗତଦାତା ଅଟ ତୁ ମାଧବ । (ଖ, ଥ)

ମୂଳେ ଥୋକାଏ଼ ଫଳନ୍ତ ଆଠଲକ୍ଷ ବୃକ୍ଷ
ଡାଳେ ଫଳ ଫଳନ୍ତ ଯେ ଏକୋଇଶ ଲକ୍ଷ । ୨୨୭ ।
ସ୍ୱାମୀ ଗୃହଖାନ ଏ଼ ଏ଼କୋଇଶ ଜୀବଜନ୍ତୁ
ସ୍ୱେଦଜ ଅଣ୍ଡଜ ଉଦ୍ଭିଜ ଜାରଜ ଜାତକଲୁ ତତ୍ତ୍ୱ । ୨୨୮ ।
ସ୍ୱାମୀ ପୃଥୀ ଆପ ତେଜ ଯେ ବାୟୁବ ଆକାଶ
ଏ଼ ପଞ୍ଚଭୂତ ଯେ ତୋର ଶରୀରୁଂ ପରକାଶ । ୨୨୯ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦି କରି
ଭୂତ୍ୱ ସିନା ସର୍ଜନା ନାଥ କଲୁ ଦେବହରି । ୨୩୦ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସୁତଳ ରସାତଳ
ଅତଳ ବିତଳ ତଳାତଳ ମହାତଳ । ୨୩୧ ।
କ୍ଷୀର ବଇକୁଣ୍ଠ ନୀଳ ବଇକୁଣ୍ଠ ଅନନ୍ତ ବଇକୁଣ୍ଠ
ଭୃଗୁ ବଇକୁଣ୍ଠ ସତ୍ୟ ବଇକୁଣ୍ଠ ଶୂନ୍ୟ ଯେ ବଇକୁଣ୍ଠ । ୨୩୨ ।
ଜଳଧର ବଇକୁଣ୍ଠ ଶୁଦ୍ଧ ବଇକୁଣ୍ଠ ମାଧୂର୍ଯ୍ୟ ବଇକୁଣ୍ଠ
ସାଧୂ ବଇକୁଣ୍ଠ ଭୂଜ ବଇକୁଣ୍ଠ ସୁମଧ୍ୟ ବଇକୁଣ୍ଠ । ୨୩୩ ।
ଧ୍ରୁବ ବଇକୁଣ୍ଠ ମେରୁ ବଇକୁଣ୍ଠ ଊର୍ଦ୍ଧ୍ୱ ବଇକୁଣ୍ଠ
ଅଧ ବଇକୁଣ୍ଠ ଇନ୍ଦ୍ର ବଇକୁଣ୍ଠ ବଳୟା ବଇକୁଣ୍ଠ । ୨୩୪ ।
ମାଧବ ବଇକୁଣ୍ଠ ଶମନ ବଇକୁଣ୍ଠ ଘୋର ବଇକୁଣ୍ଠ
ସର୍ଜୂ ବଇକୁଣ୍ଠ ଶୋଷେକ ବଇକୁଣ୍ଠ ଯେ ଜଇମିନୀ ବଇକୁଣ୍ଠ । ୨୩୫ ।
କମଳା ବଇକୁଣ୍ଠ ଆବର ଗୋପାଳ ବଇକୁଣ୍ଠ
ଏ଼ ବିଧିରେ ହୋଇଲ ଯେ ସତାଇଶ ବଇକୁଣ୍ଠ । ୨୩୬ ।
ସତାଇଶ ବଇକୁଣ୍ଠ ତୋ ଦେହୁଂ ଉତପତ୍ତି
ତୋ ଲୋମମୂଳରେ କେତେ ବ୍ରହ୍ମାଣ୍ଡର ସ୍ଥିତି । ୨୩୭ ।
ମତ୍ସ୍ୟ କଚ୍ଛପ କୋଳ ନୃସିଂହ ବାମନ ପ୍ରଶୁରାମ
ଶ୍ରୀରାମ ବଳରାମ ବଉଧ କଳା ଅନ୍ତେ କଳଙ୍କୀ ପରଂବ୍ରହ୍ମ । ୨୩୮ ।

---

୨୨୯। ଏହି ପଞ୍ଚଧାତୁ ଯେ ଦେବ ତୋହୋର ଉଦ୍ଦେଶ୍ୟ । (ଘ, ଚ, ଜ, ଥ)
୨୩୭ { ବେଳେ ବେଳେ ଅବତାର ରୋମାଞ୍ଚଇ ଯେ ମୂରତି
{ ସତାଇଶ ବଇକୁଣ୍ଠ ତୋ ତହୁଂ ଉତପତ୍ତି । (ଘ, ଝ, ଥ, କ, ଜ)
୨୨୮। ଜାରଜ—ଜରାୟୁଜ ।

କାଳରୁଦ୍ର ରୂପେ ଦହନ ସଂସାର
ଜାତ ଅନ୍ତ ମଧ୍ୟେ ଅଟୁ କାଳକାମ ସାର । ୨୩୯ ।
ପୁରୁଷଂକ ଉତ୍ତମ ଯେବଣ ସ୍ୱାମୀ ନାମ
କେ ଛୋଟେ ସଞ୍ଚପି କରତ ଅଟଇ କ୍ଷମ । ୨୪୦ ।
ଭୃକ୍ତସାର ବଲ୍ଲଭ ତଲଯ୍ୟେ ମମ ହୃଦେ
ବଦନ୍ତ ଶୂଦ୍ରମୁନ ସାରଳ ଦାସ ପରମ ଆନନ୍ଦେ । ୨୪୧—୭୮୬ ।

---

## ପାଣ୍ଡବ ବଧାର୍ଥ ଅଶ୍ୱତ୍‌ଥମାର କାଇଁଶିକା ଶର ପ୍ରୟୋଗ

ବଇବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଂକ
କୃଷ୍ଣ ଭଣ୍ଡି ଅଇଲେ କୃପ ଅଶତ୍ତମା ଦୁହିଂକ । ୧ ।
ଯେହାନ୍ତ ଲେଉଟଲେ ଟିକ ରଜନୀ ପ୍ରଭାତେ
ଯେହା ସଞ୍ଚପିଣ କହିବା ମୁନ ମୋତେ । ୨ ।
ବସନ କୁଣ୍ଡଳ ରତ୍ନମାଳ ପାଦ୍ୟ ଅର୍ଘ୍ୟ ଆସନେ
ଗନ୍ଧ ପୁଷ୍ୟ ତାମ୍ବୋଳ ଚନ୍ଦ୍ରସମ ଲେପନେ । ୩ ।
ସାଷ୍ଟାଙ୍ଗେ ପ୍ରଣପତ୍ୟ ଚରଣ ତଳେ ସହସ୍ରେ ଦଣ୍ଡ
କହିବା ମୁନ ମୋତେ ଅଇଷିକ ପର୍ବଖଣ୍ଡ । ୪ ।
ଶୁଣ ବଇବସ୍ୱତ ମନୁ ବଦନ୍ତ ବ୍ରହ୍ମବେତ୍ତା
କୋଟିଯେ କୋଟିଯେ କଳ୍ପ ଯେବଣ ମୁନ ଗ୍ୟାଂତା । ୫ ।
ବାଳୁତକାଳେ ମୁନ ଖେଳଇ କୁତୂହଳେ
ଯେକା ଚକ୍ରକେ କ୍ଷୀରେଦ୍ର ଗଣ୍ଡୂଷ କଲେ ବଳେ । ୬ ।
ସେ ମହାପ୍ରଳୟ କାଳେ ବିଷ୍ଣୁର ଗର୍ଭରେ ପଶଇ
ଜାତ ଅନ୍ତ ମଧ୍ୟେ ସେ ସମସ୍ତ ଭୂତ ଭବିଷ୍ୟ ଗ୍ୟାଂତା ଅବ୍ୟକତଇ ।୭।
ସେ ମୁନିର ମହିମା ନ ସରଇ କହନ୍ତେ
ନମଇ ମାହେଶ୍ୱରୀ ସଦୟ କର ମୋତେ । ୮ ।

---

୪।୨ ଅଇଷକ—ଐଷିକ, ଇଷିକା ତୃଣ ନିର୍ମିତ ବାଣବିଶେଷ ।

ପ୍ରତକ୍ଷେ ହୁଙ୍କୁଳା ଜଙ୍ଗେରପୁରବାସୀ
କଳକାଳ ଧଂସିମା ମାଗୋ ଭଗତ ଜନ ତୋଷି । ୯ ।
ନ ପଢ଼ି ପଣ୍ଡିତ ମୁଂ ସିଦ୍ଧ ସାରୋଳା ପ୍ରସନ୍ନେ
ଜନ୍ମରୁ ମୂରୁଖ ମୁଂ ଖଣ୍ଡିଲ ତବ ଦରଶନେ । ୧୦ ।
ତେଣୁ କରି ଲେଖନ୍ତେ ମୋତେ ହୋଇଲେକ ଦୃଶ
ତାହାଂକ ପ୍ରସାଦେ ମୁଂ କହଇ ଦବ୍ୟରସ । ୧୧ ।
ସେ ମୁନିର ଆଗ୍ୟାଂଯେ ମୁଂ ଚଳଯେ କରି ଘେନି
ତୁଳସୀବଲ୍ଲଭ ଚରଣେ ଆଶ ସାରୋଳ ଦାସ ଶୂଦ୍ରମୁନି । ୧୨ ।
ବଇବସୁତ ମନୁ ହୋଇଅଛନ୍ତି ଶ୍ରୋତା
ମହାପଣ୍ଡିତ ବ୍ରହ୍ମବେତ୍ତା ଅଗସ୍ତି ସ୍ୱୟେଂ ବକତା । ୧୩ ।
ଯେ ଶ୍ରୀ ମହାଭାରଥ କରି ରାଜା ହେତୁ
ବନ୍ଧନ ଫିଟଇ ମୃତ୍ୟୁ ଫିଟଇ ଶୁଣିଲେ ପୁରାଣ ତତ୍ୱ । ୧୪ ।
ଯେବଣ ଶାହାସ୍ତ୍ର ଶୁଣନ୍ତେ ରୋଗ ନ ପୀଡ଼ଇ
ଜରା ମୃତ୍ୟୁ ଖଣ୍ଡଇ ଆବର ପୁତ୍ରଶୋକ ନ ଲାଗଇ । ୧୫ ।
ଧର୍ମ ଅର୍ଥ କାମ ମୋକ୍ଷ ମିଳେ ଚଉବର୍ଗ
ଯମଦଣ୍ଡ ବଞ୍ଚାଇ ସେ ବସଇ ଅକ୍ଷୟ ସ୍ୱର୍ଗ । ୧୬ ।
ଆୟୁଷ ଧନ ସମ୍ପଦ ମୋକ୍ଷ କାରଣ ଯେ ଅଛି
ବିଷ୍ଣୁଲୋକେ ବସିବ ହୃଦଗତେ ଯାହା ବାଞ୍ଛି । ୧୭ ।
ଆହୋ ଚଇତନ୍ୟ କୃପ ଅଶତ୍ଥମା ଭୟେଣ ଅନନ୍ତ
ଦ୍ୱାରକା ପୁରୁଂ ବାହାର କରି ନୁଆରନ୍ତି ପାଣ୍ଡବନ୍ତ । ୧୮ ।
ତେଣୁ ସେ କପଟ କଲେ ଯେ ଦେବ ଦଇତାରି
ତାହାଂକର ଧନୁ ଶହସ୍ତ୍ର ଆଣିଲେ ଚୋରି କରି । ୧୯ ।
ରଜନୀ ପ୍ରଭାତେ କୃପାଚାର୍ଯ୍ୟ ଅଶତ୍ଥମା
ପଙ୍କତେ ଉଠି ଡାକଦ୍ୟନ୍ତି କେଣେ ଗଲ ହୋ ମହାତମା । ୨୦ ।
ରଜନୀ ପ୍ରଭାତରେ ଲୋଡ଼ନ୍ତି ଚଉକତ
ନ ପୁଣ ବତ୍ସକୁ ବ୍ୟାଘ୍ର ଭାଲୁଂକ ନାଶ କରିଥାନ୍ତି । ୨୧ ।

---

୧୦।୨ ଜନ୍ମେ ଜନ୍ମେ ମୂର୍ଖ ମୁହିଂ ମୋତେ ଦଲେ ଲେଖନ । (ଢ଼, ଝ)

ପ୍ରେତ ଭୂତ ଦଇତ ଯେ ଦାନବ ରାକ୍ଷସ
ନ ପୁଣ ବ୍ରାହ୍ମଣ ଗୋଟିକ ପାଇ ହାଦେ କଲେ ନାଶ । ୨୨ ।

ଅପାର ଗହନେ ସହୁଂ ନ ପାଇଲେ ଲେଡି
କପାଳଲୋଚନ ତୀର୍ଥେ ଆସିଲେ ବାହୁଡି । ୨୩ ।

ଓଡପାର ଭୁଠେ ଲେଡନ୍ତ ଉପନେସି
ଅପାର ପାଦ ସଞ୍ଚା ଅଛୁ କେ ଅବା ଥିଲା ଯେଉଁଥେ ପଶି । ୨୪ ।

ପୁଣ ଦେଖିଲେ ବାହୁଡ ପାଦ ଅଛୁ ପଡି
ବଦ୍ଧଂସିତ ପଦ୍ମଚହ୍ନ ଅଛୁ ତହିଂ ଜଡି । ୨୫ ।

କେବଣ ରାଜା ଯେଉଁଥି ଭିତରେ ଥିଲା ପଶି
ଆମ୍ଭ ଶସ୍ତ୍ରମାନନ୍ତ କେ ଘେନଗଲା ଆସି । ୨୬ ।

ଧ୍ୟାନ କରି ତାହା ଜାଣିଲେ କୃପ ଯେ ଆଚାର୍ଯ୍ୟ
କପଟେ ଧନୁଶସ୍ତ୍ର ହରିଲେ ଦେବରାଜ । ୨୭ ।

ସମାଧ ଜାଣିଲେ ଅଶ୍ୱତ୍ଥମା ବଡ ଦୋଷୀ
ଅଗ୍ୟାନ ବାଳପୁଅନ୍ତ ଅନମିତେ ନାଶି । ୨୮ ।

କୃପାଚାର୍ଯ୍ୟ ବୋଇଲେ ଶୁଣ ହୋ ଅଶ୍ୱତ୍ଥମା
ପାଞ୍ଚାଳୀ କୁମର ନାଶକଲୁ ହୋ ମହାତମା । ୨୯ ।

ତେଣୁ କରି ଶ୍ରୀକୃଷ୍ଣଂକୁ ଲାଗିଲା ବଡ ଭୟେ
ଜଗବନ୍ଦନ ନାଥ ରଞ୍ଜିଲେ ଉପାୟେ । ୩୦ ।

ଆମ୍ଭର ଭୁଲେ ଥିଲେ ସେ ବିପ୍ର ରୂପ ଧରି
କପାଳେଶ୍ୱର ତୀର୍ଥରୁ ନେଲେ ଶସ୍ତ୍ର ଚୋରି କରି । ୩୧ ।

ଧ୍ୟାନେ ଜାଣିଣ ସହୁଂ କହିଲେ କୃପବ୍ରହ୍ମା
ରାଗେଣ ଅଧର କାମୋଡିଲା ଅଶ୍ୱତ୍ଥମା । ୩୨ ।

ଯେଉଁହେନେକ କୃତ୍ୟ ଯେବେ କଲାକ ଦେବରାଜ
କେବଣ ମତେ ପାଣ୍ଡବନ୍ତ ସେ ରକ୍ଷା କରିବଇ ଆଜ । ୩୩ ।

ମାରିବ ପାଣ୍ଡବନ୍ତ ଶ୍ରୀକୃଷ୍ଣ ସହିତେ
ଦ୍ୱାରକା ପୁର ଆଜ କରିବ ଭଗନସ୍ତେ । ୩୪ ।

କୃପ ଆଗୃହେଁ ବୋଇଲେ ଶୁଣ ଅଶତ୍ଥମା
ଶ୍ରୀକୃଷ୍ଣର ଭୁଲେ ତୋର କସ ଯେତେକ ଗାରିମା । ୩୫ ।

ଅଶତ୍ଥମା ବୋଇଲେ ଶୁଣ ମାମୁଂ କୃପ
ଶ୍ରୀକୃଷ୍ଣେ ଆଶ୍ରେ କରି ପାଣ୍ଡବଂକର ଯେତେ ଦର୍ପ । ୩୬ ।

ଅନେକ ପ୍ରତଗ୍ୟାଂ ଯେ କରଇ ମହାଛତ୍ରୀ
କୃପେ ବୋଇଲେ କସ ଘେନ କୃଷ୍ଣର ଭୁଲେ ଯେତେକ ଅପ୍ରୀତି । ୩୭

ହାଥେ ନାହିଂ ତୋର ସହସ୍ର ଆୟୁଧ
କସ ଘେନ କୃଷ୍ଣ ପାଣ୍ଡବ ଭୁଲେ କରିବୁ ତୁ ଯୁଦ୍ଧ । ୩୮ ।

କୃପଂକର ବଚନେ ଭାରଦ୍ୱାଦଶଂକ ନାତି
କାଇଂଶ ବୃକ୍ଷ ଗୋଟିଏ ଓପାଡ଼ିଲେ ତତକ୍ଷଣାନ୍ତି । ୩୯ ।

ପବନ ଆଗତ ପ୍ରାୟେ କମ୍ପଇ ତାର କାୟେ
ଆତେହାଷି ଉପାଡନ୍ତି କାଇଂଶ ଗୋଛାୟେ । ୪୦ ।

ନହେ ଚରିଣ ତାହା ବେନଫାଳ କରି
ବଡଫାଳ ଗୋଟିୟେ ଧନୁ କରି ଧରି । ୪୧ ।

ସାନଫାଳ କରୁ ଅନ୍ତ ଯେ ଛୁଣ୍ଡାଇ
ଯତନ କରି ମୋଡ଼ି ଗୁଣ କରି ଚଢ଼ାଇ । ୪୨ ।

ନାରିଜ କଲ ତହିଂ କାଇଂଶ ଅଗ୍ରଗୋଟି
ସେ ଧନୁଟରେ ବସାନ୍ତେ ତେଜ ଅଗ୍ନି ପ୍ରାୟେ ଘୋଟି । ୪୩ ।

---

୪୩।୨ "ସେ ଧନୁରେ ବସାନ୍ତେ ତେଜ ଅଗ୍ନି ପ୍ରାୟେ ଘୋଟି" ଯେଉଁ ପାଦାନ୍ତ ପରେ "ଙ, ଥ," ପୋଥିରେ ଅଧିକ ପାଠ:—
ବ୍ରହ୍ମମନ୍ତ୍ର ତେଜ ବଳେ ଅଶତ୍ଥମା ଧରଇ
ଶହସ୍ର ତେଜରେ କେହ୍ନ ରହି ନୁଆରଇ ।
ଆକାଶ ତେଜଣ ପଳାଇଲେ ଦେବଗଣ
ଉନପୁରେ ଡାକନ୍ତି କୃଷ୍ଣରେ ଶରଣ ।
ମହା ବ୍ରହ୍ମମନ୍ତ୍ରେ ପୂରେଇଲା ମହାବଳୀ
ପୂରିବନ୍ତେ ତେଜ ଘୋଟିଲା ଅଂଶୁମାଳୀ ।

ମହା ବ୍ରହ୍ମମନ୍ତ୍ର ପଢ଼ିଣ ମହାବଳୀ
ଓଟାରନ୍ତେ ଧନୁ ତେଜ ଘୋଟିଲା ଅଂଶୁମାଳୀ । ୪୪ ।
ଅଶ୍ୱତ୍ଥାମା ବୋଇଲା ହେ ଯିବୁ ତୁ ବ୍ରହ୍ମଶର
ଯେତ୍ୱେକ୍ଷଣି ଶିରଚ୍ଛେଦନ କର ପାଣ୍ଡବ ପାଞ୍ଚଙ୍କର । ୪୫ ।
ତାହାନ୍ତ ଯେବେ ଆବୋରଇ ଚକ୍ରଧାରୀ
ତାହାଙ୍କୁ ସହିତେ ପକାଇବୁ ମାରି । ୪୬ ।
ପୁଣି ବୋଇଲା ଯାଦବ ହରିର ସାତବଂଶ
ସବୁନ୍ତ ଛେଦପକା ନ ଥାଉ ତାଂକ ଲେଶ । ୪୭ ।
ଅନେକ ତଆରି ସେ ପେଷିଲେ ମହାମନ୍ତ୍ର ବଳେ
ଚଳିଲା ନାରାଜ ଯେ ଗଗନ ମଣ୍ଡଳେ । ୪୮ ।
ଯେତୁକା ନିମିଷକେ ଦ୍ୱାରକା ପୁର ଭେଟି
ଗମଇ ଅନ୍ତରୀକ୍ଷେ ଆକାଶ ମଣ୍ଡଳେ ଘୋଟି । ୪୯ ।
ଆହୋ ଚଇତନ ଯେସନେ ଉଲ୍କାପାତ ଦିଶଇ ଆକାଶୁଂ
ନବଦ୍ୱୀପ ସପତସାଗର ଖଳବଳ ହୋଉଅଛୁ
କାଇଂଶିକା ଶର ଆସୁଂ । ୫୦ ।
ଶୂନ୍ୟଭେଦ ଯେହ୍ନେ ଆସଇ ପୁଣ ପୁଣ
ତିନିଭୁବନ ଘୋଟି ଆସୁଅଛୁ ଅଶ୍ୱତ୍ଥମାର ବାଣ । ୫୧ ।
ପବନ ଫାନ୍ଦିଲା ଆଦିତ୍ୟ ତେଜ ଜ୍ୟୋତି
ଦ୍ୱାରିକା ଲୋକମାନେ ଖଳବଳ ତ ହୋଉଛନ୍ତି । ୫୨ ।
ହେ କୃଷ୍ଣ ରଖ ବୋଲି ଅଦଭୁତେ ଶୂନ୍ୟେ ଶୁଭଇ ବାଣୀ
ଆଉଟି ହୋଉଅଛୁ ସପତସିନ୍ଧୁ ପାଣି । ୫୩ ।

---

୪୪।୧ "ମହା ବ୍ରହ୍ମମନ୍ତ୍ର ପଢ଼ିଣ ମହାବଳୀ" ପରେ ଝ, ଜ ରେ ଅଧିକା ପାଠ :—
ମହାମନ୍ତ୍ର ପଢ଼ିଣ ଧନୁ ପୂରେଇ ମହାବଳୀ
ନାରଜେ ଅଦୃଶ୍ୟ ହେଲେ ଅଂଶୁମାଳୀ ।
ମନ୍ତ୍ର :— ଓଁ ବ୍ରହ୍ମା ବୋଇଲେ ଅଜଟ ମନ୍ତ୍ର ଫୁଂକ
ବାସୁଦେବ କଟାର ନ କାଟିବ ଶର
ମହାବ୍ରହ୍ମ ଲଗାଇଂ ପୃଥ୍ୱୀ ନାଶକର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ତେତିଶ କୋଟି ଦେବ ମାର
ସେ ଶରକୁ ନାହିଂ ପ୍ରତିକଛ ଶର ।

ଶ୍ରୀକୃଷ୍ଣ ପଚାରିଲେ ଆହୋ ଶୁଣ ସହଦେବ
ଯୁଗ ଅନ୍ତକାଳ ପ୍ରାୟେ ଦିଶଇ ଅସମ୍ଭବ । ୫୪ ।
ସହଦେବ ବୋଇଲେ ଶୁଣିମା ମଧୁରିପୁ
ତୁ ଦେବ ସଂସାର ସମୂଳ ଆଧିପୂ । ୫୫ ।
କୃପ ଅଶ୍ୱତ୍ଥାମାର ସହିତଂ ହରିଲୁ ଧନୁର୍ଦ୍ଧୋଣ
ତେଣୁ କୋପେ ଅଶ୍ୱତ୍ଥାମା ପେଷିଲା କାଇଂଶିକା ବ୍ରହ୍ମବାଣ । ୫୬ ।
ଅଶ୍ୱତ୍ଥାମାର ମନ୍ତ୍ରେ ସେ ବ୍ରହ୍ମଶର ଅଟଇ
ପଡିଲେ ଅବଶ୍ୟ ଦେବ ମେରୁଗିରି ତୁଟଇ । ୫୭ ।
ଯଦ୍ୟପି ତୋ ଦ୍ୱାରକାରେ ପଡିବ ଯେତୁହ୍ନକ୍ଷଣି
ଛପନକୋଟି ଯାଦବ ସାତବଂଶେ ନିମିଷକେ ଯିବ ହାଣି । ୫୮ ।
ଶୁଣିଣ କୋପାନଳ ଦେବ ଯେ ଶ୍ରୀବତ୍ସ
ଯେତୁହ୍ନାକୁ କସ ଶର ପେଷିବା ସମକକ୍ଷ । ୫୯ ।
ଶ୍ରୀକରେ କୋଦଣ୍ଡ ଯେ ଧରିଣ ଦେବହରି
ଅଶ୍ୱତ୍ଥାମାର ଶରକୁ ଶ୍ରୀକୃଷ୍ଣ ପ୍ରତିକଲ୍ଲ ଶର ମାରି । ୬୦ ।
ପର୍ବତା ଶହସ୍ରେକ ପେଷିଲେ ବନମାଳୀ
କାଇଂଶିକା ଶର ତେଜେ ଶ୍ରୀକୃଷ୍ଣଂକର ଶର ଗଲା ଜଳି । ୬୧ ।
ଲକ୍ଷେକ ପର୍ବତ ସହିତଂ ହୋଇଲାକ ଭସ୍ମ
ଦେଖିଣ ବିସ୍ମୟେ ଯେ ହୋଇଲେ ଶ୍ରୀପୁରୁଷୋତ୍ତମ । ୬୨ ।
ଲକ୍ଷେକ ଯୋଜନେ ଯେ କାଇଂଶିକା ଶସ୍ତ୍ର ଥିଲା
ଅଶିସସ୍ର ଯୋଜନରେ ଆସିଣ ହୋଇଲା । ୬୩ ।
କୋପେଣ କେଶବ ନିର୍ଘାତ ବାଣ ପେଷି
କାଇଂଶିକା ଶରଘାତେ ହୋଇଲା ଭସ୍ମରାଶି । ୬୪ ।
ପୁଣ ପେଷିଲେ ସ୍ୱାମୀ ସହସ୍ରଧାର ଶକତ୍ତି
କାଇଂଶିକା ଶରେ ପଡି ହୋଇଲା ଭସ୍ମଗତି । ୬୫ ।
ଅଶିସହସ୍ର ଯୋଜନେ କାଇଂଶିକା ଶର ଥିଲା
ଷାଠିଯେତୁସହସ୍ର ଯୋଜନେ ଆସିଣ ମିଳିଲା । ୬୬ ।
ପୁଣ ପେଷିଲେ ଦେବ ଅମୋଘ ଶକତ୍ତି
କାଇଂଶିକା ଶର ଉପରେ ପଡି ଦହିଜ ହେଲା ଛତକ୍ଷଣାନ୍ତ । ୬୭ ।

ପୁଣ ନାରାୟଣ ଯେ ବିନ୍ଧଲେ ଝଷମୁନା
କାଇଂଶିକା ଶରେ ପଡି ହୋଇଲାକ ଚୂନା । ୬୮ ।

ଷାଠିଏସହସ୍ର ଯୋଜନେ କାଇଂଶିକା ଶର ଥିଲା
ପୁଣି ଚାଳିଶସହସ୍ର ଯୋଜନେ ବିକାଶିଲା । ୬୯ ।

ଚାଳିଶିସହସ୍ର ଯୋଜନେ କାଇଂଶିକା ରହିଲା
ମହା କ୍ରୋଧଭରେ ତାର ତେଜ ଯେ ଅଗ୍ରର୍ଗଳା । ୭୦ ।

କୋପେ କେଶବ ବିନ୍ଧଲେ ତେଜାନଳ ବାଣ
କାଇଂଶିକା ଶରରେ ପଡି ଲିଭିଲା ତକ୍ଷଣେ । ୭୧ ।

ଚାଳିଶସହସ୍ର ଯୋଜନେ କାଇଂଶିକା ଶର ଥିଲା
କୋଡିଏସହସ୍ର ଯୋଜନେ ଆସିଣ ହୋଇଲା । ୭୨ ।

ବଜ୍ରାବଳୀ ଗଦା ଯେ ଛେଲ ଚନ୍ଦକାନ୍ତ
କାଇଂଶିକା ଶରକୁ ଯେ ମାଇଲେ ଶ୍ରୀପତି । ୭୩ ।

ପଡିଣ ଗଦା ଚନ୍ଦ ଯେ ଧୂଳି ହୋଇଗଲା
ମହାତେଜ ହୋଇଣ ଯେ କାଇଂଶିକା ଶର ଉଠିଲା । ୭୪ ।

କୋଡିଏସହସ୍ର ଯୋଜନେ କାଇଂଶିକା ଶର ଥିଲା
ଦଶସହସ୍ର ଯୋଜନେ ଆସିଣ ହୋଇଲା । ୭୫ ।

ଆହୋ ଚଇତନ ତୃଣକାଷ୍ଟ ବୃକ୍ଷ ଯେ ଅନେକ ଥିଲା ମହୀସ୍ଥଳ
ଶହସ୍ର ଅଗ୍ନି ତେଜରେ ସମସ୍ତ ଗଲେ ଜଳ । ୭୬ ।

ସହଦେବ ବୋଇଲେ ସ୍ୱାମୀ ନ ଧୁଅଇ ବାଣ
ଦ୍ୱାରିକା ଦହନ ତୋର ହୋଇବ ଯେହ୍ନକ୍ଷଣ । ୭୭ ।

ଅପାଲଟକ ବାଣ ଅଟଇ କାଇଂଶିକା
ସମସ୍ତ ଦହନ କରିବ ରହି ନୁଆରିବ ଦ୍ୱାରିକା । ୭୮ ।

ଅଶ୍ୱତ୍ଥମା ବୋଇଲେ ପଞ୍ଚୁପାଣ୍ଡବ ବାସୁଦେବ ସହିତେ
ଦ୍ୱାରିକା ସାତବଂଶ ଛେଦପକାଅ କୋପଚିତ୍ତେ । ୭୯ ।

ଆମ୍ଭନ୍ତ ରକ୍ଷା ଯେବେ କରିବୁ ନାରାୟଣ
ବିଗ୍ରହ କର କାହାକୁ ଦେବା ସ୍ନେକଜଣ । ୮୦ ।

ଲକ୍ଷେକ ଯୋଜନେ ସେ ଯେ ବାଣ ରହିଥିଲା
ତୋର ଶହସ୍ର ବନ୍ଧନେ ଦଶ ସହସ୍ରେ ରହିଲା । ୮୧ ।
ସମୂଳ ଚନ୍ଦ୍ରାମଣି ତୁ ଜାଣୁ ଯେ କାଇଂଶିକା
ରହିଛୁ ଆକାଶେଣ ବଗୁର ଯେ ସେୂକା । ୮୨ ।
ତୁ ଦେବ ଜଗୁଜୀବନ ଚନ୍ଦ୍ରକୂଟ ବୁଦ୍ଧି
ତୋହୋର ବୋଲେ ସେ ଜଣେକେ ହୋଅଇ ପ୍ରବୋଧି । ୮୩ ।
ପାଣ୍ଡବ ଭିତରୁ ସେ ଜଣେକ ପ୍ରଭୁ ଦେଇ
ସେ ବ୍ରହ୍ମଶରକୁ ଯେ କହିବା ବନୋସ୍ମି । ୮୪ ।
ଗୋବନ୍ଦେ ବୋଇଲେ ହୋ ତୁମ୍ଭେ ପାଞ୍ଚେହେଂ ମୋହୋର ଆତ୍ମା
କାହାକୁ ବଗୁର ହୋ ଦେବାକ ମହାତମା । ୮୫ ।
ସହଦେବ ବୋଇଲେ ହର ତୋହୋର ଯେ ବଗୁର
ସେୂହିକ୍ଷଣି ବଳମ୍ବ ନ କରିବା ଦାମୋଦର । ୮୬ ।
ଜଣେ ହଲେ ଯେବେ ସକଳ ହୋଇବ ରକ୍ଷା
ସେୂହାଉଂ ହର ଆଉ କସ କରୁ ପୁଛା । ୮୭ ।
ଅଶସ୍ତମା ପେଷିଲାଟି ଯେ ଲୋକନାମ ଧର
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ଦିବାକର ରଖିତ ନୁଆର । ୮୮ ।
ଗୋବନ୍ଦ ବୋଇଲେ ଯେ କାହାକୁ ସେୂଥେ ଦେବ
କାଇଂଶିକା ଶରକୁ ଦେଖି ନାରାୟଣ ଶର ପେଷିବ । ୮୯ ।
ସେୂତେକ ବୋଲଣ ଦେବ ଜନାର୍ଦ୍ଧନ
ନାରାୟଣ ଶହସ୍ର ଦେବ ପେଷିଲେ ତତକ୍ଷଣ । ୯୦ ।
କାଇଂଶିକା ଶର ତୁଲେ ନାରାୟଣ ଶର ଭେଟି
ବେନଶର ଉଚସ୍ତରେ ବ୍ରହ୍ମାଣ୍ଡ ଯାକ ଘୋଟି । ୯୧ ।
ବହନ୍ତା ପୁରୁଷ ସେ କହେ ଚତୁରାନନ
ମୃତ୍ତୁମଣ୍ଡଳ ତୋର ସେୂହିକ୍ଷଣି ହୋଇବ ଦହନ । ୯୨ ।
ଅଶସ୍ତମା ପେଷିଛୁ କାଇଂଶିକା ନାରାଜ
ନାରାୟଣ ଶହସ୍ର ପେଷିଲେ ଦେବରାଜ । ୯୩ ।
ଦୁଇ ଶହସ୍ର ଭେଟି ହୋଇଲେ ପଡ଼ତାଳ
ସେୂହିକ୍ଷଣି ଦହନ ହୋଇବ ମୃତ୍ତୁମଣ୍ଡଳ । ୯୪ ।

କାଇଂଶିକା ଶର ପେଷିଲେ ଦ୍ରୋଣଂକର ତନୁ
ସମସ୍ତ ଭୁବନ ଘୋଟିଲ ସେ ଶର ଆଧାନୁଂ । ୯୫ ।
ମନ୍ତ୍ରେଣ ହୋଇଲୁ ସେ ଦେବ ବ୍ରହ୍ମଶର
ନାରାୟଣ ଶହସ୍ରୁଂ ଅଧିକ ତେଜ ତାହାର । ୯୬ ।
କାଇଂଶିକା ଶର ପ୍ରତକ୍ଷେ ଅଟଇ ବେଦବ୍ରହ୍ମା
ନାରାୟଣ ଶର ପ୍ରତକ୍ଷେ ଅଟଇ ଯେ ବିଷ୍ଣୁ ମହାତମା । ୯୭ ।
ଆହୋ ମହାତମା ବ୍ରହ୍ମଶର ବିଷ୍ଣୁ ଶର ଦୁହେଂ ହୋଇଲେ ଯେକମୁଖ
ଶାନ୍ତ ନ ଭଜନ୍ତ ସେ ଦୁହେଂ ଅଟନ୍ତ ମହାଶାକ୍ଷ । ୯୮ ।
ବିହନ୍ତା ପୁରୁଷଂକର ବଚନେ ଅଇଲେ ବେଦପନ୍ତ
ମରାଳ ବାହାନେ ଦେବ ବିଜେକଲେ ତତକ୍ଷଣାନ୍ତ । ୯୯ ।
ବାମେ ଗୁରୁବଦନ ଡାହାଣେ ଦେବ ଧାତା
ଆଗେ ବ୍ରହ୍ମ ବଦନ ପଛେ ବିରଞ୍ଚି ଦେବତା । ୧୦୦ ।
ବ୍ରହ୍ମାଂକ ବଦନେ ଥାଇ ଋଷି ବେଦଗନ୍ତ
ଡାହାଣେ ଧାତା ବଦନେ ଯଜୁର୍ବ୍ବେଦ' ଉଚାରନ୍ତ । ୧୦୧ ।
ବାମେ ଗୁରୁବଦନେ ଧନୁର୍ବ୍ବେଦ ସଞ୍ଚ
ଶିଶୁମୁନା ବେଦ ଭାଷଇ ମନେଣ ବିରଞ୍ଚି । ୧୦୨ ।
ଯେ ବିଧିରେ ଚତୁର୍ବ୍ବଦନେ ବେଦପନ୍ତ
କାଇଂଶିକା ଶରକୁ ସ୍ତୁତି କରଇ ଅପ୍ରମିତ । ୧୦୩ ।
ତୁମ୍ଭେ ଯେ ବ୍ରହ୍ମଶର ଅଦଭୁତେ ଆଟେ
ଅଣାକାର ବ୍ରହ୍ମ ତୁମ୍ଭେ ଅବ୍ୟୟେ ଅକ୍ଷୟେ । ୧୦୪ ।
ଅନାଦ୍ଧ ପୁବ ସେ ଯେ ଭରଦ୍ୱାଜଂକର ନାତ
ରାଗେ କାଇଂଶିକା ଶର ପେଷେ ହୋଇଲୁ ଉଗ୍ରମୂର୍ତ୍ତି । ୧୦୫ ।
ଅନର୍ବ୍ବାରଣ ଶର ତାର ନିବାରଣ ନାହିଂ
ତାର ପ୍ରତକକ୍ଷା ଶର ନ ଜାଣନ୍ତ କେହିଂ । ୧୦୬ ।
ଶ୍ରୀକୃଷ୍ଣ ପେଷିଲେ ତୋତେ ଯେ ଅନର୍ଯ୍ୟାପ ବାଣ
ତାଂକର ଶହସ୍ର ଘାତେ ନୋହିଲୁ ନିବାରଣ । ୧୦୭ ।
କାଇଂଶିକା ଶର ତେଜ ଅଟଇ ଅଦ୍ୟାପି
ବ୍ରହ୍ମାୟେ ତାହାନ୍ତ ଅଜପାୟେ ଜପି । ୧୦୮ ।

ପଞ୍ଚାଉନ ସହସ୍ର ଜପିଲେ ଅଜପା କାଳେ
ଶୁଣି ଶାନ୍ତ ହୋଇଲେ ଧାତାର ମନ୍ତ୍ରବଳେ । ୧୦୯ ।
ବାଗ୍ଯ ଫିଟାଇଣ ସେ କହଇ କାଇଂଶିକା
କମ୍ପୁଛେ ବେଦବର ମୋତେ କମ୍ପାଇ ଜଗୁ ଯେତିକା । ୧୧୦ ।
ଧାତା ବୋଇଲେ ତୁ ଛାଡ଼ କ୍ରୋଧମତ୍ତ
ତେଜ ଗୋପ୍ୟାନ କର ଭଜିମେଲ ଶାନ୍ତ । ୧୧୧ ।
ବୋଲଇ କାଇଂଶିକା ମୋହୋର କସ ଦୋଷ ଅଛି
ଦ୍ରୋଣଂକର ନନ୍ଦନ ଅଶ୍ୱତ୍ଥମା ମୋତେ ଯେ ପେଷିଛି । ୧୧୨ ।
ପଞ୍ଚୁ ପାଣ୍ଡବ ବାସୁଦେବ ସାତବଂଶ ସହିତେ
ଦ୍ୱାରକା ନାଶକର ବୋଲି ବୋଇଲା ଅଶ୍ୱତ୍ଥମା ମୋତେ । ୧୧୩ ।
ବ୍ରହ୍ମା ବୋଇଲେ ସେ ପେଷିଲା ଅନ୍ତରାଗେ
ସେମାନେ ନାଶ ନ ଯାନ୍ତି କେହୁଣସି ଯୋଗେ । ୧୧୪ ।
ପାଣ୍ଡବ ପାଞ୍ଚଭାଇ ଶ୍ରୀକୃଷ୍ଣ ଆଦି କରି
ଭାରଭର ନିବାରିବା ନିମନ୍ତେ ଅଛନ୍ତି ମାନବେ ଅବତରି । ୧୧୫ ।
ଦ୍ୱାରକାର ଲୋକ ଅଟନ୍ତି ଅଦୋଷୀ
ତୁ ହୋ ବ୍ରହ୍ମଶର କେମନ୍ତେ ତାହାନ୍ତ ଯିବୁ ନାଶି । ୧୧୬ ।
ବହୁତ ବିନୋଧି ଯେ ବୋଇଲେ ପଦ୍ମଯୋନି
ଯାଅ ଯାଅ ବାହୁଡ଼ି ତୁ ମୋହୋର ବୋଲ ଘେନି । ୧୧୭ ।
କାଇଂଶିକା ଶର ବୋଲଇ ପଞ୍ଚୁ ପାଣ୍ଡବନ୍ତ ଛାଡ଼ିଲି ଯେବେ ଯେତେଣେ
ପାଣ୍ଡବଂ ସମାନ କରି ଦେବାକୁ ମୋତେ ଜଣେ । ୧୧୮ ।
ଧାତା ବୋଇଲେ ବିରାଟର ଝିଅ ଉତ୍ତରା
ଅଭିମନ୍ୟୁ ଭାର୍ଯ୍ୟା ଯେ ହୋଇଛି ଗର୍ଭଧାରୀ । ୧୧୯ ।
ତାହାର ଗର୍ଭେଣ ଅଛି ଯେବଣ ଯେ ବଳା
ତାହା ଛେଦନ କରି ତୁ ବନ୍ଧନ ହୋଇ ପଳା । ୧୨୦ ।
ଧାତା ସ୍ମୃତି କଲେ ପୁଣ ନାରାୟଣ ଶରକୁ
ତୁ ବେଗେ ବାହୁଡ଼ି ଯାଅ ଯେ ବଇକୁଣ୍ଠ ଭୁବନକୁ । ୧୨୧ ।
ନମଇ ନାରାୟଣ ଯେ ଅଣାକାର ମୂରତି
ସକଳ ଭୁବନରେ ତୋର ବିକାଶଇ ଜ୍ୟୋତି । ୧୨୨ ।

୧୧୦।୧ ବାଗ୍ଯ—ବାକ୍ୟ ।

ନମଇଂ ନାରାୟଣ ପରମ ଦୟାଳୁ
ଚଉଦ ଭୁବନ ଲୋକନ୍ତ ତୁହ୍ମ ସେ ପ୍ରତିପାଳୁ । ୧୨୩ ।
ନମଇଂ ନାରାୟଣ ଚଉଦ ଭୁବନ ଅଧିପତି
ତୁହ୍ମ ସଞ୍ଚଅଛୁ ନାଥ କେମନ୍ତେ କରିବୁ ବିନଶ୍ୟତି । ୧୨୪ ।
ନମସ୍ତେ ନାରାୟଣ ଯେ ଶରଣ ପଞ୍ଜର
ନମଇଂ ନାରାୟଣ ଯେ କୋପ ଶାନ୍ତକର । ୧୨୫ ।
ବହୁତ ବିନୋୟି କହିଲେ ନାରାୟଣ ଶରକୁ
ସନ୍ତୋଷ ହୋଇଣ ସେ କହିଲେ ବିଧାତାକୁ । ୧୨୬ ।
ବାହୁଡ ଯିବୁ ଆମ୍ଭେ ବଇକୁଣ୍ଠ ଭୁବନକୁ
କାଇଂଶିକା ଶରକୁ ତୁମ୍ଭେ ବାହୁଡାଇ ନିଅ ନିଜ ପୁରକୁ । ୧୨୭ ।
ପିତାର ବଚନେ ସେ ପଶିଲା ପାତାଳେ
କାଇଂଶିକା ପଶିଲା ଯେ ଉତ୍ତରା ଶିର ସ୍ଥଳେ । ୧୨୮ ।
ଆହୋ ଚଇତନ ତାଳୁର ବାଟେ ଅଛି ବ୍ରହ୍ମଦ୍ୱାର
ସେ ଦ୍ୱାର ଭେଦିଲା ଅଶସ୍ତମା କାଇଂଶିକା ଶର । ୧୨୯ ।
ତାଳୁରେ ପଶି ଗର୍ଭେ ପଶି ଫୁଟି
ଗର୍ଭେ ଦେଖିଲା ସେ ଯେ ବାଳୁତ ପୁନ ଗୋଟି । ୧୩୦ ।
ସେ ବାଳକର ତାଳୁରେ ଶର ଗଲା
ଅଷ୍ଟାଙ୍ଗ ଭେଦିଣ ପାଦେଣ ନିକଳା । ୧୩୧ ।
ବାଣ ପଶିଲା ସେ ଶୂନ୍ୟ ଭୁବନରେ
ମୂର୍ଚ୍ଛାଗତ ହୋଇ ଉତ୍ତରା ପଡିଲା ଅସାଷ୍ଟମରେ । ୧୩୨ ।
ଆହୋ ଚଇତନ ସାତମାସ ସାତଦିନର ଅଟଇ ସନ୍ତତି
ଅଶସ୍ତମାର ଶର ପଡ଼ି ହୋଇଲା ବିନଶ୍ୟତି । ୧୩୩ ।
ଦ୍ରୋପଦୀ କୋଇନ୍ତା ସୋହୋଦ୍ରା ଥିଲେ ଶୋଇ
ଦେଖିଲେ ଉତ୍ତରା ଶରୀରେ ପ୍ରାଣ ନାହିଂ । ୧୩୪ ।
କୋଇନ୍ତା ସୋହୋଦ୍ରା ଉଠିଲେ ତତକ୍ଷଣ
ଦେଖିଲେ ଉତ୍ତରା ତହିଂ ନାହିଂତ ଜୀବନ । ୧୩୫ ।
ସୋହୋଦ୍ରା ବୋଲନ୍ତି ଉଠ କନା ମାୟେ
ସମାସ୍ୟା ନ ପାଇ ସେ ଧରନ୍ତି ନାଡିକାୟେ । ୧୩୬ ।

ଅଚେତନ ଦେଖି ତାକୁ ଧରିଛନ୍ତି କୋଳ କରି
ପବନ ଫାନ୍ଦଇ ଦେଖିଣ ବସରି । ୧୩୭ ।
ମୁଖେ ନେଇଣ ସେ ଶୀତଳ ଜଳ ସିଞ୍ଚି
କାନ ଫୁଙ୍କିଣ ଆଲିଙ୍ଗିଣ ବଞ୍ଚି । ୧୩୮ ।
ଦେଖିଲେ ମୃତଶବ ହୋଇଛୁ ଉତ୍ତରା ବାଳୀ
ଅଦ୍‌ଭୁତେ ଶବଦ ପଡ଼ିଲା ବୋବାଳି । ୧୩୯ ।
ଅନ୍ତେଶ୍ୱର ଭିତରେ ଉଚ୍ଚସ୍ୱରେ କ୍ରୋଧବାଣୀ
ଦେବକୀ ଯଶୋଦା ବିଜେକଲେ ତାହା ଶୁଣି । ୧୪୦ ।
ଗହ୍ଳିଲ ଚଞ୍ଚଳ ଅତି କ୍ରୋଧ କଥା
ଦ୍ୱାରକା ଭୁବନରେ ସେ ଫୁଟିଲା ବାରତା । ୧୪୧ ।
ସୋହଦ୍ରା ଦେବୀର ଅନେକ ରୋଦନ ଶୁଣି
ବିଜେ କଲେ ଜମ୍ବୁବତୀ ସତ୍ୟଭାମା ରୁକ୍ମିଣୀ । ୧୪୨ ।
ଅମିୟ ବଚନେ ସେ ସୁନ୍ଦର ମୁଖଗୋଟି
ସୁନ୍ଦର ବଦନ ଆରକ୍ତ ବିମ୍ବାଧର ଓଷ୍ଠୀ । ୧୪୩ ।
ଅନେକ ଶାନ୍ତି କରି ସେ ଫୁଙ୍କିଲେ ଦେବୀମାନେ
କଣ୍ଠେ ପବନ ବହଇ ନାସାରେଣେ । ୧୪୪ ।
ରୁକ୍ମିଣୀ ବୋଇଲେ ଗୋ କଲ୍ୟ ଆଈ କସ
ବୃଷ୍ଣି ବଂଶକୁ ଯେ କଥା ଅଛଇ ଭବିଷ୍ୟ । ୧୪୫ ।
ଶ୍ରୀକୃଷ୍ଣର ବଲ୍ଲଭୀ ଯାଇଂ କୋଳ ସେ କରନ୍ତେ
ଅସାଷ୍ଟମ ଉତ୍ତରା ପାଇଲା ଜୀବତେ । ୧୪୬ ।
ଅସାଷ୍ଟମ ହୋଇ ଗୃହଇଂ ଯେ ନୟନ ଗୃଳ
ପବନ ଫାନ୍ଦିଲା ସେ ଉତ୍ତରା ନାମେ ବାଳୀ । ୧୪୭ ।
କୁମାରୀ ସାଷ୍ଟମେ ଯେ ବହିଲା ରକ୍ତଧାର
ନିଜସ୍ଥାନ ଛାଡ଼ିଲା ସେ ଗର୍ଭର କୁମାର । ୧୪୮ ।
ଗର୍ଭରୁ ପଡ଼ିଲା ତାର ଯେବଣ ବାଳୁତ ପୁତ୍ରଗୋଟି
ଶିରର ଶୋଣିତ ଚରଣ ଦେଇ ଫୁଟି । ୧୪୯ ।

---

୧୩୭। ବସରି—ବସୁରି ।

ଆହୋ ଚଇତନ କୁମ୍ଭ ମାସ କୃଷ୍ଣପକ୍ଷ ପଞ୍ଚମୀ ଗୁରୁବାର
ସ୍ୱାତି ନକ୍ଷତ୍ର ଯେ ଭୋଗ ସେ ଦିନର । ୧୫୦ ।
ତନ୍ତୁଲ୍ୟ ନାମେ କରଣ ଧ୍ରୁବ ନାମେ ଯୋଗ
ନବମେ ଚନ୍ଦ୍ର ପଞ୍ଚମେ ରାହୁ ଭୋଗ । ୧୫୧ ।
ପ୍ରଥମ ଗୃହଦଣ୍ଡ ଯେ ଗୁରୁଙ୍କର ବେଳା
କୁମ୍ଭ ଲଗ୍ନେ ଜାତ ଯେ ଅଭିମନ୍ୟୁ ବଳା । ୧୫୨ ।
ସପ୍ତମେ ଶୁଭସ୍ଥାନେ ପାପଗ୍ରହ ନାହିଁ ସର୍ବଶୁଭ
ମୃତପିଣ୍ଡ ପଡିଲା ଶରୀରେ ନାହିଁ ଜୀବ । ୧୫୩ ।
ପବନ ଫାନ୍ଦଇ ଯେ ଚକ୍ଷୁ ନ. ଚଳଇ
ହସ୍ତ ପାଦ ନିଶ୍ଚଳେ ଯେ ପଡଣ ଅଛଇ । ୧୫୪ ।
ଦେବକୀ ଯଶୋଦାରେ ନିରେଖିଣ ଗୃହିଂ
ବୋଇଲେ ଯେ ପୁତ୍ରଗୋଟିର ତ ଶରୀରେ ପ୍ରାଣ ନାହିଁ । ୧୫୫ ।
ପୁତ୍ରର ମୃତପିଣ୍ଡ ଦେଖିଣ ଉତ୍ତରା ଯେ ବାଳୀ
ଆରେ ଆରେ ନନ୍ଦନ ବୋଲି ଦିଲକ ବୋବାଳି । ୧୫୬ ।
ବାବୁ ସୁଜାଣି ସୁଠାଣି ପୁର୍ଣ୍ଣମୀ ଚନ୍ଦ୍ରଗୋଟି
କାଳନ୍ଦୀ ସରୋବରରେ ଯେହ୍ନେ ପଦ୍ମ ଫୁଟି । ୧୫୭ ।
ଲୀଳାରେ ଖଞ୍ଜଣୀ ଚକୁରେ କବରୀ
ତହିଁର ଅପାଦ ରେ ପଡୁନା ମୋହୋର ଉପର । ୧୫୮ ।
ବାବୁ ଝଳ ତ ରତ୍ନ ପ୍ରାୟେ ତୋହୋର ଲଲାଟ ପାଟି
ତହିଁର ଅପାଦରେ ପଡୁପ୍ରାୟେ ମୋହୋର ଦୃଷ୍ଟି । ୧୫୯ ।
ବାବୁ ଚଞ୍ଚଳ ଆକୃତ ଲୋଚନ ତୋର ବେନି
ତହିଁର ଅପାଦ ମୁଁ ଯାଇଁ କନା ଘେନି । ୧୬୦ ।
ମୋହୋର କଷ୍ଟ ଦେଖି ନ ଗୃହୁଁ ନୟନେ ତୁହି କନା
ତୋହୋର ଦୃଷ୍ଟିପାତେ ଶରୀର ମୋହୋର ଥିବ ସିନା । ୧୬୧ ।
ଗରୁଡ ଉପମା ବାବୁ ତୋହୋର ନାସିକା
ତହିଁର ପରମୁଣ୍ଡା ଯାଇଁ କନା ପ୍ରେକା । ୧୬୨ ।
ବାବୁ ଶୁଦ୍ଧ ଘଟଣ ଜାଣି ତୋହୋର କର୍ଣ୍ଣହିଂ
ତହିଁର ଅପାଦରେ ମୁହିଁ ଘେନି ଯାଇଁ । ୧୬୩ ।

ଅମୂଲ୍ୟ ଅତୁଲ୍ଲାଇତ ତୋହ୍ୱୋର ବେନି ଓଷ୍ଟ
ରଙ୍ଗ କୁସୁମ ଜାଣି ଚହୁଁଛଇ ଚଢ଼ପାଶ । ୧୬୪ ।
ଦ୍ରବୀଭୂତ ହୋଇ କହୁ କିନା କଥା
ତୋହ୍ୱୋର ଆପଦ ରେ ପଡୁ ମୋହ୍ୱୋର ମଥା । ୧୬୫ ।
ବାବୁ ଅନେକ ଅବସ୍ଥାରେ ବେଦନ କରଇ ବାଣୀ
ତୋହ୍ୱୋର ନିରଂଛୁଣା ଯାଇଂ କିନା ଯେହ୍ୱକ୍ଷଣି । ୧୬୬ ।
ଅତଅନ୍ତ ସୁଘଟଣ ଅଛଇ ଗଣ୍ଡସ୍ଥଳ
ତହ୍ନଂର ଆପଦ ପଡୁ ମୋହ୍ୱୋର କପୋଳ । ୧୬୭ ।
ଗଜ ମସ୍ତକ ଜାଣି ତୋହ୍ୱୋର ବେନି କନ୍ଧ
ନୀଳାରେଖ ରୋମାବଳୀ ବଇଡୁର୍ଯ୍ୟ ତାକୁ ବୋଧ । ୧୬୮ ।
କର୍ଣ୍ଣିକର ପ୍ରାୟେ ଅଛଇ ତୋହ୍ୱୋର ବାହୁ
ପଦ୍ମଫୁଲ ନୟନ ଗୋଟି କିମ୍ପା ଯେ ନ ଗୃହୁଂ । ୧୬୯ ।
ଶତଦଳ ପଦ୍ମ ପ୍ରାୟେ ତୋହ୍ୱୋର ପାପୁଲି
କନକ ଚମ୍ପା କଢ଼ି ଜାଣିଣ ଅଙ୍ଗୁଳି । ୧୭୦ ।
ଯେତେକ ଲକ୍ଷଣ ବାବୁ ପାଇବଇଂ କାହ୍ନଂ
ଯେତେ ଶ୍ରୀବନ୍ତ ପୁତ୍ରଗୋଟି ଜୀବନ୍ତେ ତ ନାହ୍ନଂ । ୧୭୧ ।
ବାବୁ ବେନିଭୁଜେ ଧଣ ରେ ଭଙ୍ଗ ମୋହ୍ୱୋର ହସ୍ତ
ହୃଦେ ଲ୍ଲକୁ ମୋର କମଳମାଳ ରେଖା । ୧୭୨ ।
ସୁଘଟଣ ଚଢ଼ସର ତୋହ୍ୱୋର ବକ୍ଷସ୍ଥଳ
ତହ୍ନଂର ଅପାଦ ରେ ପଡୁ ମୋହ୍ୱୋର କପାଳ । ୧୭୩ ।
ବାବୁ ପୁରୁଣୀ ପତ୍ର ପ୍ରାୟେ ତୋହ୍ୱୋର ପେଟଗୋଟି
ମୁଂ ତହ୍ନଂର ଘେନଇଂ ରେ ଅପାଦଗୋଟି । ୧୭୪ ।
ହେମ ଝଳିତ ତୋହୋର ହୃଦୟ ଯେ ଗୋଟି
ଅତଅନ୍ତ ଶୀତଳ ରେ ତୋହ୍ୱୋର କଟିଗୋଟି । ୧୭୫ ।
ପ୍ରବୋଧ କପୋଳ ରେ ତୋହ୍ୱୋର ବେନି ଜାନୁ
ତହ୍ନଂର ଅପାଦ ରେ ମଥାରେ ମୋର ଘେନୁ । ୧୭୬ ।

---

୧୬୭। କପୋଳ—କପାଳ ।

ବାବୁ ବାଳୁତ ତଞ୍ଚଳ ରେ ଆବତ୍ୟାଞ୍ଚଳଗୋଟି
ସ୍ଫଟିକ ପୋଯ୍ସେଲା ଜାଣି ତୋହ୍ୱୋର ଅଙ୍ଗୁଷ୍ଟି । ୧୭୭ ।
ବାବୁ ବସଜ ବନ୍ଧୁକ ପ୍ରାସ୍ୱେ ତୋହୋର ଓଷ୍ଟଗୋଟି
ସ୍ୱେ ତୋହ୍ୱୋର ଦେଖିଲ ମୁହ୍ନଂ ରେ ବଡ କର୍ଷ୍ଟି । ୧୭୮ ।
ବାବୁ ଚରଣ ହୁଲାଇ ରେ କମାଇଂ ନ କାନ୍ଦୁ
ଦୁଖୀର ସଙ୍ଗାତ ରେ ମୋହ୍ୱୋର ପ୍ରାଣବନ୍ଧୁ । ୧୭୯ ।
ବାବୁ ଅଭସ୍ୱେ ସୋମବଂଶ ବୋଲ ରେ ଆଣକେଲ
ଦଇବର ଯୋଗରେ ତୋତେ ମୁଂ ପାଇଲ । ୧୮୦ ।
କେବଣ ଗୁରୁଜନର ପଞ୍ଚଲାନା ମୋତେ ଶାପ
ଅଶସ୍ତ୍ରମା ଶର ତୋତେ ପେଟରେ ନାଶିଲା ରେ ବାପ । ୧୮୧ ।
ଅଷ୍ଟମାସ ପର୍ଯ୍ୟନ୍ତେ ଧଇଲ ତୋତେ ଗର୍ଭେ
କୋଳରେ ଧରନ୍ତେ ତୋତେ ନୁଆରଲ ସ୍ୱେବେ । ୧୮୨ ।
ଆହ୍ୱୋ ଚଇତନ ଉତ୍ତରର ବୋଧ କହ୍ୱତ କ ପାର
ସୋମବଂଶ କୁଳଦୀପର ଯେ ଗର୍ଭଧାରି । ୧୮୩ ।
ପୁତ୍ରକଇଂ କୋଲେ ଧରଣ ସବଭଦ୍ରା
ବୋଇଲେ କମର୍ଥେ ପୁତ୍ର ରେ ଭଗ୍ନକଲ ମୁଦ୍ରା । ୧୮୪ ।
ଉତ୍ତରକଇଂ କୋଲେ ଯେ ଧଇଲେ ରୁକ୍ମଣୀ
ମାଗୋ ମସ୍ତ୍ରଦେଶର କନ୍ୟା ସୋମବଂଶ କୁଳର ମଣ୍ଡଣୀ । ୧୮୫ ।
ଆଛୁତେ ମରଣ ମାଗୋ କାହ୍ନଂ ଅଇଲାକ ସ୍ୱେଥ
କେବଣ ଦଇବ ତୋତେ ବହ୍ନାଲା ସ୍ୱେଡେ କୃତ୍ୟ । ୧୮୬ ।
ପୁତ୍ରମୁଖ ଦେଖିଣ ଯେ ଶ୍ରୀକୃଷ୍ଣର ଭଗ୍ନୀ
ଜନ୍ମ ହ୍ୱୋଇଲ ପୁତ୍ର ତୁରେ ମୃତ୍ୟୁକୁ ସଙ୍ଗେ ଘେନି । ୧୮୭ ।
ସୋମବଂଶ ମଣ୍ଡନ ରେ ଅନାସ୍ତାର ବଳା
ଉଭସ୍ୱ କୁଳକୁ ବାବୁ ଲଗାଇଲ କଳା । ୧୮୮ ।
ବାବୁ ତୋହ୍ୱୋର ଠାରୁ ବଂଶ ବୁଡିଲା ରେ ବାଳବଚ୍ଛି
କେଉଣ ପାତକରୁ ମୋତେ ଛାଡିଲା ରେ ଲଚ୍ଛୀ । ୧୮୯ ।
ବାବୁ ଶତେ ଚନ୍ଦ୍ରବଦନର ଯାଇଂ ମୁଂ ନଛଂଛୁଣା
ଉଭସ୍ୱ କୁଳର ବାବୁ ରେ ଅଟୁ ତୁ ଦୁଲଣା । ୧୯୦ ।

ଦଶଦ୍ଦଶ ଅନ୍ଧାର କଲୁରେ ମୋତେ ବଳା
ଅଗାଦ ସମୋଦ୍ରେ ମୋର ବୁଡ଼ାଇଲୁ ଭେଳା । ୧୯୧ ।
କେବଣ ପାତକ ମୁଂ ଯେ କରିଅଛୁ ପୂର୍ବେ
ଅଶସ୍ତ୍ରମା ଶର କମ୍ପେ ପଶିଲୁ ତୋର ଗର୍ଭେ । ୧୯୨ ।
ବାବୁ ସୋମବଂଶ ରକ୍ଷାଫଳକ ଗଲୁ କାହ୍ନିଂକ
ମୁଖେ ମୁଖ ଲଗାଇ ଝୋଧେ ଗରୁ ଡାକ । ୧୯୩ ।
ବାବୁ କେବଣ ଗୁରୁଜନ ଯେ ଶାପ ମୋତେ ଦିଲା
ତେଣୁ ସେ ନନ୍ଦନ ମୋର ପ୍ରାଣତ୍ୟାଜ ହୋଇଲା । ୧୯୪ ।
ସୋହୋଦ୍ରା ରୁକ୍ମିଣୀ ସତ୍ୟଭାମା ଜମ୍ବୋବତୀ
କାଳନ୍ଦୀ ସତ୍ୟା ଲକ୍ଷ୍ମଣାଦ୍ଦ ସମସ୍ତେ ରୋଦନ୍ତି । ୧୯୫ ।
ଆରେ ମୋର ଦୁଖୀର ସଙ୍ଗାଳ ଅନାଥର ବନ୍ଧୁ
ମଦନବୁତେ ଶୁତଲୁ ତୁ କମ୍ପାଇଂ ନ କାନ୍ଦୁ । ୧୯୬ ।
ଅକାଳେ କପାଇଂ ବାବୁରେ କଲୁ ମୃତ୍ୟୁଶଯ୍ୟା
ମନକଷ୍ଟ ଦେଖି ପୁତ୍ର ରେ କରିବୁନା ନିଦ୍ରା ତେଜ୍ୟା । ୧୯୭ ।
ବାଳୁତ ପୁତ୍ର ହୋଇ ତୁ ଯେତେକ ନିର୍ଦ୍ଦୟା
କାହାର ମୁଖ ନ ଗୃହ୍ନଂ ରେ ପାଷାଣ ତୋର ହୃଦ୍ୟା । ୧୯୮ ।
ମୁଖେ ମୁଖ ଲଗାଇ କର୍ଣ୍ଣରେ ଦଅନ୍ତ ଯେ ଫଂକ
ବାବୁ ସୋମବଂଶ ତେଜ୍ୟା କରି ଗଲୁରେ କାହ୍ନିଂକ । ୧୯୯ ।
ରସାଣିଲା ପତ୍ର ପ୍ରାୟେ ତୋ ଲଲାଟ ପାଟି
ତରଳ ତରଙ୍ଗ ପ୍ରାୟେ ତୋହୋର ଚକ୍ଷୁ ବେନିଗୋଟି । ୨୦୦ ।
ଫଂକୁ ବିମ୍ବଫଳ ଜାଣି ତୋହୋର ଓଷ୍ଟ ବେନି
ଯେ ତୋର ଅପାଦ ଯାଇଂକନା ମୁହିଂ ଧେନି । ୨୦୧ ।
ବାବୁ ରୋଦନ ଶୁଭନ୍ତା ତୋର ଅଣ୍ଡିର କୋକିଳ ଜାଣି
ଦ୍ୱାରିକା ଉଚ୍ଛବ ହୋଉ ତୋହୋର ରୋଦନ ଶୁଣି । ୨୦୨ ।
ବିସ୍ତାର ବକ୍ଷସ୍ଥଳ କଟି ବିକ୍ରମ କେଶରୀ
ବାବୁ ବାହୁାନାଦ ଦେଇ ପୁତ୍ର ଉଠ ମୂର୍ତ୍ତିବନ୍ତ ହୋଇକରି । ୨୦୩

---

୨୦୧।୧ ଫଂକୁ—ପକ ।

ସମ୍ବଳଜନ ତାରଣ ଅଚ୍ଛନ୍ତି ଯୁଦ୍ଧେଷ୍ଟି
ତାହାଂକର ପୁଣ୍ୟ ଯେନ ପୁତ୍ର ଗୃହୁଂକନା ତୁଷ୍ଟି । ୨୦୪ ।
ଯେକଆତ୍ମା ଅଭେଦ ଯେ ଶ୍ରୀକୃଷ୍ଣ ଫାଲଗୁନ
ତାହାଂକ ଆସ୍ତ୍ରିଷ ଯେନ ପୁନ ହୋଇଲ୍ କମେ ତୁନ । ୨୦୫ ।
ପଦ୍ମନାଭ ଜଣି ତୋର ଭୁଜ ଦୁଇଗୋଟି
ଚମ୍ପକ କଢ଼ି ଜାଣି ତୋହୋର ଅଙ୍ଗୁଷ୍ଟି । ୨୦୬ ।
ଅତ ଅଲୋକତ ଶୋଭବନ କାଯ୍ୟେ
ଆମ୍ଭର ଅବସ୍ଥା ଦେଖି କମ୍ପାଇ ନ ବସଇ ତୋର ଦୟେ । ୨୦୭ ।
ଓଲଟ କଦଳୀ ଜାଣି ଦଶଇ ତୋର ବେନିଜାନୁ
ନୀଳାରେଖ ରୋମାବଳୀ ଶୋଭିତ ତୋର ତନୁ । ୨୦୮ ।
ମୃତ୍ତିପିଣ୍ଡ ପୁତ୍ରଗୋଟି ତୁ ମୋହୁଚ୍ଛୁ ଜଗତ
ବାଡ଼ ଦେବତା ଯମ, ତୋତେ ନେବାକୁ ବଳଲା କେଣ୍ଣେ ଚିତ୍ତ । ୨୦୯ ।
ରୁକ୍ମଣୀ ସୋହୋଦ୍ରାଂକ ଶୁଣି ଅନେକ ଶୋକବାଣୀ
ତହୁଂ ବଜଯ୍ୟେ କଲେ ଦେବ ଚକ୍ରପାଣି । ୨୧୦ ।
ଖଣ୍ଡେ ବୁଝୁଂ ସୋହୋଦ୍ରା ଶ୍ରୀକୃଷ୍ଣଂକୁ ଦେଖି
ବଜ୍ରାଘାତ ଜାଣି ପଡ଼ିଲ୍ ଶଶିମୁଖୀ । ୨୧୧ ।
ସୋହୋଦ୍ରା ମୂର୍ଚ୍ଛାଗତ ଶ୍ରୀକୃଷ୍ଣର ଆଗେ
ତୋହୋର ବୋଲେ ମୁଂ ନ ଧଇଲି ପୁତ୍ରଶୋଗେ । ୨୧୨ ।
ହର ତୋହୋର କଥାଯ୍ୟେ ଯେବେ ଜାଣିଲି ଯେତେ କୁଟୀ
କପଟ ଯୁଦ୍ଧେ ମରାଇଲ୍ ଚଉଦ ବରଷ ପୁତ୍ରଗୋଟି । ୨୧୩ ।
କେଉଂ ଦୋଷ କଲି ମୁଂ ତୋତେ ହୋ ଶ୍ରୀପତି
ଯେବେ କମେ କପଟରେ ମରାଇଲ୍ ମୋହୋର ନାତିଗୋଟି । ୨୧୪ ।
ଶ୍ରୀକୃଷ୍ଣ ବୋଇଲେ ମାଗୋ ରହ ରହ ସୋହୋଦ୍ରା
ମୃତ୍ୟୁଗତ ନୋହୋଇ ପୁନ ଅସାଷ୍ଟମ ନିଦ୍ରା । ୨୧୫ ।
ସଦା ମଙ୍ଗଳ ଯେ ଯେ ମୋହୋର ପୁରୀ
ଆନନ୍ଦ ଛାଡ଼ି କମ୍ପାଇଂ ଅନମିତେ କୋଧ କର । ୨୧୬ ।

---

୨୧୩ { ଯେ ହର ତୁମ୍ଭର ଜାଣିଲି ଯେହେନେକ କୃତ୍ୟ
କପଟ ଯୁଦ୍ଧେ ମରାଇଲୁ ଚଉଦ ବରଷ ବାଳପୁତ୍ର । (ଝ, ଟ)

ସୋହ୍ୱୋଦ୍ରା ପ୍ରଣପତ୍ୟ କୃଷ୍ଣ ପଦ୍ମପାଦେ
ଯାବତ ଅବସ୍ଥା ହର ତୋହ୍ୱୋର ପରସାଦେ । ୨୧୭ ।
ମୁହ୍ନଂ ଯେ କାହ୍ନାର ବୋଲ୍ ନ କଲି
କକ୍ଷାବସ୍ତ୍ର ହୋଇ ଲଜ୍ଜା ଉପେକ୍ଷିଲି । ୨୧୮ ।
ମୁହ୍ନଂ କାହ୍ନଂ ଅର୍ଜ୍ଜୁନ କାହ୍ନଂ ମୋତେ ସ୍ନେକଠାବ କଲ୍ଲି
ମଧ୍ୟେ ଯଦୁବଂଶ ଅନେକ ଗଞ୍ଜାଇଲ୍ଲି । ୨୧୯ ।
ଆଗହୁଂ ତ ଭାଙ୍ଗିଥିଲେ ବଳଦେବ ସ୍ନେହ୍ନା
ବଂଶିକ ବୋଲି ଅର୍ଜ୍ଜୁନକୁ ମୋତେ କଲେ ବେହ୍ନା । ୨୨୦ ।
ହର ଅର୍ଜ୍ଜୁନର ଓପ୍ରୋଧେ ନ ବୋଇଲ୍ଲି ମୋତେ କଚ୍ଛ
ବିଶ୍ୱାସଘାତକୀ ମୋତେ କରାଇଲ୍ଲି ଶ୍ରୀବତ୍ସ । ୨୨୧ ।
ସଂସାର କାରଣ ହେଉଛନ୍ତି ତୋହ୍ୱୋର ପରସାଦେ
ପାଣ୍ଡବନ୍ତ ବହ୍ନଲ୍ଲି ସ୍ନେତେକ ପରମାଦେ । ୨୨୨ ।
ହର ଶତଧନୁ ବିବାଦେ ଅର୍ଜ୍ଜୁନ ତୋତେ ଜିଣି
ତେଣୁ ହୃଦରେ କୁଠ ଧଇଲ୍ଲି କି ପୁଣି । ୨୨୩ ।
ହର ସତ୍ୟଭାମା ପେଷି ମୋତେ କଲ୍ଲି ସ୍ନେତେ ଯୋଗ
ତୋହ୍ୱୋର ସାହ୍ନାରେ ପାଣ୍ଡବନ୍ତ ସ୍ନେତେକ ବିୟୋଗ । ୨୨୪ ।
ହର ବୋଇଲ୍ଲି ଯେ ସୋମବଂଶରେ ଉପୁଜିଲେ ପୁତ୍ରଗୋଟି
ସେହ୍ନି ସେ ଧାରଣ ହୋଇବ ନା ନବସୃଷ୍ଟି । ୨୨୫ ।
ଅର୍ଜ୍ଜୁନ ପ୍ରଦାନ କରାଇଲ୍ଲି ସ୍ନେସନେକ ଭାଳି
ସ୍ନେବେ କି ତାହ୍ନା ତୁ ପାସୋରିଲ୍ଲି ବନମାଳୀ । ୨୨୬ ।
ହର ସଂସାରେ ବୋଲନ୍ତି ଯେ ପାଣ୍ଡବେ ବିଷ୍ଣୁ ଆଶ୍ରୟରେ
ଉଭୟ କାଳକୁ ନାଶକଲ୍ଲି ହୋ ଅବଗୃହରେ । ୨୨୭ ।
ଅତ ନିଷ୍ଠୁର ତୁ ତୋହ୍ୱୋର କିସ ବହେଣୀ ଭଉଣୀ
ହୃଦରେ ହଂସା ଧର ବୋଲଉ ଦେବରାଜା । ୨୨୮ ।
ଯଶୋଦା ଦେବୀଙ୍କର ମୁହ୍ନଂ ଯେ ଦୋହିତା
ଉତ୍ତରା ମୋହୋର କୁଳବଧୂ ଘେନିଲ୍ଲି ତାହ୍ନାର ହତ୍ୟା । ୨୨୯ ।

---

୨୨୯।୧ ଯଶୋଦା ମୋହୋର ମାତା ମୁହ୍ନଂ ତୋହୋର ଅନୁଜା । (କ,.ଥ)
୨୨୦।୨ ବେହ୍ନା—ବିଶ୍ୱ ।
୨୨୮।୧ ବହେଣୀ—ଭଗିନୀ, ଭଉଣୀ

ସ୍ୟେବେ ପାଇଲୁ ହରି ହୋ ବାଳ୍ପତ ହତ୍ୟା ଦୋଷ
ଇହଲୋକେ ଅପଖ୍ୟାତ ପରଲୋକେ ଅପଯଶ । ୨୩୦ ।
କାଲେ ଜାଣିଲ ତୋର ଅର୍ଜୁନକୁ ଅଭାବ
କେଉଂଣ ଦ୍ରୋହ କଲେ ତୋତେ ପଞ୍ଚଇଂ ପାଣ୍ଡବ । ୨୩୧ ।
କଉରବ ବଂଶ ହରି ନାଶକଲୁ କୂଟେ
ପାଣ୍ଡବଂକ ବଂଶ ସ୍ୟେବେ ମରାଇଲୁ କପଟେ । ୨୩୨ ।
ଶ୍ରୀକୃଷ୍ଣ ବୋଇଲେ ମାଗୋ ନ ବୋଲ ମୋତେ ସ୍ୟେହା
ଶୁଣିଲେ କୋପ ମୋତେ କରିବେ ତୋର ନାହା । ୨୩୩ ।
ସୋହୋଦ୍ରା ବୋଇଲେ ହରି ପାଣ୍ଡବନ୍ତ ଯେବେ ତୋର ଭୟେ
ସୋମବଂଶ ବୁଡିଲା ହରି କସ ତୋହୋର ଉପାୟେ । ୨୩୪ ।
ସୋହୋଦ୍ରା ବଚନ ଶୁଣି ଶ୍ରୀକୃଷ୍ଣ ବୋଇଲେ
ଯେ ଯାହାର ବଂଶ ତାର ପାତକେ ନାଶଗଲେ । ୨୩୫ ।
ସୋହୋଦ୍ରା ବୋଇଲେ ହରି ତୋର ନାମ ଜଗତ ତାରଣ
ତେଣୁକରି ପାଣ୍ଡବେ ତୋହୋରେ ପଶିଲେ ଶରଣ । ୨୩୬ ।
ହରି ସୁଦ୍ରଶେନ ଚକ୍ର ଯେ ସହସ୍ରେକ ଧାର
ଦିବାରାତେ ବୁଲୁଥାଇ ଦ୍ୱାରାବତୀ ପୁର । ୨୩୭ ।
ମାତ୍ର ଢରଣ ପଡିଲେ ଯେ ସହସ୍ରେକ ଖଣ୍ଡ
ତେଣୁ ସ୍ୟେ ଭୁବନେ ନ ପଶଇ ଯମରାଜାର କାଳଦଣ୍ଡ । ୨୩୮ ।
ନିରୋଗ ପୁର ସ୍ୟେ ହରି କାହାର ନାହିଂ ସ୍ୟେଥି ମୃତ୍ୟୁ
ନାତଗୋଟି ନାଶକଲୁ କହ କେଉଂ ହେତୁ । ୨୩୯ ।
ଅନନ୍ତକୋଟି ବ୍ରହ୍ମାଣ୍ଡେ ତୁ ଅଟୁ ଅଧିକାରୀ
ତୋ ବିନା ଆଗ୍ୟାଂରେ ଯମ ପାରଇ କି ହରି । ୨୪୦ ।
ହରି ଚଉଦ ବରଷର ପୁତ୍ର ଅଭିମନ୍ୟୁ
ରଣଭୂଅ କରାଇ ମାଇଲୁ ମୋର ତନୁ । ୨୪୧ ।
ହରି ସମସ୍ତେ କାରେଣି ହେଲେ ଦ୍ୱାରିକାର ଜନ
ମୁହିଂ ସେ କେବଣ ପାପ କଲିଟି ହାଦେ ପୁଣ । ୨୪୨ ।
ସବୁ ସ୍ତ୍ରିରୀମାନେ ସ୍ୟେଥି ଅଛନ୍ତିଓ ସୁଲକ୍ଷଣୀ
ହୀନସ୍ତ୍ରିରୀ ସଙ୍ଗତେ ମୁଂ ହୋଇଲି ତ ଗଣି । ୨୪୩ ।

ହର ପୁତ୍ର ପୁତ୍ରୀଠାରେ ନାହିଁ ମୋହୋର ଯେ ଆଶ
ନାତି ଗୋଟିକ ଆଶ କରିଥିଲି ସେ ହୋଇଲା ବିନାଶ । ୨୪୪ ।
ବଜ୍ରକର୍ଣ୍ଣକଣ୍ଠାର ଘେନିଣ ସଉଭଦ୍ରେ
ବେଗେ କୋଠାର ବସାନ୍ତେ ଧଇଲେ କୃଷ୍ଣଚନ୍ଦ୍ରେ । ୨୪୫ ।
ଶ୍ରୀକୃଷ୍ଣ ବୋଇଲେ ମା ଗୋ ଛାଡସି କ୍ରୋଧବାଣୀ
ଗର୍ଭରୁ ମୃତ ଜାତ କେ ଜୀଆଇଂ ଦେବ ପୁଣି । ୨୪୬ ।
ସୋହୋଦ୍ରା ବୋଇଲେ ହରି ତୋହୋର ଯେବେ ପାଣ୍ଡବନ୍ତ ନିକଳଂକ
କହିତ ପ୍ରସାଦେ ତୋହୋରେ ଜୀଇଂବ ବାଳକ ।୨୪୭ ।
କହିତେ କରି ଯେବେ ତୁମ୍ଭେ ଦେବ ଅମୃତ ଯେ ଦୃଷ୍ଟି
ଯେହ୍ନକ୍ଷଣି ଜୀଇଂବ ହରି ବାଳୁତ ପୁତ୍ରଗୋଟି । ୨୪୮ ।
ଆହ୍ମଙ୍କୁ ଯେ ବୋଲ ସୋମବଂଶର ପୁତ୍ରଗୋଟି
ତୁମ୍ଭେ ଦୟା କରିବ ଯଦ ସୋମବଂଶ ଗୃହଯୁଗେ ଥିବଟି । ୨୪୯ ।
ଯେହ୍ନେନେକ କରି କହାଇଲୁ ତୁ ନିରାଶ
ବାପୁ ବଚନତ ଯେବେ କରୁଛୁ ପୀତବାସ । ୨୫୦ ।
ସୋହୋଦ୍ରା ବିକଳ ଦେଖି ସପ୍ଳଲ ଜନ ଭ୍ରଷି
ଯେବେ ପାଣ୍ଡବନ୍ତ ନିର୍ମୋହ ହୋଇଲେ ହୃଷୀକେଶି । ୨୫୧ ।
ତୁ ଦେବ ଜଗତ କାରଣ ଜନାର୍ଦ୍ଦନ
ତୁହି ସୃଷ୍ଟି କରତା ତୁହି ସେ ଜଗତ ଜୀବନ । ୨୫୨ ।
ଯଦ ଅସ୍ଥି ମାଂସ ଯାଇ ପଡଇ ହାତେ ଲୋଟି
ଅମୃତ ଦୃଷ୍ଟିରେ ଗୃହ୍ନିଂଲେ ଜୀଅଂଇ ପୁତ୍ରଗୋଟି । ୨୫୩ ।
ଆହ୍ମେ ଚଇତନ ବାରତା ପାଇଲେ ଦ୍ରୋପତୀ କୋଇନ୍ତୀ
ସେ ଯାଇଂ ପ୍ରବେଶ ହୋଇଲେ ସୋହୋଦ୍ରାର କତି । ୨୫୪ ।
ଆହ୍ମେ ଚଇତନ କୋନ୍ତା ଦ୍ରୋପତୀ ଯଶୋଦା ଦେବୀଂକ କ୍ରୋଧବାଣୀ
ପର୍ବତୁଂ ପାଷାଣ ଝଡିବ ତାହାଂକ ରୋଦନ ଶୁଣି । ୨୫୫ ।

---

୨୫୨ { ତୁ ଦେବ ଜଗତ ଜୀବନ ବାସୁଦେବ
ତୁ ସୃଷ୍ଟିଲୁ ଦେବ ସଫଳେ ଜନ ଜୀବ । (ଙ, ଥ)

ଯୁଦ୍ଧେଷ୍ଟି ଭୀମ ଅର୍ଜ୍ଜୁନ ନକୁଳ ସହଦେବ
ତହିଁ ପ୍ରବେଶିଲେ ଯାଇ ପଞ୍ଚୁ ଯେ ପାଣ୍ଡବ । ୨୫୬ ।
ଯାଇଁ ଦେଖିଲେ ପୁନ ପ୍ରାଣତ୍ୟାଗ କୁଳବଧୂ
ପାଣ୍ଡବେ ମୂର୍ଚ୍ଛାଗତ ଯେ ସୋଦ୍ଦୋଦ୍ରା କାନ୍ଦୁ କାନ୍ଦୁ । ୨୫୭ ।
ଯୁଦ୍ଧେଷ୍ଟି ଭୀମ ଅର୍ଜ୍ଜୁନ ସହଦେବ ନକୁଳ
ସବୁଂକର ନୟନୁ ବହଇ ଅଶ୍ରୁ ଜଳ । ୨୫୮ ।
ଯୁଦ୍ଧେଷ୍ଟି ବୋଇଲେ ଦଇବ ତୋହୋର ଯେହ୍ନେକ ଗତ
ଧର୍ମେ ଆଶ୍ରେ କର ମୁଂ ନ ଦେଖିଲି ପୁନନାଥ । ୨୫୯ ।
ହର ସୋଦରନ୍ତ ନାଶକଲ୍ଲ ରାଜ୍ୟଭର ନିମନ୍ତେ
ଆମ୍ଭର ବଂଶ ବୁଡ଼ଲ ହର ଜୀବନ କସ ଅର୍ଥେ । ୨୬୦ ।
ଯୁଦ୍ଧେଷ୍ଟି ଦେବ ବୋଇଲେ ତୁମ୍ଭେ ଶୁଣ ନରନାରାୟଣ
ଜନ୍ମେ ଜନ୍ମେ ଆମ୍ଭେ ତୋହୋରେ ଶରଣ । ୨୬୧ ।
ହର ଦୟାସାଗର ତୁ ଯେ ଭକତମହଲ
ତୋହୋର ଆଶ୍ରେକେ ହର ଆମ୍ଭର ବଳଦର୍ପ ସବୁକାଳ । ୨୬୨ ।
ହର କେଉଣ ଅଭଗତେ ହେଲୁ ତୁ ନିର୍ଦ୍ଦୟେ
ତେଣୁ ସେ ଆମ୍ଭର ଯେ ବଂଶ ଗଲା କ୍ଷୟେ । ୨୬୩ ।
ଅର୍ଜୁନ ବୋଇଲେ ଆମ୍ଭନ୍ତ ଘେନିଅଇଲୁ ରକ୍ଷାକରିବୁ ବୋଲି
ତୋତେ ଆଶ୍ରେ କର ହର ବଂଶନାଶ କଲି । ୨୬୪ ।
ମୃତପିଣ୍ଡ ଗୋଟି କୋଳେ ଧଇଲେ କୋଇନ୍ତୀ
ବଦନ ନିରେପି ବାହୁନନ୍ତ ଦ୍ରୋପତୀ । ୨୬୫ ।
ଦେବକୀ ଯଶୋଦା ଯେ ଅନେକ କ୍ରୋଧ କରି
ନନ୍ଦ ଉପନନ୍ଦ ଉଗ୍ରସେନ ଆଦି କରି । ୨୬୬ ।
କୃଷ୍ଣର ବତଶ ସହସ୍ର ନାରୀ ଅଷ୍ଟ ପାଟବଂଶୀ
ମହୋକ୍ରୋଧଭରେ ଯେ ବେଢିଲେ ସର୍ବେ ଆସି । ୨୬୭ ।
ସମସ୍ତେ ବିଚାର କରନ୍ତି ମନେ ମନେ ଗୁଣି
କେବଣ ବିଚାର ଯେହ୍ନା କଲେ ଚକ୍ରପାଣି । ୨୬୮ ।
ଯେବେଣ ଭୁବନରେ ନାହିଁ ଜରା ରୋଗ ବ୍ୟାଧି
ଯେତେକାଳେ ଯମ ଯେଥି କର୍ମେ କଲକ ଅବଧି । ୨୬୯ ।

ସମସ୍ତେ ରୋଦନ ଯେ କରନ୍ତି ବିକଳେ
ଦ୍ୱାରିକା ପୁର ଛାଡ଼ିବା ହୋ ବିପତ୍ତି ପଡ଼ିଲା ଯେତେକାଳେ । ୨୭୦ ।

ବହୁତ କୁଟୁମ୍ବ ଯହୁଁ ଦ୍ୱାରିକାରେ ବ୍ୟୂହ
ତେଣୁ କରି ହରି ଦ୍ୱାରିକାକୁ ଛାଡ଼ିଲେ ସେନେହ । ୨୭୧ ।

କି ଅବା କେବଣ ମାୟାକଲେ ପୁରୁଷୋତ୍ତମ
ପୂର୍ବ ମହତ ବାରୁ ଉଦିତ ହୋଇ ଧର୍ମ । ୨୭୨ ।

କେ ବୋଲଇ କୃଷ୍ଣର କୋପ ଅଛଇ ପାଣ୍ଡବନ୍ତ
କେ ବୋଲଇ ମାୟାଧର ମାୟା କରିଅଛି ମନ ବଢ଼ିବାକୁ । ୨୭୩ ।

କେ ବୋଲଇ କୃଷ୍ଣର ଅର୍ଜୁନକୁ ଅଛି କୋପ
ଶତଧନୁ ରଖି ହରିଲା ଯେ ନାରାୟଣ ଦର୍ପ । ୨୭୪ ।

କେ ବୋଲଇ ଅର୍ଜୁନ ସୋହୋଦ୍ରାକୁ ହରିନେବାର ବେଳେ
ବହୁତ ଅପମାନ ତହୁଁ ପାଇଲେ କାମପାଳେ । ୨୭୫ ।

ଶ୍ରୀକୃଷ୍ଣର ନାମେ ସମସ୍ତେ ହେଲେ ଅପଛାଡ଼
ଯେ ମାୟାକୃତଯାକ ଯେ ଅଟଇ ଶ୍ରୀପତ । ୨୭୬ ।

ସେ ରାଗ ଖଣ୍ଡିକ ହରି ଧରିଅଛି ହୃଦେ
ତେଣୁକରି ପୁନ ମୃତ୍ୟୁଗତ ହୋଦେ । ୨୭୭ ।

ଅନେକ କାଳର ଭୁବନ ଦ୍ୱାରବତୀ
ଗୋବିନ୍ଦଙ୍କ ନାମେ ସମସ୍ତେ ହେଲେ ଅପଛାଡ଼ । ୨୭୮ ।

ସୋହୋଦ୍ରା ବୋଇଲେ ହରି ସାବଧାନେ ଶୁଣ
ତୋହୋର କଲା କୃତ ପୁଣ ନୋହଇ ସେ ଆନ । ୨୭୯ ।

ନନ୍ଦ ବସୁଦେବ ଉଗ୍ରସେନ ଯାଦବ
ସବୁରି କ୍ରୋଧ ବଇକୁଣ୍ଠ ଦେଖନ୍ତି ବାସୁଦେବ । ୨୮୦ ।

---

୨୭୦।୨ ଦ୍ୱାରିକା ପୁରକୁ ଧର୍ମ ଛାଡ଼ିଲା ଯେତେକାଳେ । (ଖ,ଠ)

୨୭୧।୧ ବହୁତ କୁଟୁମ୍ବ ଯହୁଁ ଦ୍ୱାରିକାରେ ସମୂହ । (କେତେକ ପୋଥି)

୨୭୨।୧ { ପିଣ୍ଡୁ, ଫେଡ଼ି ମହତ ବାକ୍ୟ (ବାଞ୍ଛା) ଉଦିତ ହୋଇ ଧର୍ମ । (ଘ,ଜ,ଥ)
{ ପୂର୍ବ ବଞ୍ଚାଇବେ ଅବା ହୃଦେ କରି ଧର୍ମ । (ଥ)

ସକଳ ଜନ କ୍ରୋଧ ଦେଖି ଅର୍ଜୁନ ବୋଇଲା
କୁରୁ ପାଣ୍ଡବ ଯୁଦ୍ଧେ ଅନେକ ସଇନ ମଲା । ୨୮୧ ।
ଘଟଉତ୍କଟ ପଡ଼ିଲା ମଲା ଅଭିମନ୍ୟୁ
ଲକ୍ଷ୍ମଣ କୁମାର ପଡ଼ିଲା ପାଞ୍ଚାଳୀର ପାଞ୍ଚତନୁ । ୨୮୨ ।
ଯେ୍ତେ ପୁତ୍ରର ପ୍ରାଣତ୍ୟାଗ ହୋଇଲା ଯେତେବେଳେ
ରକ୍ତତଳେ ବୁଡ଼ିଲା ସୋମବଂଶ ଇହକାଳେ । ୨୮୩ ।
ସ୍ୱାମୀ ଉଭୟ କୁଳକୁ ଯେ ପଡ଼ିଲା କଷଣ
ଯେ୍ତେ କଷଣୁଂ ରଖିଲ୍ଲା ତୁହି ସେ ନାରାୟଣ । ୨୮୪ ।
ଅର୍ଜୁନ ବୋଇଲା ସ୍ୱାମୀ ବାଗୁଯେ୍ତକ ପିଠୁ
ନିଦ୍ରାଗତ ପ୍ରାଯେ୍ତକ ହୋଇ ବାହୁଡ଼ ପୁତ୍ର ଉଠୁ । ୨୮୫ ।
ଯୁଦ୍ଧେଷ୍ଟି ଦେବ ବୋଇଲେ ହରି ଅଗୋଚର ନୁହେଂ ତୋତେ
ରକ୍ଷା କରିବୁ ବୋଲି ଯେ ଦ୍ୱାରକାକୁ ଆଣିଲୁ ମୋତେ । ୨୮୬ ।
ଆନ ଠାବେ ଯେବେ ହୋଅନ୍ତାନା ମୃତ୍ୟୁ
ଜନ ମୁଖେ କର୍ମେ ଅପଛାଡ଼ ଶ୍ରୀକୃଷ୍ଣ ପାଆନ୍ତୁ । ୨୮୭ ।
ତୋ ଅଶକ୍ୟ ଯେବେ ହୋଇଲାକ ହରି
ଆବର ପାଣ୍ଡବନ୍ତ ପାଇବୁ କାହିଂ ଲୋଡ଼ି । ୨୮୮ ।
ଯୁଦ୍ଧେଷ୍ଟି ଦେବ ବୋଇଲେ କର ଚିତା ଆରୋପଣ
ପୁତ୍ର ଘେନି ଆମ୍ଭେ ଦହନ ହୋଇବୁଂ ପାଞ୍ଚଜଣ । ୨୮୯ ।
ଛାଡ଼ିଲୁ ରାଜ୍ୟଘର ହୋଇଲୁଂ ନିରାଶ
ନିକଟ ନୋହୁଇ ସମୋଦ୍ର ନୋହିଲେ ବଣଅନ୍ତୁ ବାସ । ୨୯୦ ।
ସ୍ୱାମୀ ପନ୍ନଗ ଭକ୍ଷଣେ ଗରୁଡ଼ଆ ମୁଖ ଗୃହିଂ
ତେସନେକେ ପ୍ରାଯେ୍ତ ଦେବ ହୋଇଅଛୁ ତୁହି । ୨୯୧ ।

---

୨୮୧।୧ ସପ୍ତଳ ଜନ କ୍ରୋଧ ଦେଖି ଅର୍ଜୁର ବୋଇଲା । (ଝ,ଟ)

୨୮୩ { ଯେ୍ତେ ପୁତ୍ରଗୋଟିର ପାଣ ଯେତେବେଳେ ଗିବ
{ ବୁଡ଼ିଲା ସୋମବଂଶ ଆଉ କସ ଥିବ । (ଝ,ଟ)

୨୮୪ ଯେ୍ତେ ଦୁସହ ସଙ୍କଟୁ ନାଥ ତୁହି ସେ ଉଦ୍ଧାରଣ । (ଡ଼,ଥ)

୨୮୯ { ଚିତା ଆରୋପଣ କର ତୁମ୍ଭେ ବେଗି
{ ପୁତ୍ରଗୋଟି ଘେନି ପାଞ୍ଚେହେଂ ଉଦବେଗି । (କେତେକ ପୋଥି)

ସ୍ୱାମୀ ସମ୍ମୂଳ ସଂସାରେ ସମସ୍ତେହେଂ ହୋଇବେ ମୃତ୍ୟୁ
ଯେବେ ତୋହୋର ଆଗ୍ୟାଂରେ ବାଳୁତ ପୁଅ ବଂଚୁ । ୨୯୨ ।
ଯେଥିଲୁ ଯେବେ ଚିନ୍ତା ନ କରବୁ ଦେବରାଜ
ଆମ୍ଭର ବଂଶ ବୁଡ଼ଲେ ତୁମ୍ଭନ୍ତ ହୋଇବ ଲଜ । ୨୯୩ ।
ଆମ୍ଭେ ଯେବେ ଇନ୍ଦ୍ରପ୍ରସ୍ଥେ ରହୁଥାଆନ୍ତୁ
ପାପହିଂ ହୋଉ କ ପୁଣ୍ୟହିଂ ହୋଉ କର୍ମ ବୋଲି ଆଦରନ୍ତୁ । ୨୯୪ ।
ଭଗ୍ନୀଜାର ପୁତ୍ର ତୋର ଗର୍ଭୁଂ ମୃତ୍ୟୁ ଜାତ
ସଂସାରେ ଅପଛାଡ ତୋତେ ଯେ ବହୁତ । ୨୯୫ ।
ତାରଣ କର ନାଥ ଅଧ୍ୱ ପଡ଼ିଲ ଫିଟି
ଅମୃତ ଦୃଷ୍ଟିରେ ଗୃହ୍ଣିଂ ପୁତ୍ର ମୋ ଜୀଇଂ ଉଠୁ । ୨୯୬ ।
ଯୁଧିଷ୍ଠି ଦେବ ବଇକୁଳ ଦେଖିଣ ଜଗନ୍ନାଥେ
ବଦନ ହେଠମାଥ ଦେବ ଦୃଷ୍ଟି ଅନୁମତେ । ୨୯୭ ।
ଅର୍ଜୁନ ବୋଇଲେ ସ୍ୱାମୀ ଛାଡ଼ମେଲ ମୋହୋର ରାଗ ଦୋଷ
ଅନୁଗ୍ରହ କର ନାଥ ରକ୍ଷାକର ମୋର ବଂଶ । ୨୯୮—୧୦୮୩ ।

---

## ଶ୍ରୀକୃଷ୍ଣଙ୍କ ଦ୍ୱାରା ପରୀକ୍ଷିତଙ୍କ ଜୀବଦାନ

ଶ୍ରୀକୃଷ୍ଣ ବଦନ ଗୃହ୍ଣିଂ ଦେବକୀ ବୋଇଲେ
ହରି ତୋହୋର ନାମ୍ଯେ ଯେ ସମସ୍ତେ ଅପଛାଡ ଦିଲେ । ୧ ।
ବାବୁ ଯେ ବାଳୁତ ବ୍ରତବାକୁ ଅଛୁ ଯେବେ ବୁଦ୍ଧି
ଶୂନ୍ୟେ ଦୃଷ୍ଟି ହୋଉ ଅମର ମଉଷଧି । ୨ ।
ଆପଣା କୋଳେ ଲଇ ଗୃହ୍ଣାଂ ଅମୃତ ଦୃଷ୍ଟି
ସଂସାରେ ଧନ ହୋଉ କୁମର ବସୁ ଉଠି । ୩ ।
ମାତାଂକ ବଚନେ ସନ୍ତୋଷ ଦେବସ୍ୱାମୀ
ବସ୍ତୁରିଲେ କେଶବ, ମୋତେ ଅପଛାଡ ଦିଲେ ଆଣି । ୪ ।

---

୩।୨ ଜନ ମୁଖେ ସାଧୁ ଧ୍ୱନି ଉଠୁ ପୁତ୍ର ଆନନ୍ଦେ ବସୁ ଉଠି । (ଜ)

୧।୨ ଅପଛାଡ—ଅପକ୍ଷାତ ।

୩।୨ ଧନ—ଧନ୍ୟ ।

ସ୍ତୁଷ୍ଟେଁ ବଇକୁଣ୍ଠ ଦେଖିଣ ଦେବହର
ମୃତପିଣ୍ଡ ଗୋଟିକି ଯେ କୋଳ କର ଧର । ୫ ।
ଆପଣେ କେଶବ ତୋଳି ଧଇଲେକ କୋଳେ
ଅଧର ଆଡ଼ଂଷୁଛନ୍ତ ଦେବକୀର ବାଳେ । ୬ ।
ଶୁଣ ବଇବସୁତ ମନୁ ବଦନ୍ତ ଅଗସ୍ତି
ସମସ୍ତଂକ ବଚନେ କୃଷ୍ଣ ହୋଇଲେ ପରମ ଶାନ୍ତ । ୭ ।
କୋଳରେ ଧଇଲେ ପ୍ରଭୁ ମୃତୁପିଣ୍ଡ ଗୋଟି
ଶରୀର ଆଶ୍ୱାସନା କର ଗୃହ୍ନଂଲେ ଅମୃତ ଦୃଷ୍ଟି । ୮ ।
ବଦନ ଦିଶଇ ତାର ନିର୍ମଳ ଚନ୍ଦ୍ର ଜାଣି
ସେ୍ୱକଳ୍ପ କର ଗୃହ୍ନଂଲେ ଦେବ ଚକ୍ରପାଣି । ୯ ।
ସୁମରନ୍ତ ଦଧିବାବନ ଅଣାକାର
ଯେବେ ମୃତ୍ତୁ ମଣ୍ଡଳେ ମୋର ମନୁଷ୍ୟ ଅବତାର । ୧୦ ।
ଯେବେ ମୁହିଂ ଶ୍ୱପ୍ନରେ ଭଗତ ନାମକର୍ମେ
ମୋର ନିତକର୍ମେ ଥାଇ ଗ୍ରାଷଇ ଯେବେ ଧର୍ମେ । ୧୧ ।
ପର ଉପୁଗାର ଯେବେ ମୁହିଂ କରଇ ଚିତ୍ତେ
ପରଦାରୀ ପର ଉପହ୍ରାସ ନାହିଂ ଯେ ଯୁଗତେ । ୧୨ ।
ବେଦ ମନ୍ତ୍ର ଶାସ୍ତ୍ରେ ଯେବେ ଆନନ୍ଦିତ କର୍ମେ
ଯେବେ ମୋତେ ଧୀରଜନ ଭଗତ କର ମର୍ମେ । ୧୩ ।
ମୁହିଂ ଯେବେ ଗୋବର୍ଦ୍ଧନ ଧରଇ ସର୍ବକାଳେ
ଯେବେ ଗୋବର୍ଦ୍ଧନଧାରୀ ନାହିଂଟି ସଯ୍ୱଳେ । ୧୪ ।
ଯେବେ ତ୍ରଇଲୋକ୍ୟ ଆତଯାତ କରଇ ମହୀଧର
ତେଣୁ କର ନାମଗୋଟି ଯେବେ ମହୀଧର । ୧୫ ।
ଯେବେ ମୁହିଂ ନରେ ନାରାୟଣ ମମ ନାମ
ଯେବେ ମୋର ବ୍ରାହ୍ମଣେ ଆନନ୍ଦିତ ମନ । ୧୬ ।
ଯେବେ ମୁହିଂ ନିରାକାରେ ରାତ୍ର ଦିବସ ଭଜଇ
ମମ କର୍ମେ ଯେବେ ପରେ ନିରାଶ ନ କରଇ । ୧୭ ।
ମୁହିଂ ଯେବେ ହିଂସା ପରେ ନ କରଇ
ଯେବେ ବେଦ ମନ୍ତ୍ର ଶାସ୍ତ୍ରେ ଆନନ୍ଦିତ ଅଛଇ । ୧୮ ।

ଯେବେ ମୁଂ ନିନ୍ଦଇ ପାପୀଲୋକ ମନ୍ଦକର୍ମ ଗତ
ଯେବେ ମୁହିଂ ଧୀରଜନ ପଣ୍ଡିତେ ଭଗତ । ୧୯ ।
ଜପୀ ତପୋଧନେ ଆନନ୍ଦିତ ମନ
ସାବଧାନେ ସୁଗ୍ୟାନେ ନ ପଶନ୍ତି ଯେବଣ ଜନ । ୨୦ ।
ତାହାଂକୁ ହୃଦେ ଯେବେ ଅଛୁଟି ମମଗ୍ୟାନ
ପ୍ରାତକାଳେ ସ୍ନାହାନ କରନ୍ତି ଯେବଣ ଜନ । ୨୧ ।
ତାହାଂକର ହୃତେ ଥାଇ ଯେବେ ବସି
ଯେବଣ ଜନ ହୋଅନ୍ତି ତୀର୍ଥବାସୀ । ୨୨ ।
ସେ ଲୋକ ମୋହୋର ହୃଦରେ ପଶନ୍ତି
ମୁକତ ଗତ ଅର୍ଥେ ଯେବେ ହୁଅନ୍ତି ପଥଶ୍ରାନ୍ତି । ୨୩ ।
ତାହାନ୍ତ ଯେବେ ସୁଲଭ ଥାଇଟି ମୋର ମନେ
ହରି ଉପବାସ କରନ୍ତି ଯେବଣ ଜନେ । ୨୪ ।
ଅନୁବ୍ରତେ ଚନ୍ତା ଯେ କରଇ ମମଗ୍ୟାନେ
ସେ ଲୋକ ଯେବେ ମୋ ପଞ୍ଚଅମ୍ଭାନେ । ୨୫ ।
ବିବାଦ କର୍ମେ ନ ଲଙ୍ଘନ୍ତି ସୀମା
ବେନ ବାଦେ ଯେହ୍ନେ ନୋହୁଇ ଆଗଳମା । ୨୬ ।
ମେଡ଼ ମଣ୍ଡୋପ ପୁଷ୍କରଣୀ ଯେହୁ ଦିଅନ୍ତି
ସେ ଲୋକଂକଠାରେ ଯେବେ ଥାଇ ଚତ୍ତ ବୃତ୍ତି । ୨୭ ।
ବ୍ରାହ୍ମଣ ହୋଇ କି ଶୁଦ୍ର ହୋଉ ଅବା
ଭକ୍ତକ ହୋଉ ଯେବେ ମୋରଠାରେ ସେବା । ୨୮ ।
ଦୁଷ୍ଟ ଜନନ୍ତ ଦେଖି ଯେବେ କରଇଂ ଭୟେ
ଧର୍ମ ଶାହାସ୍ତ୍ର ପଣ୍ଡିତଜନନ୍ତ ଯେବେ କରଇ ସଦୟେ । ୨୯ ।
ସତୀ ପ୍ରସଙ୍ଗେ ଯେବେ ମମ ପ୍ରକୃତ
ରଜ ମୁଖେ ଯେବେ ଚଳଇ ପୃଥୀ । ୩୦ ।
ହୃଦରେ ଚନ୍ତା ମୋହୋର ପ୍ରତଲୋକନ୍ତ ନିତ । ୩୧ ।
ଅବଦକେ ଯେବଣ ଲୋକେ କରନ୍ତି ବାସ୍ତରି ଉପବାସ
ସେ ଲୋକନ୍ତ ଦେଖିଲେ ମନେ ପାଇଥାଇ ପ୍ରାସ । ୩୨ ।

୨୪।୨ ହରି ଉପବାସ—ଶ୍ରୀଏକାଦଶୀ ବ୍ରତ ।
୧୧।୨ ନିତକର୍ମ—ନିତ୍ୟକର୍ମରେ

ମମ ନାମ ସଂକେତ ଯେହ୍ନ କରଇ ଚିନ୍ତା
ଆହାର ମଇଥୁନ ନିଦ୍ରା ନାହିଂ ସେ କରନ୍ତା । ୩୩ ।
ଜନନ୍ତ ଆଦରଣେ ଯେବେ ଜନାର୍ଦ୍ଦନ ନାମ
ପୁରୁଷମାନନ୍ତ ପାରକରଇ ପୁରୁଷୋତ୍ତମ ମୋର ନାମ । ୩୪ ।
ନରକ ତାରଣ ମୋର ନାରାୟଣ ନାମ
ପରମାତ୍ମୁଂ ତାରଇ ଯେବଣ କୃଷ୍ଣ ନାମ । ୩୫ ।
ପରଂକୁ ଶିଖାଦେଇ ଯେବେ ଶ୍ରୀରାମ ମୋର ନାମ
ପର ଦୁଖେ କରେ ମୁଂ ପରକୁ ପରସନ୍ନ । ୩୬ ।
ପର ଦୁଖ ଯେବେ ମୁଁ ନୁଆରଇ ଦେଖି
ସଦାୟେ ଚିନ୍ତା ମୁହିଂ କରଇ କଇମାଖୀ । ୩୭ ।
କରମେ ଯେବଣ ଜନେ ହୁଅଇ ଆବଦ୍ଧ
ମୁହିଂ ବିଶ୍ରାମଇ ଯେ ତାହାଂକର କନ୍ଧ । ୩୮ ।
କମର୍ଯ୍ୟାଦାରେ ଯେବେ ନ ଗ୍ଭଡଇ କ୍ଷଣେ
ଅଚ୍ଛବ ଲୋକଂକର ତୁଲେ ମୁଂ ଥାଇ ତେଣେ । ୩୯ ।
ଜଗତ ଉଦ୍ଧାର ଜଗନ୍ନାଥ ମୋର ନାମ
ମୁହିଂ ପାଳଇ ଯେବେ ସକଳ ଲୋକଧର୍ମ । ୪୦ ।
ମୁହିଂ ଯେବେ ଅଟଇ ଜଗତ ଜନ ବନ୍ଧୁ
ଭଗବାନ ନାମ ମୋର ପ୍ରଳୟ ତାରଣ ସିନ୍ଧୁ । ୪୧ ।
କୀର୍ତ୍ତି କରମ କରଇ ଯେବେ ଅକୀର୍ତ୍ତି ଜନେ
ଯେତେ କଥାରେ ଥାଇ ଯେବେ ମୋର ମନେ । ୪୨ ।
ମୁହିଂ ଯେବେ ଗୋଧନ ତାରଇ ସର୍ବକାଳେ
ଗୋବର୍ଦ୍ଧନ ନାମ ମୋର ଅଟଇ ସଫଳେ । ୪୩ ।
ମୁହିଂ ଯେବେ ଆତଯାତ କରଇ ସମସ୍ତ ମହୀର
ତେଣୁକର ନାମ ମୋର ଅଟଇ ମହୀଧର । ୪୪ ।
ସାଧୁୟେ ମନେ ଯେବେ ଚିନ୍ତନ୍ତ ସର୍ବକାଳେ
ତେଣୁ ମାଧବ ନାମ ମୋର ବିଦିତ ସଫଳେ । ୪୫ ।
ମୁହିଂ ଯେବେ ସଂସାର ଜନ ଚିନ୍ତାୟେ ଥାଇଚି
ତେଣୁ ମୁଂ ବହଇ ସୁଦର୍ଶନ ଚକ୍ରଗୋଟି । ୪୬ ।

ଚକ୍ରଧର ନାମ ଯେବେ ମୋହୋର ସତ
ଲେଉଟି ଜୀବନ ପଶୁ ଜୀଉଂ ଯେ ବାକ୍ରୁତ । ୪୭ ।
ଆହୋ ଚଇତନ ପୁତ୍ର କୋଳେ ଧରି ଦଅନ୍ତ ଚୁମ୍ବନ
ଅମୃତ କରିଣ ସେ ଗୃହାନ୍ତ ନୟନ । ୪୮ ।
ହେ ପିତାମହ ବଗୃର ତୁମ୍ଭେ ଯେହା
ବଂଶ ବୁଡିଲା ସଂସାରେ ରକ୍ଷିବୁ ତୁ କାହା । ୪୯ ।
ମୁହିଂ ଯେବେ ତୋହୋର ବଚନେ ପ୍ରଜାପତି
ଜଗପାଳ ହୋଇ ଯେବେ ମୁଂ ମାନବେ ଉତପତ୍ତି । ୫୦ ।
ମୁଂ ଯେବେ ଉତପତ୍ତି ଭାର ନିବାରଣେ
ଜନ୍ମେ ଜନ୍ମେ ଜାତ ହୋଇ ନର ନାରାୟଣେ । ୫୧ ।
ଯେବେ ମୁହିଂ ମଛ କୂର୍ମ ବରେହା ଅବତାର
ନୃସିଂହ ବାମନ ପ୍ରଶୁରାମ ଆବର କୋଦଣ୍ଡଧର । ୫୨ ।
ଯେବେ ମୁଂ ଅବତାର ଅବମାର ଛଳେ
ଯେବେ ମୋ ଦଶ ଅବତାର ସର୍ବକାଳେ । ୫୩ ।
ଯେବେ ମୋହୋର ପିତା ଭଗତ ସର୍ବଦାୟେ
ଅଣାକାର ନାଥକୁ ଯେବେ ମୋହୋର ଥାୟେ ଧାୟେ । ୫୪ ।
ମୁହିଂ ଯେବେ ସକଳ ଦେବଂକର ମୁଖ୍ୟପାନ
ଯୋଗୀଜନଂକର ମୁଂ ଧ୍ୟାନରେ ଦରଶନ । ୫୫ ।
ଯେବେ ମୋ ଦେବ ବ୍ରାହ୍ମଣେ ଅଛଇ ଭଗତ
ଯେବେ ସଂସାର ଜନନ୍ତ ପାଳଇ ମୁଂ ନିତ । ୫୬ ।
ଯେବେ ମୁଂ ପୃଥୀକି ଅନୁବ୍ରତେ କରେ ଚନ୍ତା
ଯେବେ ମୁଂ ଭଗତ ଜନନ୍ତ ଉଦ୍ଧାରନ୍ତା । ୫୭ ।
ଜପ ମନ୍ତ୍ର ଧର୍ମେତ ବ୍ରତନ୍ତ ଯେତେ ପ୍ରାଣୀ
ଯେବେ ମୁହିଂ ତାହାଂକର ଅପାଦ ସେ ଖଣ୍ଡଇ ବେଳ ଜାଣି । ୫୮ ।
ଯେବେ ମୁଂ ଥାଇଟି ଜନ୍ତୁ ହୃଦଗତେ
ପରଦୁଖେ କାତର ମୁଂ ସର୍ବଦା ଯେବେ ନିତ୍ୟେ । ୫୯ ।
ଯେବେ ମୁଂ ରକ୍ଷ ଭକ୍ଷକୁ ମାଇଲା ଧର୍ମ ଯୁଦ୍ଧେ
ହେତ ପ୍ରହେତ ନାଶିଲ ପିତାମହର କ୍ରୋଧେ । ୬୦ ।

ଆକାଶ ମନ୍ଥିଲେ ଯେବେ ମାଳୀ ଯେ ସୁମାଳୀ
ମୁହିଂ ତାହାନ୍ତ ବଧ କରି ଉଦ୍ଧରିଲି ମହୀସ୍ଥଳୀ ।୬୧।
ଜଗୁଜନ ସୋଦର ଯେବେ ଜଗନ୍ନାଥ ମୋର ନାମ
ଧର୍ମ ଅର୍ଥ· କାମ ମୋକ୍ଷ ଯେବେ ହୁଅଇ ଚତୁର୍ବର୍ଗ ଧର୍ମ ।୬୨।
ପୃଥୀ ଉଦ୍ଧାରଣ ନିମନ୍ତେ ଯେବେ ଧରଣୀ ଧରଇ ମୁହିଂ
ସମୂଳ ଜନ ନିମନ୍ତେ ଯେବେ ଭୁଭରି ବହି ।୬୩।
ପୃଥୀ ଆପ ତେଜ ବାୟୁବ ଆକାଶ
ଯେ ପଞ୍ଚ ଧାତୁକୁ ଯେବେ ମୋହୋର ପ୍ରକାଶ ।୬୪।
ଜନ୍ମେ ଜନ୍ମେ ଯେବେ ଦୁର୍ଜନ ଲୋକଂକ ଗର୍ବଗଞ୍ଜା
ଭଗତ ଜନ ମଣ୍ଡଳ ମୁଂ ଯେବେ ଦେବାଧି ଦେବରାଜା ।୬୫।
ମୁହିଂ ଯେବେ ନିକଳଂକ ଯେକାଦଶବେଦୀ
ମମ ଅର୍ଥେ ଭଗତରେ ଯେବେ କାର୍ଯ୍ୟ ଅଛଇ ସିଦ୍ଧି ।୬୬।
ଯେବେ ମୁହିଂ ଯେକ ମାତା ଯେକ ପିତାଯେ ଜାତ
ଯେବେ ମୁହିଂ ମାତା ପିତାଯେ ଗୁରୁଜନରେ ଭଗତ ।୬୭।
ନର୍କୁଂ ଉଦ୍ଧାରଣ ଯେବେ ଅଛଇ ନାରାୟଣ
ଅନାଥ ଜନଂକର ଯେବେ ଭଗତ କାରଣ ।୬୮।
ଅଥବା ଯେ ଯାହାର ବ୍ରତ ଧର୍ମେ ବ୍ରତନ୍ତ ଯେତେ ପ୍ରାଣୀ
ତାହାଂକର ଚିନ୍ତା ଯେନ ମୋ ନାମ ଚିନ୍ତାମଣି ।୬୯।
ଯେବେ ମୁହିଂ ପିତାମହ ବିକଳେ ଶଙ୍ଖାସୁର ଦର୍ପ ଗଞ୍ଜି
ଅବନୀ ଛଳେ ଯେବେ ହିରଣ୍ୟ ହିରଣାକ୍ଷ୍ୟ ପକାଇଲି ପିଞ୍ଜି ।୭୦।
ମୁହିଂ ଯେବେ ପାତାଳେ ଚିପିଲିଇଂ ବଳି
ଜଗୁଜନ ମୋହନ ନାମ ମୋର ଯେବେ ବନମାଳୀ ।୭୧।
ଯେବେ ମୁଂ ପ୍ରଶୁରାମ ରୂପେ ଦୁର୍ଭାର ବଳ ଗଞ୍ଜି
ଜାନକୀ ହରଣେ ଯେବେ ବିଶ୍ରବାସୁତ ପିଞ୍ଜି ।୭୨।
ମୁଂ ଯେବେ ରଙ୍ଗା ଅବତାର ହୋଇଲି ମେଦିନୀ
ଅଷ୍ଟମଲ୍ଲ ମୁଳେ କଂସର ପ୍ରାଣ ଘେନି ।୭୩।

---

୭୨।୨     ରାବଣକୁ ମାରି ଯେବେ ସୀତାଙ୍କ ମନ ରଞ୍ଜି । (ଳ)

ଯେବେ ମୋତେ ଯୋଗୀଜନ ମୁନି କରନ୍ତି ଧ୍ୟାୟେ
ବଇକୁଣ୍ଠେ ଠାବ ହୁଅଇ ସଦା ସେ ବିନଯ୍ୟେ । ୭୪ ।
ଯେବେ ମୋତେ ଭଗତ ଯୁଧିଷ୍ଠିର ମହାତମା
ଯେବେ ପାଣ୍ଡବେ ମୋହୋର ଅଟନ୍ତି ପଞ୍ଚ ଆତ୍ମା । ୭୫ ।
ଯେବେ ମୋହୋର ପାଣ୍ଡବନ୍ତ ଅଟଇ ନିକଳଂକ
ଅର୍ଜୁନ ମନ ଆତ୍ମା ଅଟଇ ଯେବେ ମୋର ଯେକ । ୭୬ ।
ଯେବେ ମୁଂହି ନିକଳଂକ ଛତ୍ରେ ପ୍ରଦାନ କରାଇଲି ସୋହୋଦ୍ରାକୁ
ନିକଳଂକେ ସେବା ଯେବେ ବଳଦେବ ଠାକୁରଂକୁ । ୭୭ ।
ଶ୍ରୀବନ୍ତ ଲୋକନ୍ତ ଯେବେ ମୋହୋର ହ୍ରୁଦେ ସୋହୋଦର ଅଛି
ତେଣୁ କରି ନାମ ମୋର ଅଟଇ ଶ୍ରୀବଚ୍ଛି । ୭୮ ।
ଜନଜନ୍ତୁ ରଞ୍ଜନରୁ ଯେବେ ନ ରୁଚଇ ଆନ
ତେଣୁ କରି ନାମ ମୋର ଅଟଇ ଭଗବାନ । ୭୯ ।
ଯହୁ ମୁହିଂ ତୁଳସୀ ବହଇ ମମ ହ୍ରୁଦେ
ଯହୁ ମୁହିଂ ବଳକ ମାଗିଲି ନବଦ୍ୱୀପା ପୃଥୀ ସପ୍ତ ପାତାଳ
ଯେକପାଦେ । ୮୦ ।
ଯେବେ ମୋହୋର ଭୁବନକୁ ନାହିଂଟି ଅପାଦ
ଭଗତ ଜନଂକୁ ଯେ ଧଂସଇ ତାହାକୁ ହ୍ରୁଦରେ ବିଷାଦ । ୮୧ ।
ଯେବେ ଯେମାନ ହାଦେ ଅଟଇ ସତ୍ୟ ସତ୍ୟ
ଯେଥକୁ ସାକ୍ଷ୍ୟ ମୁଂ କଲଇଂ ବିହନ୍ତା ପୁରୁଷନ୍ତ । ୮୨ ।
ଭୋ ଦଶଦିଗପାଳ ତୁମ୍ଭେ ସମସ୍ତେ ହୋଅ ସାକ୍ଷୀ
ପରଦୁଖେ ମୁହିଂ ଯେ ସର୍ବଦା ହୀନଦୁଖୀ । ୮୩ ।
ସର୍ବଦା ପ୍ରାଣୀ ହିଂସା ନ କରେ ମମ ହ୍ରୁଦେ
ତାହା ମୁହିଂ ନ ସହଇ କଥାର ପ୍ରସ୍ତାପେ । ୮୪ ।
ଭାରଥ ଯୁଦ୍ଧହିଂ ମୋର ପାଣ୍ଡବଂକ ହିତେ
ବ୍ରହ୍ମ ଛତ୍ରୀ ବଇଶ୍ୟ ଶୂଦ୍ର ବଧ ଯେହାଂକର ଅର୍ଥେ । ୮୫ ।

---

୭୫।୨ ଯେବେ ପାଣ୍ଡବେ ମୋହୋର ଅଟନ୍ତି ଯେକଆତ୍ମା । (କ)
୭୮।୧ ସୋହୋଦର—ସ୍ନେହ, ଭାତୃଭାବ ।

ଯେବେ ସେ ଯେମାନ ମୋହୋର ଅଛଇ ସତ୍ୟ ସତ୍ୟ
ମମ ଆଷ୍ୟ ଯେନକର ମ୍ରତୁ ଯେ ବାଳୁତ । ୮୬ ।
ଶୁଣ ଆହୋ ଚଇତନ କୃଷ୍ଣର ଯେସନ ବାକ୍ୟ ଶୁଣି
ଜୀବଦାନ ପାଇଲା କୁମର ଚୂଡ଼ାମଣି । ୮୭ ।
ଜୀବନ୍ୟାସ କରି ତାକୁ ଗୃହ୍ନିଲେ ଅମୃତ ଯେ ଦୃଷ୍ଟି
କାୟା ମୋଡ଼ି ଦେଇ ପୁତ୍ର ତତକ୍ଷଣେ କାନ୍ଦ ଉଠି । ୮୮ ।
ନୟନ ନିରେଖି ଯେ ଗୃହ୍ନିଲେ ବାଳ
କର ଚରଣ ହଲଇ ଯେ ତୋଳଇ ବକ୍ଷସ୍ଥଳ । ୮୯ ।
ଦେଖିଣ ଚକିତ ହୋଇଲେ ସର୍ବଲୋକ
ଆତ୍ମା ବନ୍ଧିସିତ ଛାଡ଼ିଲେ ସର୍ବଶୋକ । ୯୦ ।
ପୁତ୍ରଗୋଟି କୋଳେ ବସାଇ ଜଗତଜନ ବନ୍ଧୁ
ତ୍ରଇଲୋକ୍ୟ ଶୁଭିଲା କୃଷ୍ଣ ମହିମା ସାଧୁ ସାଧୁ । ୯୧ ।
ସାଧୁ ସାଧୁ ଧ୍ୱନି ଉଠିଲା ସର୍ବମୁଖେ
ହରଷ ଧ୍ୱନି ଉଠିଲା ପାରଗଲା ସର୍ବଦୁଖେ । ୯୨ ।
ଆହୋ ଦେଖିଣ ସାନନ୍ଦ ହୋଇଲେ ସଭ୍ରଭଦ୍ରେ
କୁମର ଦେଖିବା ନିମନ୍ତେ ବିଜୟେ ଶ୍ରୀରାମଚନ୍ଦ୍ରେ । ୯୩ ।
ବଳଦେବ ବୋଲନ୍ତି ଶ୍ରୀକୃଷ୍ଣର ଅଗୋଚର ମାୟା
ଜଗବନ୍ଦନ ନାଥ ଯେ କଲେକ ସୁଦୟା । ୯୪ ।
ମୃତ୍ତୁପିଣ୍ଡ ଗ୍ରତଲା ସେ ସୋମବଂଶ ହେବ ମୋକ୍ଷ
ପରୀକ୍ଷାରୁ ଉତ୍ତୁରିଲା ଯେହାର ନାମ ଯେ ପରୀକ୍ଷ । ୯୫ ।
ଆହୋ ·ଅନେକ ପରୀକ୍ଷ ସହିଂ କହିଲେ ଶ୍ରୀବନ୍ଧ
ସେ ପୁତ୍ରର ହରି, ନାମ ଦିଲେକ ପରୀକ୍ଷ । ୯୬ ।
ଗ୍ରତ ଉଠିଲା ସେ ଯେ ଅର୍ଜୁନର ନାତି
ନୟନ ଦୃଷ୍ଟିକରି ଗୃହ୍ନିଲେ ଶ୍ରୀପତି । ୯୭ ।
ପୁତ୍ରର ନିଧନେ ଯେ ଉତ୍ତରା ମୋହ ଯାଇଥିଲା
ପୁନରପି ଜୀବ ତାର ନେଉଟି ନ ପଶିଲା । ୯୮ ।

---

୮୮।୨ କୁଆଁରବ ଦେଇଣ ପୁତ୍ର ତତକ୍ଷଣେ ଉଠି । (ଜ)

୯୩।୧ ଦେବକୀ କୋଇଲ୍ୟା ସୁଭଦ୍ରା ଅନେକ ଆନନ୍ଦେ । (ଜ)

ବ୍ରହ୍ମଶର ଘାୟେ ସେ ଯେ ହୋଇଲା ଅଚେତ
ତେଣୁ କରି ପ୍ରାଣ ତାର ହୋଇଲା ନିହତ । ୯୯ ।
ଗଙ୍ଗାନଦୀ କୂଳେ ନେଇ ଆରୋପଣ କଲେ ପଞ୍ଚୁଖାରେ
ମୁଖ ଅଗ୍ନି ଦେଲେ ସେ ପରୀକ୍ଷ କୁମରେ । ୧୦୦ ।
ବାହୁଡ଼ି ପ୍ରବେଶ ହୋଇଲେ ଦ୍ୱାରବତୀ ପୁରେ
ଅର୍ଜୁନର କ୍ରୋଧ କହିଲେ ନ ସରେ । ୧୦୧ ।
ବଧୂ ବଧୂ ବୋଲି ସୋହୋଦ୍ରା କୋନ୍ତା ଦ୍ରୋପଦୀ ରୋଦନ
ପ୍ରବୋଧ କରନ୍ତି ସେ ପ୍ରଭୁ ଭଗବାନ । ୧୦୨ ।
ପୁତ୍ରକୁ ଦେଖି ପ୍ରବୋଧ ହୋଇଲେ ଯୁଧିଷ୍ଠିର
ସାଧୁ ସାଧୁ ବାସୁଦେବ ତବ ନାମ ଗୋଟି । ୧୦୩ ।
ସମୂଳ ଜନ ଚିନ୍ତାମଣି ପୁରୁଷଂକ ଉତ୍ତମ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହାର ଉଦରେ ବିଶ୍ରାମ । ୧୦୪ ।
ଭୂତ ଭବିଷ୍ୟ ବ୍ରତମାନ ସମସ୍ତ ତୁ ଜାଣି
ଉପାୟେ ଭାରଭର ତୁ ନାଶିଲୁ ଚକ୍ରପାଣି । ୧୦୫ ।
ଯଦୁବଂଶ ଶିରୋମଣି ତୁ ଦୁଖୀଜନଂକର ଚିନ୍ତା
ପରମ ଆନନ୍ଦ ସ୍ୱାମୀ ତୁ ଦୁରିତ ଦହନ୍ତା । ୧୦୬ ।
ଗଙ୍ଗା ଗୟା ଗୋଦାବରୀ ଗଣ୍ଡକୀ ବରତରଣୀ
ତୋର ନାମଗୋଟି ସକଳ ତୀର୍ଥେଣ ଚିନ୍ତାମଣି । ୧୦୭ ।
ଦିବା ନିଶି ସାଧୁଜନେ ତୋର ନାମକୁ କରନ୍ତି ଲୟେ
ପରମ ଗତି ଦେଇ ସେ ତୋତେ କରଇ ଧ୍ୟାୟେ । ୧୦୮ ।
ଶ୍ରୀବାସୁଦେବଂକର ଚରଣେ ଦଇନ
ବଦୟନ୍ତି ସାରଳା ଚଣ୍ଡୀ ଦାସ ଶୂଦ୍ରମୁନି । ୧୦୯ ।
ଜୟତୁ ଜଗବନ୍ଦନ ଜୟତୁ ପୀତବାସ
ଜଗତ ଜନ ତାରଣ ଜୟ ହୃଷୀକେଶ । ୧୧୦ ।
ଜୟତୁ ମାଧବ ଯମ ଦର୍ପ ଗଞ୍ଜା
ଜୟତୁ ମାଧବ ପ୍ରସନ୍ନେ ଦେବାଧି ଦେବରାଜା । ୧୧୧ ।
ଜୟତୁ ମାଧବ ପୁରୁଷଂକର ଉତ୍ତମ
ଜୟତୁ ମାଧବ ପ୍ରସନ୍ନ ପରବ୍ରହ୍ମ । ୧୧୨ ।

ଜୟତୁ ମାଧବ ହେ ଶରଣ ଉଦ୍ଧାର
ଜୟତୁ ମାଧବ ସଦୟ ଦଇତାର । ୧୧୩ ।

ଜୟତୁ ମାଧବ ଶରଣ ରକ୍ଷଣ
ଜୟତୁ ମାଧବ ଜଗତ କାରଣ । ୧୧୪ ।

ଜୟତୁ ମାଧବ ମଧୁକଇଟଭ ଦର୍ପ ଗଞ୍ଜା
ଜୟତୁ ମାଧବ କୃତାନ୍ତେକ ବଳଭଞ୍ଜା । ୧୧୫ ।

ଜୟତୁ ମାଧବ ତ୍ରଇଲୋକ୍ୟର ଅଧିପତି
ଜୟତୁ ମାଧବ ହେ ଦଧିବାବନ ମୂରତି । ୧୧୬ ।

ଜୟତୁ ମାଧବ ଯାବତ ଜନ ଜୀବଦାତା
ଜୟତୁ ମାଧବ ହେ ଜଗତଜନ ଉଦ୍ଧାରନ୍ତା । ୧୧୭ ।

ଜୟତୁ ମାଧବ ଯୋଗୀ ପରମ ଯୋଗୀ
ଜୟତୁ ମାଧବ ହେ ସକଳ ଜନ ଶ୍ରେଗୀ । ୧୧୮ ।

ଜୟତୁ ମାଧବ ଅନନ୍ତ ନାମ ଗୋଟି
ଶ୍ରୀଦ୍ରମୁନି ସାରେଳା ଦାସ ତବ ଚରଣେ ଲୋଟି । ୧୧୯—୧୨୦୨ ।

---

ଟେକ୍ସ୍ଟବୁକ୍ ପ୍ରେସ୍ ଭୁବନେଶ୍ୱରଙ୍କ ଦ୍ୱାରା ପୃ ୪୯—ପୃ ୧୦୩ ମୁଦ୍ରିତ ।

# ସୂଚୀପତ୍ର

## ନାରୀ ପର୍ବ



---

# ସାରଳା ମହାଭାରତ

## ନାରୀପର୍ବ

### ପାଣ୍ଡବଙ୍କର ହସ୍ତିନା ପ୍ରବେଶ, ଧୃତରାଷ୍ଟ୍ରଙ୍କର ଶୋକ
### ଓ
### ଗାନ୍ଧାରୀଙ୍କ ନେତ୍ର ଜଳରେ ଦୁର୍ଦ୍ଧଷର ଦହନ

ବଇବସୁତ ମନୁ ଯେ ବାଲ୍ହିଂକ ଦେଶର ରାଜା
ଅଗସ୍ତିଙ୍କ ପାଦପଦ୍ମେ କଲେକ ଦିବ୍ୟପୂଜା । ୧ ।
ପରଂବ୍ରହ୍ମ ତୁମ୍ଭେ ଅଟ ନିରଞ୍ଜନ ଦେବତା
ତବ ଶ୍ରୀମୁଖୁଂ ଶୁଣିମି ମୁଂ ମହାଭାରତ ବାରତା । ୨ ।
ପରୀକ୍ଷ ଜନ୍ମ ହୋଇଣ ଲଭିଲେ ଜୀବତ
ତେଣୁକରି ପରୀକ୍ଷ ନାମ ଦିଲେକ ଜଗତନାଥ । ୩ ।
ଦୁଷ୍ଟ ପରୀକ୍ଷାରୁ ଯତ୍ନଂ ଉପୁଜିଲା ବାଳ
ତେଣୁକରି ପରୀକ୍ଷ ନାମ ହୋଇଲା ଚିରକାଳ । ୪ ।
ସେଥି ଉଦରୁ ଜନ୍ମ ହୋଇଲା ବ୍ରହ୍ମବେତ୍ତ
କହିବା ମୁନି ହେ ସେଥିର ତଦନ୍ତ ବାରତା । ୫ ।
କହନ୍ତି ଅଗସ୍ତି ସେ ପଣ୍ଡିତ ବ୍ରହ୍ମଋଷି
ସାବଧାନ ହୋଇ ଶୁଣ ରାଜା ଶେକପର୍ବର ଉପଦେଶି । ୬ ।
ଶୁଣ ହୋ ବଇବସୁତ ମନୁ ବଦନ୍ତି ସେ ଅଗସ୍ତି
ଉତ୍ତରା ପ୍ରାଣତ୍ୟାଗ ହୋଇଲା ଅଶ୍ୱସ୍ତମାର ଶସ୍ତ୍ରଗତ । ୭ ।
ବାରାନିଧି ତୀରେ ତାର କଲେ ପ୍ରେତକାର୍ଯ୍ୟ
ଶୁଦ୍ଧଶ୍ରାଦ୍ଧ କରି ଉତୁରିଲେ ଦେବରାଜ । ୮ ।
ପଞ୍ଚଦଶ ଦିବସରେ କୃଷ୍ଣଙ୍କର ପାଶେ ବସି
ଯୁଧିଷ୍ଠି ଦେବେ ବୋଇଲେ ଶୁଣିମା ଋଷୀକେଶି । ୯ ।
ସେ ପୁତ୍ର ଗୋଟିକି ଦେବ ପାଳିବାକ ଯତନେ
ସେହାଙ୍କ ବ୍ୟତକେ ବଂଶ ରକ୍ଷଣେ ନାହାଁନ୍ତି ଆନ ଜଣେ । ୧୦ ।

ଅଥବା ଯେହ୍ନାକଇଂ ନ ସମ୍ଭାଳିଲେ ଦେବରାଜ
ବୁଡନ୍ତା ସୋମବଂଶ ଆଉ ନାହିଂଟି କରୁ କାର୍ଯ୍ୟ । ୧୧ ।
ତୁ ଦେବ ସକଳ ଜୀବଂକର ଆତ୍ମା ପଞ୍ଚ ଭୂତ
ତୋତେ ଭଆରିବା ପାଇଂ ମୁଂ କିସ ସାମରଥ । ୧୨ ।
ସର୍ବଦା ବ୍ରହ୍ମିଂ ଆମ୍ଭେ ତୁମ୍ଭନ୍ତ ଆଶ୍ରେ କରି
ଯାଉଛୁ ଇନ୍ଦ୍ରପ୍ରସ୍ଥେ ମୁଂ ଦେଖିବି ଧୃତରାଷ୍ଟ୍ର ଗାନ୍ଧାରୀ ।୧୩।

ଶ୍ରୀକୃଷ୍ଣ ବୋଇଲେ ମୁହିଂ ଯିବଇଂ ଇନ୍ଦ୍ର ଯେ ପ୍ରସ୍ଥେ
କିସ ଉତ୍ତର ତୁମ୍ଭନ୍ତ ଦଅଇ ଧୃତରାଷ୍ଟ୍ର ମହାପାତ୍ୟେ । ୧୪ ।

ପଞ୍ଚ ପାଣ୍ଡବେ ତହୁଂ ପଞ୍ଚୁରଥ ଆରୋହି
ଗରୁଡ ପିଠିରେ ବିଜୟେ କଲେ ଦେବ ଜଗୁସାଇଂ । ୧୫ ।

କୋଇନ୍ତା ଦ୍ରୋପଦୀ ପଞ୍ଚୁପାଣ୍ଡବଂକର ତୁଲେ
ଇନ୍ଦ୍ରପ୍ରସ୍ଥ ଅଭିମୁଖେ ତୁରିତେ ଚଳିଲେ । ୧୬ ।

ଶ୍ରୀକୃଷ୍ଣ ଆଜ୍ଞାଂଦିଲେ ଭୀମସେନକଇଂ ରଇ
ତୋ ତହୁଂ ପାଣ୍ଡବଂକୁ ବାବୁ ଆନ ସାଖୀ ନାହିଂ । ୧୭ ।

ଧୃତରାଷ୍ଟ୍ର ଗାନ୍ଧାରୀଂକ ଯେ ଶତେପୁତ୍ର କଷ୍ଟ
ତୋତେ ଦେଖି ଅନେକ କ୍ରୋଧ କରିବ ଧୃତରାଷ୍ଟ୍ର । ୧୮ ।

ଅନେକ ବଇକୁଲ୍ୟେ ହୋ ତୋତେ ରଇବ କଟକ
ତୁ ହୋ ବୃକୋଦର ଯିବୁ ନାହିଂଟି ତାହାର ତହିଂକ । ୧୯ ।
କ୍ଷତ୍ରୀବର ବଳଷ୍ଟ ସେ ମହାବଳୀ ପ୍ରଚଣ୍ଡା
ମହାପର୍ବତ ଗୃପନ୍ତେ ସେ ହୋଇଯିବ ମସୀଗୁଣ୍ଡା । ୨୦ ।

ଶ୍ରୀକୃଷ୍ଣ କହିଲେ ଯହୁଂ ଚକ୍ରକୂଟ ବୁଦ୍ଧି
ଯଉଂ ଦେବ ମାୟାରେ ସମ୍ଭଳ ଜନ କାର୍ଯ୍ୟ ହୋଏ
ସିଦ୍ଧି । ୨୧ ।

କହୁଂ କହୁଂ ଶ୍ରୀକୃଷ୍ଣ ଯେ ପଥ ଗମିଯାନ୍ତେ
ପ୍ରବେଶ ହୋଇଲେ ଯାଇଂ କଟକ ଇନ୍ଦ୍ରଯେ ପ୍ରସ୍ଥେ ।୨୨।

---

୧୧।୨ ନଷ୍ଟହେ ବୁଡନ୍ତ ସୋମବଂଶରୁ ଅଇଶୁର୍ଯ୍ୟ । (କ,ଖ,ଠ,ନ)

ଦେଖିଲେ କଂକ ଯେ ହୋଇଛନ୍ତି ଭଗବନ୍ତ
ପାଞ୍ଚାଳ କୁମରେ ନାହାନ୍ତି ବୋଲନ୍ତି ଅଚ୍ୟୁତ । ୨୩ ।
ଦ୍ରୋଣେଶ୍ୱ ବୋଇଲେ ନାହାନ୍ତି ଭ୍ରାଥମାନେ ମୋହୋର
କେ ମୋହୋର ପୁତ୍ରନ୍ତ କଲାକ ଅପହାର । ୨୪ ।
ଏମନ୍ତେ ବୋଲିଣ ଦ୍ରୌପଦୀ ଯେ କ୍ରୋଧ କଲା
ହା ହା ପୁତ୍ର ବୋଲିଣ ସେ ଭୂଇଁରେ ପଡ଼ିଲା । ୨୫ ।
ଯୁଧିଷ୍ଠିର ଭୀମ ଅର୍ଜୁନ ନକୁଳ ସହଦେବ ସେ ବୀର
ପାଞ୍ଚାଳ କୁମରନ୍ତ ନ ଦେଖି କ୍ରୋଧ କଲେକ ଅପାର । ୨୬ ।

କୋଇନ୍ତାଏ ବୋଇଲେ ତୁ ଶୁଣ ଶିଖଣ୍ଡି
ବାନ୍ଧିତ ପୁତ୍ରନ୍ତ କେହୁ କଲାକ ଏ ଗତି । ୨୭ ।
ଶୁଣିଣ ନାରାୟଣ ଯେ ବଚନ ପ୍ରକାଶି
କ୍ରୋଧ ଛାଡ଼ ମାଗୋ ବଦନ୍ତି ହୃଷୀକେଶି । ୨୮ ।

ଛକାଦେ ପଣି ଗୋ ତୁମ୍ଭର କସ ଭଲ
ତୁମ୍ଭେ ଗୋ କଉରବନ୍ତ କେତେ ଅବସ୍ଥା ନ କଲ । ୨୯ ।
ଏବେ କ୍ରୋଧ କରୁଛ କିମ୍ପେ ତୁମ୍ଭେ ମାଏ
ଏମନ୍ତେ କହି ଯୁଧିଷ୍ଠିରଙ୍କ ତୋଳି ଧଇଲେ
ଦେବରାଏ । ୩୦ ।

ପଞ୍ଚ ପାଣ୍ଡବଙ୍କୁ କ୍ରୋଧ ଶାନ୍ତ ଯେ କରାଇ
ସ୍ନାହାନ କରାଇଲେ ଦେବ ଯଦୁସାଇଁ । ୩୧ ।
ପ୍ରେତକାର୍ଯ୍ୟ ସାରବେ ଏକାଦଶ ଦିନ
ସମସ୍ତ ମୂରୁଛାଇଲେ ଦେବ ପୁରୁଷୋତ୍ତମ । ୩୨ ।
ଯୁଧିଷ୍ଠିର ବୋଇଲେ ହୋ ଶୁଣିମା ବାସୁଦେବ
ହସ୍ତିନା ପୁରକଇଁ ଯିବା ଦେଖିବା ଧୃତରାଷ୍ଟ୍ର ବିଦୁର
ଆଦି ସର୍ବ । ୩୩ ।

ଏମନ୍ତେ ବୋଲିଣ ସଜ ହୋଇଲେ ସକଳେ
ଦୁର୍ଦ୍ଧର୍ଷ ଭୀମ ଅର୍ଜୁନ ନକୁଳ ସହଦେବ ମୂଳେ । ୩୪ ।
ବଦନ୍ତି ଅଗସ୍ତି ଶୁଣ ବଇବସ୍ୱତ ମନୁ
ପଞ୍ଚ ପାଣ୍ଡବେ ଆବର ଯେ ଦେବକୀଙ୍କ ତନୁ । ୩୫ ।

ଧୃତରାଷ୍ଟ୍ର ନବରେଣ ଭୁଗତେ ପରବେଶ
ଦ୍ୱାରେଣ ବିଦୁରେ ଯେ ଦେଖିଲେ ପଞ୍ଚ ଶିଷ । ୩୬ ।
ବଦସୃନ୍ତ ଯୁଦ୍ଧେଷ୍ଟି ଦେବ ବିଦୁର ଅଗତେ
ଧୃତରାଷ୍ଟ୍ରଙ୍କ ସ୍ଥମୂଳେ ପିତା ପିବାକ କେମନ୍ତେ । ୩୭ ।
ଯୁଧିଷ୍ଠିରଙ୍କ ବଚନେ ବିଦୁର ଯାଇଂ କହ
ପଞ୍ଚ ପାଣ୍ଡବେ ଭେ ଦେବ ତାଦେ ଅଇଲେ ତୋର ଚହ୍ନଂ । ୩୮ ।
ବିଦୁର ବଚନେ ଯେ ବୋଲଇ ଧୃତରାଷ୍ଟ୍ର
କମତେ ଅଇଲେ ମୋତେ ପୁମଗଇ ପୁତ୍ର କଷ୍ଟ । ୩୯ ।
ମାଇଲେ କର୍ଣ୍ଣ ଶକୁନି ପୁଣ ଭୂରିସବା
ଆବର ଶତପୁତ୍ର ଦ୍ରୋଣ ଯେ ଗାଙ୍ଗବା । ୪୦ ।
ମାଇଲେ ବନ୍ଧୁ ସୋଦର ମୋହୋର ସବ ସଖା
ମୋହୋର ବିପତ୍ତି ତାହାଂକର ସମ୍ପଦ ଯେ ଦେଖା । ୪୧ ।
ଯାଆନ୍ତୁ ସେ ପାଣ୍ଡବେ ହୋ ଯେଣେ ମୋହୋର କସ ଭାଗ୍ୟ
ସମସ୍ତେ ନାକଳଂକ କଲେ ଯେବେ ସୁଖେ କରନ୍ତୁ ରାଜ୍ୟ । ୪୨ ।
ବିଦୁରେ ବୋଇଲେ ଯେବେ ଶୁଣିମା କୁରୁ ରାଇଂ
ପାଣ୍ଡବନ୍ତ ତୋହୋର ଯେତେ କୋପ କାହାଂପାଇଂ । ୪୩ ।
ପାଣ୍ଡବଂକର ଯେଥି ନାହିଂ କିଛୁ ଦୋଷମାନ
ତୁହି ଯେ କୁଳକ୍ଷୟ କରଇଲୁ ହୋ ରାଜନ । ୪୪ ।
ଶତେକ ଅଛନ୍ତି ପୁତ୍ର ଜାତକଲୁ ନୃପ
ଖୋଜିଲେ ପାଣ୍ଡବନ୍ତ ଜାଣି ଜୀର୍ଣ୍ଣକୂପ । ୪୫ ।
ଆବହିଂ ନକଲୁ ତୁ କାହାର ଯେ ବୋଲ
ଯେକାପୁତ୍ର ତେଜଥିଲେ ସମସ୍ତ ହୁଅନ୍ତା ଭଲ । ୪୬ ।
ଯେକାପୁତ୍ର ତେଜିବାକୁ ମନେ ବ୍ୟଥା କଲୁ
ଆପଣାର କଲାକୃତ ପରେ ଦୋଷ ଦେଲୁ । ୪୭ ।
ଆପଣାର କଲାକୃତ୍ୟ ଯେବେ କର୍ମ ବିମୁଖ ହୋଇ
ସହାଥେ ବିଷ ଖାଇ ପରେ ଦୁଖ ଦେଇ । ୪୮ ।

୪୮।୨—ସଂହାରେ—ସ୍ୱୟଂ ହସ୍ତେ ।

ଯାହାକଲିଂ ପ୍ରତ୍ୟକ୍ଷ ଅଛନ୍ତି ଶ୍ରୀଚନ୍ଦ୍ର
ତାହା ଚିତ୍ତୁଂ ଦେବ କେହ୍ନୁ ହୋଇବ ଆନ ଦକ୍ଷ । ୪୯ ।
ଅନେକ ମଣାଇ କରି ଯତ୍ନୁଂ ବିଦୁର କହିଲେ
ଶୁଣିକରି ଧୃତରାଷ୍ଟ୍ର ମଉନବ୍ରତ ଯେ ହୋଇଲେ । ୫୦ ।
ବିଦୁରେ ବୋଇଲେ ଦେବ ପୁତ୍ର ହିନ୍ତ ମରାଇ
ନିର୍ଲଜ୍ଜ ଅମ୍ଭା ଯେବେ ନ ଗଲ କିସ ପାଇଂ । ୫୧ ।
ଦ୍ରୁପଦଙ୍କୁ ଇଚ୍ଛା ଯେବେ କର ଧୃତରାଷ୍ଟ୍ର
ପାଣ୍ଡବନ୍ତ କେଳକରି ପାସୋର ଦୁଃଖକଷ୍ଟ । ୫୨ ।
ମର୍ଯ୍ୟାଦେ କରି ଭୁ ହରିଇଲୁ ସବୁ କାର୍ଯ୍ୟ
ବୁଦ୍ଧି ହରିଇ ଥୋକେ ଲୋକ ପାଅନ୍ତି ବଡ ଲାଜ । ୫୩ ।
ଆହୋ ଚଇତନ ଅନେକ ପରମାର୍ଥ ଯତ୍ନୁଂ କହିଲେ ବିଦୁର
ଶୁଣିଣ କ୍ରୋଧ ମନୁ ଛାଡ଼ିଲ କୁରୁବୀର । ୫୪ ।
ଧୃତରାଷ୍ଟ୍ର ବୋଇଲେ ବିଦୁର ତୁମ୍ଭେ ପାଣ୍ଡବନ୍ତ ବେଗେ ଆଣ
କିସ ଅର୍ଥେ ଅଇଲେ ବୁଝିବା ତଥ୍ୟ ପୁଣ । ୫୫ ।
ଧୃତରାଷ୍ଟ୍ରେ ବୁଝାଇ ବିଦୁରେ ଅଇଲେ
ଆସହୋ ଶ୍ରୀକୃଷ୍ଣ, ଯୁଧିଷ୍ଠିର, ଧୃତରାଷ୍ଟ୍ର ଆଜ୍ଞା ହେଲେ । ୫୬ ।
ଶୁଣିଣ ଭାଇଏ ପଶିଲେ ଯୁଧିଷ୍ଠିର ଦେବସ୍ୱାମୀ
ଧୃତରାଷ୍ଟ୍ର ଚରଣେ ପାଞ୍ଚେହେଂ ପ୍ରଣାମି । ୫୭ ।
ଗାନ୍ଧାରୀ ବୋଇଲେ ତୁମ୍ଭେ ଶୁଣରେ ଆତ୍ମଜ
ମୋହୋର ଦେହେ ହୋଇଲା ତୋହୋର କର୍ମ କାର୍ଯ୍ୟ । ୫୮ ।
ରାଜ୍ୟ ପାଇକରି ଲଂଘିଲୁନା ଧର୍ମ
ଅନେକ ହତ୍ୟାକରି ଅର୍ଜିଲୁ ଅଛ ଯେ ଅକର୍ମ । ୫୯ ।
ଗାନ୍ଧାରୀ ବୋଇଲେ ମୁଂ ଯେଉଂଣ କାଳେ ବିଭା ହୋଇଥିଲି
ସ୍ୱାମୀ ଅନ୍ଧ ହେଲା ମୋର ଶ୍ରବଣେ ଶୁଣିଲି । ୬୦ ।
ଭର୍ତ୍ତାଂକର ଯେବେ ମୋର ନ ଦିଶିଲା ନୟନ
ମୋହୋର ପରମୁଖ ଗୃହଂକାରେ କିସ ପ୍ରୟୋଜନ । ୬୧ ।

---

•୫୪। ଅହୋ ଚଇତନେ ଅନେକ ପୁରୁଷାର୍ଥ କହିଲେ
ବିଦୁର । (କ,ଦ,ଝ)

ମୁହିଂ ଅନ୍ଧ ପଟଳ ବାନ୍ଧିଲି ସ୍ୱାମୀର ନିମନ୍ତେ
ଶତେପୁତ୍ର ମୁଖ ମୁହିଂ ନ ଦେଖିଥିଲି କାଳ ଯେତେ । ୬୨ ।
ଏବେ ଅନ୍ଧ ପଟଳ ଫେଡି ଦେଖଇ ତୁମ୍ଭର ମୁଖ
ତୁମ୍ଭନ୍ତ ଦେଖି ପାସୋରଇ ପୁତ୍ରଙ୍କର ଦୁଖ । ୬୩ ।
ଶ୍ରୀକୃଷ୍ଣ ବୋଲନ୍ତି ବାବୁ ସହଦେବ ଶୁଣ
ଏହାର ଅନ୍ଧ ପଟଳ ଫେଇବାର କେବଣ କାରଣ । ୬୪ ।
ସହଦେବ ବୋଇଲେ ଅନ୍ଧ ପଟଳ ଫେଇ ଗୃହ୍ନିବ ଯାହାରେ
ଅବଶ୍ୟ ଦହନ ହୋଇବ ସେ ରଖି ନୋହିବ
ତାହାରେ । ୬୫ ।
ଶ୍ରୀକୃଷ୍ଣ ବୋଇଲେ ସହଦେବ ମୁଖ ଗୃହ୍ନିଂ
ଶତ୍ରୁର ଶେଷ ଲେଶ ରଖିବ ନ ଯୋଗାଇ । ୬୬ ।
ଏ ଆମ୍ଭର ଶତ୍ରୁଟଲ ଯେ ଅଛଇ ଦୁର୍ଦ୍ଧର୍ଷ
ସେ ଅନ୍ଧ ପଟଳ ଫେଇ ଗୃହ୍ନିଂ ମାତାର ମୁଖ । ୬୭ ।
ଶ୍ରୀକୃଷ୍ଣ ବୋଇଲେ ଯାଇଂ ଦୁର୍ଦ୍ଧର୍ଷର ଆଗେ
ଗାନ୍ଧାରୀ ଅନ୍ଧ ପଟଳ ଫେଡସି ବାବୁ ବେଗେ । ୬୮ ।
ଶ୍ରୀକୃଷ୍ଣ ବଚନେ ସେ ଗାନ୍ଧାରୀର ବାଳ
ଦୁର୍ଦ୍ଧର୍ଷ ଫେଇଲା ମାତା ଗାନ୍ଧାରୀର ଅନ୍ଧ ଯେ ପଟଳ । ୬୯ ।
ଆହୋ ଚଇତନ ଚକ୍ଷୁ ମେଲି ଗାନ୍ଧାରୀ ଗୃହ୍ନିଂଲା ମୁଖ ତୋଳି
ଦୁର୍ଦ୍ଧର୍ଷର ଶରୀର ତତକ୍ଷଣେ ଉଠିଲାକ ଜଳି । ୭୦ ।
ପାଣ୍ଡବନ୍ତ ଭେଳ ଅନ୍ତର ହୋଇଲେ ବାସୁଦେବ
ବିଦୁରେ ବୋଇଲେ ଗାନ୍ଧାରୀ ମନ୍ଦକୃତ୍ୟ କଲୁ ଏବେ । ୭୧ ।
ଯୁଧିଷ୍ଠିର ତୋହ୍ନିଂ ଶରଣ ପଶିଲା ତୋହୋର ବନ୍ଧୁ
ତାହାକୁ ଦହନ କଲୁ ସେ ତୋହୋର ଦୁର୍ଦ୍ଧର୍ଷ । ୭୨ ।
ଗାନ୍ଧାରୀ ବୋଇଲେ ମୁଂ ଯେ ଆନ୍ଧହୁଂ ଅନ୍ଧଜାତ
ମୁଂ କେହ୍ନେ ଜାଣିମି ସେ ଯେ ମୋହୋର ସନ୍ତତ । ୭୩ ।
ଗାନ୍ଧାରୀ ବୋଇଲା ମୁଂ ଯେ ମନ୍ଦକୃତ୍ୟ କଲି
ଚିହ୍ନି ନୁଆର ପୁତ୍ରକୁ ଅଖଣ୍ଡେ ମାଇଲି । ୭୪ ।

---

୬୩।୨ ପାସୋରବ ଗର୍ଭକଷ୍ଟ ପୁତ୍ରଙ୍କର ଦୁଃଖ । (କ,ଗ,ଡ,ଢ)

ଶ୍ରୀକୃଷ୍ଣ ବୋଇଲେ ମାଗୋ ଯେ ଚୋହୋର ପୁତ୍ରଗୋଟି
ଶରଣ ଗଲା ତାହାକୁ ରକ୍ଷା କଲେ ଯୁଧିଷ୍ଠି । ୭୫ ।
ଯେ ଥିଲା ତୋହୋର ଅନ୍ତର ଲଉତ
ତାହାକୁହିଂ ନାଶକଲୁ ବପଁ କ କର୍ମ ତୋହୋର । ୭୬ ।
ଯେବେ ବାହୁଡ ଅନ୍ଧ ପଟଳ ବାନ୍ଧ ତୋହୋର ମୁଖଇ
ଯୁଧିଷ୍ଠିଙ୍କ ଦନ୍ଧକା କଲେ ଧର୍ମ ନ ଗଛଇ । ୭୭ ।
ଶ୍ରୀକୃଷ୍ଣ ବୋଇଲେ ଗୋ ପାଣ୍ଡବେ ତୋହୋର ବାଳ
ନିଜ ପୁତ୍ରନ୍ତ ପାସୋର ଯେହ୍ନାନ୍ତ ପ୍ରତିପାଳ । ୭୮ ।
ଶ୍ରୀକୃଷ୍ଣଙ୍କ ବଚନେ ଗାନ୍ଧାରୀ କୋପ କଲା ଶାନ୍ତ
ପୁଣି ଅନ୍ଧ ପଟଳ ବାନ୍ଧିଲା ତତକ୍ଷଣାନ୍ତ । ୭୯ ।
ଦୁର୍ଦ୍ଧ୍ୟକ୍ଷ ନିଧନେ ଧୃତରାଷ୍ଟ୍ର ବଡ କଷ୍ଟି
ଇନ୍ଦ୍ର ସମାନେ ପାଇଥିଲା ଶତେ ପୁତ୍ରଗୋଟି । ୮୦ ।
ଅନ୍ତେଣ ତନୟ ମୁଂ ନ ପାଇଲଇଂ ଯେକ
କର୍ମର ଅକଲେ ଦେଖ ଗୋଟିଏ ନୋହିଲା ପ୍ରାପତେକ । ୮୧ ।
ଶ୍ରୀ ଗୋବନ୍ଦେ ବୋଇଲେ ତାତ ପାଣ୍ଡବେ ତୋହୋର ବାଳ
ତାହାନ୍ତ ପାସୋର ଯେହ୍ନାନ୍ତ କର ଯେବେ କୋଳ । ୮୨ ।

---

୭୬।୨—ତାହାକୁହିଂ ନାଶକଲୁ ପ୍ରାକର୍ମ ତୋହୋର । (ଙ,ଠ,ଗ)
୭୬।୨—ତାହାକୁହିଂ ନାଶକଲୁ ହୀନକର୍ମ ତୋହୋର । (ଣ,ଢ଼)

## ଧୃତରାଷ୍ଟ୍ରଙ୍କ ଦ୍ୱାରା ଲୌହଭୀମ ଚୂର୍ଣ୍ଣ ଓ ଗାନ୍ଧାରୀର ଶ୍ରୀକୃଷ୍ଣଙ୍କୁ ଶାପ ପ୍ରଦାନ

ଧୃତରାଷ୍ଟ୍ର ବୋଇଲେ ଆରେ ମୋହୋର ବାବୁ ଭୀମ
ତୋତେ କୋଳକରି ପାସୋରିବି ମୋହୋର କ୍ରୋଧ ଆମ୍ଭ ।୧।
କୋଳ ପ୍ରସାରଣ ଡାକଇ ଅମ୍ବିକାର ସୁତ
ଶୁଣିଣ ଭୀମସେନ ଉଠିଲା ତୁରିତ ।୨।
ଶ୍ରୀକୃଷ୍ଣ ଜାଣିଲେ ଧୃତରାଷ୍ଟ୍ରର ମନଚିନ୍ତା
ଭୀମସେନଙ୍କୁ ଝିଙ୍କାଇ ଆଣିଲେ ଜଗୁଜିତା ।୩।
ଆସ ଆସରେ ଭୀମସେନ ତୋତେ କୋଳ ମୁଁ କରଇ
ଶତେ ପୁତ୍ରଙ୍କର ମୁଁ ପୁତ୍ରକଷ୍ଟ ପାସୋରଇ ।୪।
ଚାହିଁ ଲୁହାର ଭୀମକୁ ଦେଇ ଆଣିଲେ ଦେବ ହରି
ଧୃତରାଷ୍ଟ୍ର କୋଳେ ଦେଲେ ଆକ୍ଷେପଣ କରି ।୫।
ମହା ବଳବନ୍ତା ଧୃତରାଷ୍ଟ୍ର ବଜ୍ରସେନା
ଭୁଜେ ଭିଡନ୍ତେ ଲୌହାର ଭୀମ ହୋଇଗଲା ଚୂନା ।୬।
ବଇବସ୍ୱତ ମନୁପୁତ୍ର ପୁଚ୍ଛା କଲେ ଅଗସ୍ତି
ବଡାଇ ଆଶ୍ଚର୍ଯ୍ୟ କଥା ତ କହିଲ ବ୍ରହ୍ମପତି ।୭।
ଲୌହାର ଭୀମ କାହିଁ ଥିଲା ସେମନ୍ତେ ଯୋଗ
ଧାତୁକାରେ କୃଷ୍ଣ ଆଣି ଦେଲେ ଅତି ବେଗେ ।୮।
ଅଗସ୍ତି ବୋଇଲେ ଆହେ ଶୁଣସି ସୁବୁଦ୍ଧି
ଧୃତରାଷ୍ଟ୍ର ଶତେପୁତ୍ର ଉପୁଜିଲା ବୁଦ୍ଧି ।୯।
ଧୃତରାଷ୍ଟ୍ର ବୋଇଲେ ଶୁଣସି ବିଦୁର
ପୁଅନ୍ତ ଆଣରେ ମୁଁ ଧରଇ କୋଡର ।୧୦।
ବିଦୁର ବୋଇଲା ତୋହୋର ଜ୍ୟେଷ୍ଠପୁତ୍ର ସେଠି
ସେବାଙ୍ଗ ଛଡି ସେ ହୋଇବ ନବଦୃଷ୍ଟି ।୧୧।
ଶଙ୍ଖନିଧି ପଦ୍ମନିଧି ଅଛଇ ତାହାର କରେ
ପଦ୍ମ ବନ୍ଧସଇଛି ଯାହାର ପଦ୍ମରେ ।୧୨।
ଅନେକ ଜୋର ହୋଇବ ମଣ୍ଡଳମଣି
ଅନୁବ୍ରତେ ସେହାର କନ୍ଧ ନ ଛୁଇବେ କମଳିଣୀ ।୧୩।

ସେହାର ଲକ୍ଷଣ ମୋତେ କହଇ ଲଳାଟ ପାଟିରେ
ଭୀମର ହାଥରେ ବଧ ସେ ହୋଇବ ଶେଷକାଳେ । ୧୪ ।
କର୍କଶ ମଧପିଙ୍ଗଳ ଅଟେ ସ୍ୱା ପ୍ରକୃତ
ସେ ପୁତ୍ର ମାର ଅନେଶ୍ୱତ ପୁତ୍ର ଯେନ୍ହ ହୋଅ ସେକାଙ୍କ
ଚକ୍ରବ୍ରତୀ । ୧୫ ।

ସେହାରେ ବଂଶ ତୋହୋର ହୋଇବ ବିନଶ୍ୟନ୍ତ
ବେଗେ ସେହାକଇଂ ନାଶକର ଶୀଘ୍ରଗତ । ୧୬ ।
ଧୃତରାଷ୍ଟ୍ର ବୋଇଲେ ସେହେନେକ ମୋହୋର ବଡକ୍ଷଣ ପୁତ୍ର
ରାଜ୍ୟଧର ପୁତ୍ରକଇଂ ମୁଂ ନାଶ କରିବ କେମନ୍ତ । ୧୭ ।
ଲୋହାର ଭୀମେକ ଯେ ଗଢ଼ାଇଲା ଧୃତରାଷ୍ଟ୍ର
ଦୁର୍ଯୋଧନକଇଂ ବୋଲନ୍ତ ସେହାକୁ ନିଠାଇଣ ପିଟ । ୧୮ ।
ଲୋହଗିରି ସମ ଅଟେ ସେହାର ପାର୍ଶ୍ୱସ୍ଥଳୀ
ପିଟିଣ ପୁତ୍ର ରେ ତୁ ହୁଅ ମହାବଳୀ । ୧୯ ।
ସେ ଲୋହାର ଭୀମକଇଂ ଆଖଡ଼ାଶାଳେ ଥାପି
ତାହାକୁ ଆଦେଶିଣ ଦୁର୍ଯୋଧନ ନିତ୍ୟେ ଗଦା ପ୍ରହାର କରନ୍ତି
କ୍ଷେପି । ୨୦ ।

ଭୀମକୁ ମାରିବାକୁ ନିତ୍ୟେ କରଇ ଅଭ୍ୟାସ
ଆଖଡାଶାଳେ ଥାଇ ଯେ ରାତ୍ର ଯେ ଦିବସ । ୨୧ ।
ସେ ଲୋହାର ଭୀମକୁ ବହି ଆଣିଲେ ଭୀମ ଅର୍ଜୁନ ନକୁଳ
ସହଦେବ ଯୁଧିଷ୍ଠିର
ଧୃତରାଷ୍ଟ୍ରର କୋଳେ ବସାଇଲେ ସନ୍ଦେହେ । ୨୨ ।
ସେ ଭୀମକୁ ଝପିଲେ ଧୃତରାଷ୍ଟ୍ର ନୃପତ
କୋଳେ ଆମଞ୍ଜନେ ଗୁଣ୍ଡି ହୋଇଲା ତତକ୍ଷଣାନ୍ତ । ୨୩ ।
ଆହୋ ଚଇତନ ଧୃତରାଷ୍ଟ୍ର ମୁଖରୁ ଘନ ଘନ ବହଇ ଶ୍ରୋଣି
ପଡ଼ିଲା ଧୃତରାଷ୍ଟ୍ର ଯେ ବଜ୍ରାଘାତ ଜାଣି । ୨୪ ।

---

୧୯ { ଲୋହଗିରି ସମାନେ ସେହାର ଶରୀର
ନିତ ତା ସଙ୍ଗେ ଲଢ଼ଇ ଦୁର୍ଯୋଧନ ବୀର । (ଖ,ଗ,ଘ)

ଦଶ ସହସ୍ର ମତ୍ତହାଥୀର ପ୍ରାକ୍ରମ ସେ ଲୋହାର ଭୀମସେନ
ବେନି ଅନ୍ନବ୍ରତ ହାଥୀର ପ୍ରାକ୍ରମ ଧୃତରାଷ୍ଟ୍ର ରାଜନ । ୨୫ ।
କୋଳେ ଧରି ବଡ଼ୁରେ ଯେ ମୁଖେ ଜଳ ସିଞ୍ଚି
ସାଷ୍ଟାଙ୍ଗ ନମନ୍ତେ ସେ ଆଲିଙ୍ଗ ଧରି ବଞ୍ଚି । ୨୬ ।
ଚେତନା ପାଇଣ ସେ ନୃପତି ଧୃତରାଷ୍ଟ୍ର
ଭୀମର ନାମ ଧରି ଯେ ରୋଦଇ ମହାକଷ୍ଟ । ୨୭ ।
କୁଳ ମଣ୍ଡନ ପୁତ୍ର ଆରେ ମୋହୋର ବୃକୋଦର
ଅକାଦ ସମୋଦ୍ରେ ମୁଂ ପଶିଲ ମୂର୍ଖ ଭୂର । ୨୮ ।
ତୋହୋର ପରି ପୁତ୍ର ମାଇଲି ମୁଂ ମନ୍ଦ
ଆଜ୍ଞ କି ଫେରି ଆସିବ ମୋ ମାନଗୋବନ୍ଦ । ୨୯ ।
କାହିଂକି ଭୀମସେନକୁ ମୁହିଂ ଯେ ମାଇଲି
କାହିଁପାଇ ସେହେନେକ ମନ୍ଦକର୍ମ କଲି
ଭୀମକଇଂ ମାରି କି ମୋହୋର ସ୍ୱର୍ଗନ୍ତ ପାଇଲି । ୩୦ ।
ଅନେକ ବିଳାପ କରଇ ଧୃତରାଷ୍ଟ୍ର
ତାହା ଶୁଣି ଭୀମସେନ ଅଧିର କଲା ପୁଷ୍ଟ । ୩୧ ।
ଗଦା ବୁଲାଇଣ ଯେ ମାରି ଲେଉଡ଼ଇ ଭୀମ
ଯୁଧିଷ୍ଠିର ବୋଇଲେ ବାବୁ ପିତାଙ୍କୁ ନ କର ତମ । ୩୨ ।
ପୁତ୍ରଂକ ନିଧନେ ହୋଇଅଛନ୍ତି ବଇରାଗୀ
ପିତାମହ ସେହି ଅଟନ୍ତି ସେହାର ଦୋଷ ପରିତ୍ୟାଗି । ୩୩ ।
ଶ୍ରୀକୃଷ୍ଣ ବୋଇଲେ ହୋ ଶୁଣସି ଧୃତରାଷ୍ଟ୍ର
ଭୀମକୁ ମାଇଲୁ ତୋର ସେହିକେ ଗଲା ତ ପୁତ୍ରକଷ୍ଟ । ୩୪ ।
ଆବର କ୍ରୋଧ ତୁ ଯେ କରୁ କିସ ଅର୍ଥେ
ବୃଦ୍ଧକାଳେ ବର୍ଜ୍ୟ ଭୁଞ୍ଜ କରି ହୋ ନିଚିନ୍ତେ । ୩୫ ।
ଭୀମାର ନିଧନେ ପାଣ୍ଡବେ ହୋଇଲେ ନିରମାକ୍ଷୀ
କ୍ରୋଧ ସମ୍ଭାଳି ମହାରାଜା ହୋଇଲୁ ମହାସୁଖୀ । ୩୬ ।

---

୩୦ { ତୋତେ ମାଇଲି ବାବୁରେ ଲଭିଲି କି ପଣ
{ ସେତେ ମନ୍ଦପଣ କର୍ମେ କଲି ମୁଂ ବାଲୀଶ । (ଖ,ନ,ଠ)

ଶ୍ରୀକୃଷ୍ଣର ବଚନେ ହସଇ ଧୃତରାଷ୍ଟ୍ର
କ୍ରୋଧ ଶାନ୍ତ ହୋଇ ପଚାରିଲେ ପୁତ୍ର କଷ୍ଟ । ୩୭ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ମହାଶୟେ
ତୋହୋର ବୋଲେ କ ଭ୍ରମ ହୋଇବଟି ଷଶ୍ୱେ । ୩୮ ।
ଭୀମସେନ ବୋଇଲେ ସୁଖୀ ହୋଇଲ ହେ ପିତା
ମୁହିଂ ଭୀମସେନ ତୋହୋର ଶତେ ପୁତ୍ରହନ୍ତା । ୩୯ ।
ସେହେନେକ କୂଟବୁଦ୍ଧିରେ କ ପାଣ୍ଡବନ୍ତ ପାଇ
ସର୍ବଗର୍ବ ପୁରୁଷ ନାଥ ଯାହାକୁ ଅଟନ୍ତି ସାହା । ୪୦ ।
ଅନେକ ଝିଂଗାସି ଯେ ବୋଇଲେ ପାଟବେନ
ଧୃତରାଷ୍ଟ୍ର ଚକ୍ଷୁରୁ ବହଇ ଜଳ ଶ୍ରାବଣ ଧାର ଜାଣି । ୪୧ ।
କୋଳେ ଧରି ବିଦୁର ଧୃତରାଷ୍ଟ୍ରଙ୍କଇଂ ବୋଇଲେ
କ୍ରୋଧ ସମ୍ଭାଳ ଭ୍ରାତ କିଛି କାର୍ଯ୍ୟ ନୋହିଲା । ୪୨ ।
ଧୃତରାଷ୍ଟ୍ର ବୋଇଲେ ମୁଂ କେମନ୍ତେ ଦେହ ଧରିବ
ପୁତ୍ରଙ୍କ ଅଭାବେ ମୁଂ କସ ଯେ କରିବ । ୪୩ ।
ଚଳ ହେ ବିଦୁର ଯିବା ସେବେ କୁରୁକ୍ଷେତ୍ର
ରଥ ଆରୋହଣ ଚଳଲେ ତୁରିତ । ୪୪ ।
ସଞ୍ଜୟ ସାରଥି ଯେ ବାହିଲେକ ରଥ
ଶ୍ରୀକୃଷ୍ଣ ସହିତେ ଗଲେ ପାଣ୍ଡବ ପଞ୍ଚ ଭ୍ରାତ । ୪୫ ।
ଧୃତରାଷ୍ଟ୍ର ଗାନ୍ଧାରୀ ସଞ୍ଜୟେ ବିଦୁର
ପ୍ରବେଶ ହୋଇଲେ ଯାଇଂ କୁରୁକ୍ଷେତ୍ର ମଣ୍ଡଳର । ୪୬ ।
ଶ୍ରୀକୃଷ୍ଣ ପାଣ୍ଡବନ୍ତ ଯେତେଣ ଚଳିଗଲେ
କେଉବଂଶରୁ ତେରଜଣ ମାତଙ୍କ ହୋଥିଲେ । ୪୭ ।
କୁରୁକ୍ଷେତ୍ର ମଧ୍ୟେ ଯାଇଂ ପ୍ରବେଶ ହୋଇଥିଲେ
ଶ୍ରୀକୃଷ୍ଣ ଅଗ୍ରତେ ତହୁଂ ଗାନ୍ଧାରୀ ବୋଇଲେ । ୪୮ ।
ଅନ୍ଧପଟଳ ମୁଖରୁ ଫେଇଲେ ଗାନ୍ଧାରୀ
ଦେଖଇ ବଂଶଯାକ ଅଛଇ ଅଡହୋଇ । ୪୯ ।
ଦେଖ ଦେଖ ଶ୍ରୀକୃଷ୍ଣ ସେ କୁରୁକ୍ଷେତ୍ର ଭୂଇଂ
କମ୍ପେ ରଥ ଦାନ ଭ୍ରାତ ଶୋଇଛନ୍ତି ମହୀ । ୫୦ ।

ଦ୍ୱାଦଶ ଯୋଜନ ଯାଏ୍ ମୃତ୍ତୁପିଣ୍ଡ ପରି
ସ୍ୱେକଙ୍କୁ ଆଦରେ ଶୋଇଛନ୍ତି ଆଲିଙ୍ଗନ କରି । ୫୧ ।
ଅନେକ ରାଜାଏ୍ ଅଇଲେ ଯେ ଭୂଅଚଳେ
ଶୁତଲେ ରଣଭୂମିରେ ଅଳଙ୍କାର ନାଥ ଜାଣି କାମିନୀଙ୍କ
ମେଳେ । ୫୨ ।
ରତ୍ନର କଙ୍କଣମାନ ରବିର ତେଜ ଜାଣି ଦଶି
ଚନ୍ଦ୍ର କଚଣ ଯେହ୍ନେ ବରିକଲ ନଗି । ୫୩ ।
ସମସ୍ତ ନରେଶ୍ୱର ଗୃହଂଇ ରନ୍ଧାରୀ
ଦେଖିଲା ସନ୍ୟ ସେନା ଅନେକ ଛନ୍ତି ପ୍ରୀ । ୫୪ ।
ନିରେପି ଗୃହାନ୍ତେ ଗାନ୍ଧାରୀସେନ ଦୁଳଳୀ
ଶର ଶେଯ୍ୟାଏ୍ ଟାଙ୍ଗେକ କଣ୍ଠର ଯାଇଂ ମିଳି । ୫୫ ।
ଦେଖ ଦେଖ ଶ୍ରୀକୃଷ୍ଣ ଯେ ଶାନ୍ତନୁର ସୁତ
ସାଂଗ୍ରାମେ ସୁରସୁର ଜିଣିଥାକୁ ଯେ ଆମରଥ । ୫୬ ।
ନିରେଖଇ ଗାନ୍ଧାରୀ ଭୀଷ୍ମଙ୍କର ମୁଖ
ମମ ପୁତ୍ରଂକ ଆଗ୍ରେ ପାଇଲେ ଦେତେ ଦୁଃଖ । ୫୭ ।
ଧନ୍ୟ ଯେ ଭୀଷ୍ମ କୁରୁବଂଶେ ଜନ୍ମିଲେ
ପିତାର ନିମନ୍ତେ ଯେହ୍ନେ ଦାର ପରିତ୍ୟାଗ କଲେ । ୫୮ ।
ଇଛାଏ୍ ମୃତ୍ୟୁ ଯେ ପାଇଚନ୍ତି କରଇ
ନୋହିଲେ କି ଭୀଷ୍ମ ରଣଭୂମିରେ ପଡ଼ଇ । ୫୯ ।
ଗାନ୍ଧାରୀ ବୋଇଲ ଦ୍ରୋହେନେକ କୃତ କଲ ବାବୁ
ଗତ ଆଗତକୁ ବାହୁରେ ବୁଡାଇଲ ସବୁ । ୬୦ ।
ବାବୁ ଭୂରିଶ୍ରବା ବାହ୍ଲିକ କଳିଙ୍ଗସେନ ସୋମଦତ୍ତେ
ବଳିକ ଲେକନ୍ତ ରେ ନାଶ କଲଟି କେମନ୍ତେ । ୬୧ ।

---

୫୧ । ଅଲିଙ୍ଗନ ପ୍ରାଏ୍ ହୋଇ ପଡ଼ିଛନ୍ତି ସର୍ବ ବଳେ
ଯେସନେକେ ସୁତ ଶୋଇଥାଇ ମାତା କୋଳେ । (ଚ)
୫୩। ଚନ୍ଦ୍ର କଚଣ ପ୍ରାଏ୍ ରୂପ ଯେ ବିକାଶି । (ଚ)
୫୯। ବଂଶାଇ ଯେ ଭୀଷ୍ମ ରଣଭୂମିରେ ପଡଥାଇ । (ଧ,ଛ,ଦ,ଠ)

ହେ କୃଷ୍ଣ ଜାଣିଲଇ ମୁଂ ଧର୍ମଂକର ଗତି
ଆପଣେ ମଣିକରି ପାଣ୍ଡବନ୍ତ କଲ ପ୍ରୀତି । ୬୨ ।
ପାଣ୍ଡବଂକୁ ସ୍ନେହ ସେ କରନ୍ତି ସର୍ବ ଜନ
ସେହାନ୍ତ ପାଣ୍ଡବରେ ମାଇଲ କେସନେ । ୬୩ ।
ତହୁଂ ଶୋକକରି ଗାନ୍ଧାରୀ ଚଳଇ କ୍ରୋଧ ଚିତ୍ତ
ଦେଖିଲ ପଡ଼ିଛନ୍ତି ଭରଦ୍ୱାଜଣଂକ ସୁତେ । ୬୪ ।
ହେ କୃଷ୍ଣଚନ୍ଦ୍ର ସେହୁ ଦ୍ରୋଣଗୁରୁ ଯେ ଅଛନ୍ତି
କେ ସେହାକଇଂ ଜିଣିତେ ସାମରଥ ସେହୁ ପୃଥୀ । ୬୫ ।
ଅଚଳ ଚଳିବାକୁ କେ ହୋଇଲ ସମରଥ
ପୃଥୀ ତୋଳି ଧରିବାକୁ କେ ହୋଇଲ ସେକଛନ୍ଦ । ୬୬ ।
ଅଣିମୁଣ୍ଡ ମୂର୍ତ୍ତି ଧରି ସେବେ ବହଇ ପବନ
ତେବେ ସେ ଜାଣିବା'ନା ହୋ ଦ୍ରୋଣଂକର ନିଧନ । ୬୭ ।
କେବଣହିଂ ସେଳ ସେ ଦେବ ଯେ ମୁରାରି
କମାଇଂ ଦ୍ରୋଣେ ଯେ ପଡ଼ିଲେ ପ୍ରାଣହାରି । ୬୮ ।
କୋଳେଣ ଅନ୍ଧରାଜା ଧରିଣ ସେବକେ
ହା ହା ବୋଲିକରି ତହିଂ ରୋଦନ ଦିଅନ୍ତେ । ୬୯ ।
ଯାହା ତହୁଂ ଶିଖି ବିଦ୍ୟା, ପାର୍ଥ ଦେବକାର୍ଯ୍ୟ କଲ
ତାହାକଇଂ କେସନେକେ ରଣେଣ ମାଇଲ । ୭୦ ।
ଆହେ କୃଷ୍ଣ, ଦ୍ରୋଣ ଆଚାର୍ଯ୍ୟେ ସେହାଂକର ଗୁରୁ
ମୋହୋର ପୁତ୍ରନ୍ତ ଗୁଣ୍ଡ ସେହାନ୍ତ ସ୍ନେହକରୁ । ୭୧ ।
ଦ୍ରୋଣ ଆଚାର୍ଯ୍ୟେ ଅର୍ଜୁନକୁ ବହୁତ ସ୍ନେହକରି
କେମନ୍ତେ ସତ ବଜାଇଲ ସେହାନ୍ତ ବଧକରି । ୭୨ ।
ପିଅଭ ଗୁରୁ ନାଶକରି କାଏ ସେହାଂକର ସୁଖ
ଗୁରୁ ବଧାକଲ ଚଣ୍ଡାଳେ ରେ ଭୁମ୍ଭର ନ ଗୃହିଂ
ସେ ମୁଖ । ୭୩ ।
କ୍ରୋଧ କରିଣ ତହୁଂ ଚଳଇ ଗାନ୍ଧାରୀ
ଦେଖଇ ଆଗରେ ସେ କର୍ଣ୍ଣ ଶରଘାତେ ଅଛି ପଡ଼ି । ୭୪ ।

---

୬୨ । ହେ କୃଷ୍ଣ ଜାଣିଲଇଂ ମୁ ଧର୍ମଂକର ଗତି
ଆପଣେ ମଣିଲ ସେ କଲ ପାଣ୍ଡବଙ୍କ ହିତ । (କ,ଖ)

ଦେଖିଣ ଟାହାଙ୍କୁ ସେ ବୋଲଇ କୃଷ୍ଣେ ଗୃଷ୍ଟଂ
ଏଇଲେକେ୍ୟ ଅଙ୍ଗସ୍ୱେ କର୍ଣ୍ଣ ଚ୍ଛଡଲା କେହେ୍ଲ ଦେଖା । ୭୫ ।
ସେ୍ୱହାର ବାହୁବଳକୁ ଆଶ୍ରେକର ପୁଟେ ଯୁଦ୍ଧ କଲା
ସେ୍ୱତେ ବଡ ବୀର କେହେ୍ଲ କୁରୁକ୍ଷେତ୍ର ମଣ୍ଡଳେ
ପଡଲା । ୭୬ ।
ହା ହା କର୍ଣ୍ଣ ବୋଲିଣ ଧଇଲା କୋଳାଗ୍ରତେ
ଆରେ ତୁମ୍ଭର ସୋଦର ସେ୍ୱହ୍ମ, ମାଇଲ କେମନ୍ତେ । ୭୭ ।
ବାବୁ କର୍ଣ୍ଣରେ ଅଭେଦ କଟଚ ବଜ୍ର ଛଡଂସ୍ୱ ଅମୃତ କୁଣ୍ଡଳ
କପଟେ ତୋର ତତ୍ତ୍ୱଂ ଦାନ ମାଗିନେଲେ ଆଖଣ୍ଡଳ । ୭୮ ।
ଧୀର ହୋଇ ଚରଣ ଭୂମିରେ ପଡବା ନିମନ୍ତେ
ଶତେ ଘର ହୁବର୍ଣ୍ଣ ବସୁଧା ଲକ୍ଷ ଦଅଇ ନିତେ୍ୟ
ତୋତେ । ୭୯ ।
ବାବୁ ବାସବ ଦେବତା ତୋଷିଣ ପାଇଲୁ ବଜ୍ର ଯେ ଶକତ
ସେ୍ୱତେ ସଞ୍ଚିତ କର କର୍ମେ ନୁଆଇଲୁ ବ୍ରତ । ୮୦ ।
ସେ୍ୱ କର୍ଣ୍ଣକୁ କେମନ୍ତେ ମାଇଲୁ ରେ ଅର୍ଜୁନ
ତୋହୋର କଲା କୃତ୍ୟଟି ହାଦେ ଦେବକୀ ନନ୍ଦନ । ୮୧ ।
ସେ୍ୱ କୁରୁ ସାଗର ଯେ କାହାର ବଳେ ହୋସେ୍ୱ ଜିଣି
ଉପାସେ୍ୱ କର ସେ୍ୱହା ମରଇଲୁ ଚକ୍ରପାଣି । ୮୨ ।
ତତ୍ତ୍ୱଂ ବେଦନ କରିଣ ଚଳଇ ଟାହାର ସେନର ଦୋହଣି
ଦେଖଇ ଧୃଶାସନ ଚଡ ଅଛଇ ବଟକୋଡ । ୮୩ ।
ଦେଖ ଦେଖ କୃଷ୍ଣ ସେ୍ୱ ଦୁଃଶାସନ ମୋର ପୁତ୍ର
ବେଧିରେ ପଖାଳଣ ହୋଇଛୁ ସେ୍ୱହାର ଯେ ଗାତ୍ର । ୮୪ ।
ଧନ୍ୟ ଧନ୍ୟରେ ଭୀମସେନ ପ୍ରତଜ୍ୟାଂ ତୋହୋର ଧନ୍ୟ
ବେଧିରେ ପଖାଳିଲୁ ଯେ କେଶ ଜାଜ୍ଞସେନୀ । ୮୫ ।
କ୍ଷତ୍ରୀପଣ କର ରେ ସମରେ ମରାଇଲୁ
ହୃଆ ବଦାର କର୍ମେ ରୁଧିର ପାନ କଲୁ । ୮୬ ।
ବୋଲଇ ଭୀମସେନ ନାହିଂ ନାହିଂ ମୋର ଦୋଷ
ପବର ପ୍ରତଜ୍ୟାଂ ସାଗୃ କଲି ଗୋ ଦେଖିଲେ ବିଦଶ । ୮୭

ଭୀମସେନ ବୋଇଲ୍ଲ ଗୋ ଏଷ୍ଟେ ପାଏ ଲଭିଲି ଗାଣ
ଅପକୀର୍ତ୍ତି ହୋଇବ ବୋଲି ଗୋ ନ କଲି ଗର୍ଭଗତ । ୮୮ ।
ଦ୍ରୌପଦୀର କେଶ ଗୋ ଯେ ଧଇଲା ଯେବଣ ହାତେ
ସେ ହାଥ ଉପାଡ଼ିଲି ଗୋ ମାନଗୋବନ୍ଦ ଦେଖନ୍ତେ । ୮୯ ।
ଚଳଇ ଗାନ୍ଧାରୀ ଯେ ବଧୂର ତୁଲି ଘେନି
ଦେଖିଲେ ପଡ଼ିଅଛି ମନ୍ତ୍ରୀବର ଶକୁନି । ୯୦ ।
ଆରେ ବାବୁ ତୁହ୍ନରେ ଗାନ୍ଧାର ଦେଶ ଆଧିପତି
ସୁବୁଦ୍ଧି ମନ୍ତ୍ରୀ ତୁହ୍ନ ଉପାୟେ ଚକ୍ରବର୍ତ୍ତୀ । ୯୧ ।
ଅନମିତେ ମାନଗୋବନ୍ଦ କଲି ପେଞ୍ଜଇ କୃତ୍ୟ
ପାଷାଣ ଘରେ ପ୍ରବେଶ ମାଇଲ୍ଲ ମୋର ଛାତ । ୯୨
ତହୁଂ ଜବୁଦିଲୁ ତୁ ଚେ.ହୋର ବୁଦ୍ଧି ବଳେ
ପିତାଉକଇଂ କାହ୍ନଣ ତୁ କଲୁ ସ୍ନେହେ କାଳେ । ୯୩ ।
ଦେଖ ଦେଖ ଶ୍ରୀକୃଷ୍ଣ ଯେ ମୋହୋର ସହୋଦ୍ର ଯେ ଭ୍ରାଥ
ଉପାୟେ କରି ଯେତି ମରାଇଲା ସମସ୍ତ । ୯୪ ।
ଭାଇଂକ କସ ଦୋଷ ଦେବା ହୋ ଜଗୁନାଥା
ଶୋକ ନ ରହଇ ମୁଂ ଦେଖିଜରି ଯେହା । ୯୫ ।
ଯେ ଯେବେ ଶ୍ରୀକୃଷ୍ଣ ନ କରନ୍ତା ଯେତେ କୃତ୍ୟ
କାହିଁଇ ମରନ୍ତେ ହରି ଟପ୍ଲ ମୋହୋର ଶତେପୁତ । ୯୬ ।
ହେ କୃଷ୍ଣ, କୁରୁ ପାଣ୍ଡବ ବେନିକଳ ନିମଜ୍ଜିଲା
ଶକୁନିର ହେତୁ ଯେତେ କୃତ୍ୟଟି ହୋଇଲା । ୯୭ ।
ଆରେ ଆରେ ଶକୁନି ତୁ ନର୍କଗତ ପାପ
ଦୁର୍ବୁଦ୍ଧି ପଣେ ମରାଇଲୁ ଯେ ମୋହୋର ପୁଅ । ୯୮ ।
ତହୁଂ ଚଳଯାନ୍ତେ ଗାନ୍ଧାରୀ ଦେଖିଲା ଜଦ୍ୟରଥ
ଯେ କସ ଦୋଷ କଲାରେ ଯେହାକୁ ମାଇଲୁ ବୀର ପାଥ । ୯୯ ।
ଦୃଶୀଲା କ ତୁମ୍ଭର ରେ ନୁହଇ ଉପ୍ତେଣୀ
ହେଲେକ ଦୋଷ କମା ଉପେଷା ନ କଲୁ ଫାଲଗୁନି ।୧୦୦।
ବୋଲଇ ଫାଲଗୁନି ଶୁଣସି ଗୋ ମାତ
କପଟେ ଅଭିମନ୍ୟୁକୁ ମରାଇଲା ଜଦ୍ୟରଥ । ୧୦୧ ।

ବନସ୍ତେ ହତ ଅଣୁଥିଲ ଯେ ଆମ୍ଭର ଭାଗିନା
ବୃଷିଲର ଜୟଦ୍ରଥ ବୋଲେକ କଲୁ ଆମ୍ଭେ ଡେଜ୍ୟା । ୧୦୨ ।
ତହୁଂ ରୋଦନ କରି ଚଳଇ ଧୃତରାଷ୍ଟ୍ରର ରାଣୀ
ଅଠାଶୋଇ ଭାଇ ପଡିଅଛନ୍ତି ବହଇ ଘନ ଘନ ଶ୍ରୋଣି । ୧୦୩
ହା ହା ପୁତ୍ରରେ ମମ ପ୍ରାଣ ସମସର
ସମ୍ପଦ ନ ଦେଖିଲି ଅନ୍ଧ ପଡିଲ ବାନ୍ଧବକର । ୧୦୪ ।
ଯେ ତୁମ୍ଭର ବିପତ୍ତି ଦେଖିଲାରେ ବାବୁ
ଦେଖ ହେ ଶ୍ରୀକୃଷ୍ଣ ସଂପୋଡେଣ ବଂଶ ମୋର
ନାଶକଲ ସବୁ । ୧୦୫ ।
ଉଚ୍ଚସ୍ୱରେ ବେଦନ କରି ଦେବୀ ପଡି ଗଲ ମୂର୍ଚ୍ଛା
ଯେତେ ପୁତ୍ର ଉପୁଜାଇ ହୋଇଲି ମୁହିଂ ତୁଚ୍ଛା । ୧୦୬ ।
ବିଦୁର ସଞ୍ଜୟ ଦୁହେଂ ତାଂକୁ ଧଇଲେକ ଟେକି
ବୋଇଲେ ଗାନ୍ଧାରୀ ଦେଖ ଦେଖ ହେ ବନମାଳୀ । ୧୦୭ ।
ଆସ ବାବୁ ଭୀମସେନ ରେ ଚୁମ୍ବଂଇ ତୋର ମୁଖ
କେସନେକେ ପାସୋରିବ ରେ ଶତେପୁତ୍ର ଦୁଖ । ୧୦୮ ।
ତହୁଂ ରୋଦନ କରଣ ଚଳିଲେ ଗାନ୍ଧାରୀ
ବ୍ୟାସ ସରୋବର ତୀରେ ମିଳିଲେ ତତକ୍ଷଣି । ୧୦୯ ।
ଦେଖିଲେ ଅବସ୍ଥାଯେ ପଡ଼ିଛି ଦୁର୍ଯୋଧନ ନୃପମଣି
କାତରେ ରୋବଇ ଦେବୀ ଦୁର୍ଯୋଧନ ଗୁଣ ଗୁଣି । ୧୧୦ ।
ମଣିମୟ ମୁକୁଟ ଯେ ହୃଦେ ଶୋହେ ରତ୍ନହାର
ନିର୍ମଳ ମେଘେ ଯେସ୍ନେ ଉଦେହୋନ୍ତି ଲକ୍ଷେ ତାର । ୧୧୧ ।
ଅନେକ ଦେଶର ଯେ ପଡିଅଛନ୍ତି ଦଣ୍ଡଧାରୀ
ମଣିମୟ ମୁକୁଟ ଭୂମିରେ ଛନ୍ତି ପଡ଼ି । ୧୧୨ ।
ଦେଖିଣ ଗାନ୍ଧାରୀ ଯେ ମୂର୍ଚ୍ଛାଗତ ଗଲ
ସଚେତ ହୋଇ ପୁଣି ଅନେକ ଶୋକ କଲ । ୧୧୩ ।
ଜମାଇଂ ଭୀମସେନ ରେ ଯେତେ ଅଧର୍ମ କୃତ୍ୟ କଲୁ
ଦୁର୍ଯୋଧ- ଜାନୁରେ କମ୍ପେ ଗଦାଯେ ପିଟିଲୁ । ୧୧୪ ।

---

୧୧୧। ନିର୍ମଳମେଘେ ଯେସ୍ନେ ଉଦେ ହୋନ୍ତି ଲକ୍ଷେତାର । (ତ,ନ,ଖ)

କୋଟିଏ ଜନ୍ମେ କରଣ ରଶ୍ମି ଯେତେଶ ମୁକୁଟ
ପାଦେଣ ତାହାକୁ ଚୂର୍ଣ୍ଣ କଲୁରେ ପାପିଷ୍ଠ । ୧୧୫ ।
ବୋଲଇ ଭୀମସେନ ଶୁଣସି ଗୋ ମାତ
ଦ୍ରୋପଦୀ ଜାନୁ ଯେ ଦେଖିଲା ତୋର ସୁତ । ୧୧୬ ।
ତେଣୁକର ଶାପ ତାକୁ ଦେଲେକ ଦ୍ରୋପଦୀ
ଯାଅରେ ଦୁର୍ଯୋଧନ ତୋତେ ହେଉ
ଜାନୁଭଗ୍ନ ଶାସ୍ତି । ୧୧୭ ।
ଅପାର ଦୋଷ ଗୋ କଲେ ତୋର ସୁତ
ଅଜାତ ଶତ୍ରୁକୁ ଗୋ ଖେଳାଇଲେ ଜୁଆ । ୧୧୮ ।
ତେର ବରଷକୁ ଗୋ କଲଇ ନିୟମ
କୃଷ୍ଣକୁ ପେଷିଣ ଗୋ ମାଗିଲୁ ପଞ୍ଚ ଗ୍ରାମ । ୧୧୯ ।
ଦୁତପଣେ ଚଳନ୍ତେ ସେ ଅଇଲେ ମୁରାରି
ସେକାଳେ ସୁତନ୍ତ ଗୋ ଜୁଆଚିଲୁ ତୁଅ଼ାରି । ୧୨୦ ।
ଭୁଜ କ ନଜାଣୁ କପଟେ ଖୁଆଇଲେ ମୋତେ ବିଷଲଡ
ଆଜ୍ଞାର ଆମ୍ଭନ୍ତ କହୁ ତୋହୋର ମୂହଂ ପୋଡ଼ୁ । ୧୨୧ ।
ଜଉର ଘରେକ ଯେ ଭିଆଇଲେ କୂଟେ
ସବେଣ ତାହା ପୋଡ଼ିଦେଲେ ଗୋ କପଟେ । ୧୨୨ ।
ସପ୍ତବାଟି ଲେକନ୍ତ ଗୋ ଦେଲେକ ଯେତେହେନେକ ଶାସ୍ତି
କେତେ ହିଂସାସ ଗୋ ସହିବ ପ୍ରଜାପତି । ୧୨୩ ।
ଆମ୍ଭମାନଂକୁ ପଶିତେ ନ ଦେଲେକ ରାଜ୍ୟକୁ
ସେ କାଳେ କର୍ମେ ନ ତଆରିଲ ପୁଅଂକୁ । ୧୨୪ ।
ମଧ୍ୟପାଣ୍ଡପଣେ ଯେ ପୁଣି ଗଲେ ଜନାର୍ଦ୍ଦନ
ସଭାର ତଳେ କୃଷ୍ଣଂକୁ କଲେ ଅପମାନ । ୧୨୫ ।
ସେ କାଳେ ତଆରିଣ କର୍ମେ ନ କଲୁ ଗୋ ମାୟେ
ଅତି ମନ୍ଦ ବୁଦ୍ଧିରେ ଗୋ ଅବଶ୍ୟ ଅପଜୟେ । ୧୨୬ ।

---

୧୧୫।୨—ପାଦେଣ ତାହାକୁ ଭଙ୍ଗିଲୁ ଲଲାଟ । (କ,ଣ,ଦ,ଘ,ଝ,ଚ)
୧୨୦।୨—ଦୁତପଣେ ବାହୁଡ଼ି ସେ ଅଇଲେ ମୁରାରି । (ଝ,ଦ,ଛ)
୧୨୦।୨—ଅପମାନ ଦେଲ ଫେରି ଅଇଲେ ମୁରାରି । (କେତେକ ପୋଥି)
୧୨୦।୨—ନ ଭଙ୍ଗିଲୁ କଳ କର୍ମେ ସୁତନ୍ତ ସେକାଳେ ତଆରି । (ଖ,ଠ,ନ)

ପୂର୍ବର ପରାଭବ ମାଗୋ ଅଦୃଷ୍ଟକୁ ନିନ୍ଦ
ସେକାଳେ ନବୁଝି ଗୋ ଯେବେ କର୍ମେ କାନ୍ଦ । ୧୨୭ ।
ପୁଣିହିଂ ବେଦନ କରି ଗାନ୍ଧାରୀ ବୋଇଲ
ମାଇଲ ଉତ୍ତରେ ମନ ତୋର ଶାନ୍ତ ଯେ ନୋହିଲ । ୧୨୮ ।
ପଡିଲ ଦୁର୍ଯୋଧନ ଯେ ଗଦାଘାତ ପାଇ
ପଡିଲ ଉତ୍ତରେ ମୁକୁଟ ମର୍ଦ୍ଦିଲୁ କମ୍ପାଇଂ । ୧୨୯ ।
ଅନେକ କ୍ରୋଧ ଦେବୀ ହୋଇଲେ ଅସମ୍ଭାଳ
ମାନଗୋବିନ୍ଦ ରାଜାକଇଂ ଉଠିଯାଇ କଲ କୋଳ । ୧୩୦ ।

ଜଠ ଜଠ ତାବୁରେ ମାନ ଚକ୍ରବର୍ତ୍ତୀ
କେତେ ନିଦ୍ରା ଯାଉରେ ପ୍ରହର ହୋଇଲାନି ରାତି । ୧୩୧ ।
ବାବୁ କେତେକ ଯୁବତୀ ତୋତେ ଚାମର ଢାଳନ୍ତି
ହଂସତୁଳି ଭୁଳରେ ନିଦ୍ରା ନ ମାଉଇ ନିତି । ୧୩୨ ।

ସହସ୍ରେ ପଳ କସ୍ତୁରୀ ଲେପନ ତୋହୋର କାୟେ
ଯେବେତ ଶରୀର କଲୁ କର୍ମେ ରକତମୟେ । ୧୩୩ ।
ନଲେ ବଞ୍ଚିଲୁ ତୁରେ ପୁଣ ନିରଞ୍ଜନ ପଦ
ଏତେମାନେ ନାମ ତୋ ହୋଇଲା ମାନ ଯେ ଗୋବିନ୍ଦ । ୧୩୪ ।

ପୁଣି ବୋଲନ୍ତି ବାବୁ ହେ ଦେବ ଶୁଣ ତୁହି
କଉରବ କାମିନୀ ଦୁଃଖ ଦେଖି ଦେହ ସହୁନାହିଂ । ୧୩୫ ।
କେହି ପତି କେହି ପୁତ୍ର କେହି ଭ୍ରାତା ନାତି
କେହିବା ବନ୍ଧୁ ବାନ୍ଧବ ପାଇଂ କାନ୍ଦୁଛନ୍ତି । ୧୩୬ ।
କାକ ଶୃଗାଳ କୁକୁର ଗୃଧ୍ର ତୋଷ ବହି
ଶତ ଶତ ମୃତ୍ତପିଣ୍ଡ ଭକ୍ଷୁଛନ୍ତି ଧାଇଂ । ୧୩୭ ।
ସମର ନିହତ ବୀରଗଣଂକ ଦଶା ଚାହିଂ
ବେଶବାସ କେଶପାଶ ସ୍ତ୍ରୀନେ ଶ୍ରୀ ହରାଇ । ୧୩୮ ।
ହା ହା କାର କରି କାନ୍ଦୁଛନ୍ତି ଦେଖି ଦେଖି
କେବା ମୃତ ସୁହୃଦଂକ ଦେଖୁଛନ୍ତି ମୁଖ । ୧୩୯ ।
କେବା ତାଂକ ଗୁଣ ଗୁଣି କୁରରୀ ପରାୟେ
କାନ୍ଦୁଛନ୍ତି ନେନୁ ନୀର ଝର ଝର ବହେ । ୧୪୦ ।

କେବା ବକ୍ଷ କର ତାଡ଼େ କେ ମହୀରେ ଗଡ଼େ
କେବା ପ୍ରାଣନାଥ ବୋଲି ଉଚ୍ଚେ ରଡ଼ ଛାଡ଼େ । ୧୪୧ ।
ଚନ୍ଦ୍ର ସୂର୍ଯ୍ୟ ଯାହାଙ୍କର ରୂପ ଦେଖିନାହିଁ
ସେମାନେ ଦ୍ୱୈଠାରେ ଭ୍ରମୁଛନ୍ତି ବାଇ ହୋଇ । ୧୪୨ ।
ଅଷ୍ଟାଦଶ କ୍ଷୌଣୀ ସେନା ମହାପ୍ରାଣୀ
ଯମ ଘରର ଅତିଥି ହୋଇଲେ ଚକ୍ରପାଣି । ୧୪୩ ।
ଦେଖ କୃଷ୍ଣ ବିହ୍ୱଳ ଭାନୁମତୀ ଦୁର୍ଯୋଧନ ନାରୀ
ମୃତ ପତି ବକ୍ଷେ ମଥା ଅଛି ନତକରି । ୧୪୪ ।
କାନ୍ଦୁଛନ୍ତି ମୋତେ ଗୁଣ୍ଡିକରି କେଣେ ଗଲ
ଅପ୍ରିୟ ବଚନ ପଦେ ବାରେ ନ କହିଲ । ୧୪୫ ।
ବିରାଟ ଝିଅ ଲୁମାସି ଉତ୍ତରା ସୁନ୍ଦରୀ
ମୃତ ଅଭିମନ୍ୟୁ ମୁଖ ନୟନେ ନିହାରି । ୧୪୬ ।
କର୍ଣ୍ଣ ଦୁର୍ଯୋଧନାଦିଙ୍କୁ କରୁଛି ଧିକ୍କାର
ନେତ୍ର ନୀରେ ହୋଇଅଛି ଅଂଗ ଜର ଜର । ୧୪୭ ।
କହୁଛି ହେ ନାଥ ଛଅମାସ ହେଲା ମୋତେ
ବିଧବା ହୋଇଗଲି ସତ ବଳିଲି କେମନ୍ତେ । ୧୪୮ ।
ସ୍ୱର୍ଗ ବିଦ୍ୟାଧରୀ ସଙ୍ଗେ ରହିବ ସୁଖରେ
ମୁହିଁ ସିନା ଘାଣ୍ଟି ହେଉଥିବି ଦୁଃଖ ଘୋରେ । ୧୪୯ ।
କପାଳେ ବିଧାତା ମୋର ଯେତିକି ଲେଖିଥିଲା
ତୁମ୍ଭ ମୁଖ ଦେଖି ଯା ମୋ ଜୀବନ ନଗଲା । ୧୫୦
ଆନ ବଧୂଗଣ ଯାହା କରୁଛନ୍ତି ଶୋକ
ତାହାତ ପ୍ରତ୍ୟକ୍ଷେ ଦେଖୁଅଛ ପଦ୍ମମୁଖ । ୧୫୧ ।
ଏହିପରି ବହୁ ଶୋକ ଗାନ୍ଧାରୀ ଯେ କଲେ
ଶୁଣିଣ ପ୍ରହସିତ ହୋଇ ଶ୍ରୀକୃଷ୍ଣ ବୋଇଲେ । ୧୫୨ ।]
ଯେ ଯାହାର କଲା କର୍ମ ନୁହଇ ଯେ ଆନ
ସେ କାଳେ ନ କଲୁ କର୍ମେ ବିଦୁର ବଚନ । ୧୫୩ ।

---

୧୫୩।୨—'ସେ କାଳେ ନକଲୁ କର୍ମେ ବିଦୁର ବଚନ' ପାଠପରେ କେତେକ ପୋଥିରେ ଅଧିକ ପାଠ । (ଧୃତରାଷ୍ଟ୍ର ଗାନ୍ଧାରୀର କ୍ରନ୍ଦନ ବୃତ୍ତାନ୍ତ)

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ସେବେକର କଥା ନ ପଶିଲା ତୋର କର୍ଣ୍ଣେ
ଯେବେ ଶୋକ କାହିଁପାଇଁ କରୁ ଦେବୀ ମନେ । ୧୫୪ ।
ସ୍ଥଳ ସ୍ଥଳ ଦେଖା ଗୋ କୁରୁକ୍ଷେତ୍ର ବୁଲି ଯିବା
ଦ୍ୱାଦଶ ଯୋଜନ ଭୂମି ବୁଲି ଦେଖିବା । ୧୫୫ ।
ଗାନ୍ଧାରୀ ବୋଇଲେ ଅହେ ଶୁଣ ପୀତବାସ
ଆବର ରାଜାଙ୍କୁ ଦେଖି ପ୍ରୟୋଜନ କିସ । ୧୫୬ ।
ଲକ୍ଷେରାଜା ଯେଉଁଠାରେ ହୋଇଛନ୍ତି ନାଶ
ତାପରେ ଛାଟରେ ଗଡ଼ୁଛନ୍ତି ନ ଦିଶଇ ଦିଶ । ୧୫୭ ।
ଶ୍ରୀକୃଷ୍ଣ ବୋଇଲେ ସମରେ ମୃତ୍ୟୁ ପାଇଲେ ଯାଦେ ବଡ଼ ଲାଜ
ତେଣୁକରି କରାଇଲି ଗୋ ପାଣ୍ଡବଙ୍କରେ କାର୍ଯ୍ୟ । ୧୫୮ ।
ଶୁଣିଣ ବଇକୁଳ୍ୟେ ଯେ ବୋଇଲେ ଗାନ୍ଧାରୀ
ତୁମ୍ଭେ ସେ ନାଶକଲ ବଂଶପାକ ଦେବହରି । ୧୫୯ ।
ଆନକଇଁ ଦୋଷତ ମୁଁ ନୁଆଁଇ ଦେଇ
ବେନିବଂଶ ଅନ୍ୟୋଅନ୍ୟ କରାଇଲ ତୁମ୍ଭେ । ୧୬୦ ।

---

ପୂର୍ବ ପୃଷ୍ଠାର ପାଠାନ୍ତର :—
ଯେବେ ଭଜିଲେ ଗୋ ହୋଇବ କିସ ପୁଣ
ଗାନ୍ଧାରୀ ବୋଇଲେ ହୋ ଶୁଣିମା ନାରାୟଣ ।
ପୂର୍ବର ପାତକ ମୋର ଯେତେକେ ଯିନା ଯୋଗ
ସଞ୍ଚିପି କରି ହରି କହିବା ମୋର ଆଗ ।
ଗୋବିନ୍ଦେ ବୋଇଲେ ଯିନା ପୁଚ୍ଛିଲ ମୁଁ ସାର
ପୂର୍ବର ପାତକ ଯିନା ଯେତେ ଭୋଗକର ।
ତୁ ଯେବେ ପଚାରିଲୁ ପୂର୍ବର ବାରତା
କହିବା ତୋତେ ମୋର ଗୋ ଯଥାର୍ଥେ କଥା ।
ଶୁଣ ଯେକମନେ ଧୃତରାଷ୍ଟ୍ର ଯେ ଗାନ୍ଧାରୀ
ସଂହାରେ ଅର୍ଜିଲେ ହୋ ଯେତେଣ କଥା କରି ।
ସେ କଥା ତୁମ୍ଭଙ୍କୁ କହିବି ମୁହିଁ ଭଲେ
ପଞ୍ଚାର କାଳର କଥା ଯେ ସତ୍ୟଯୁଗ ଭୋଗକାଳେ ।
ଧୃତରାଷ୍ଟ୍ର ଆଦ ଜନ୍ମ ଶବର ଜାତି
ତୁ ଯେ ଗାନ୍ଧାରୀ ତାର ପ୍ରିୟର ଯେକମତ ।
[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଆନର ଚରିତ ଯେ ନୁହଇ ଦେବତଣ
ଯେକଇ ବଂଶେ ତୁ କରାଇଲୁ ପେ ବଇର । ୧୬୧ ।
ତୋହୋର ଗ୍ୟାନେ ନାଶ ଗଲାଟି ମୋର ବଂଶ
ହେ କୃଷ୍ଣ ଯେହ୍ନମତ ହୋଇ ତୋହୋର ବଂଶ ନାଶ । ୧୬୨ ।
ଯେକ ସୋଦରେ ସେ ଅନ୍ୟୋଅନ୍ୟ କରାଇ
ଯେହ୍ନମନ୍ତ ତୋହ ବଂଶ ନାଶଯାଉ । ୧୬୩ ।
ଯେ ବଚନ ଶୁଣି ସ୍ଵାମୀ ଭକତବତ୍ସଲ୍ୟ କାଯେ
ଉତ୍ତମ ଶାପ ମୋତେ ଦିଲୁସି ଗୋ ମାଯେ । ୧୬୪ ।
ମୂର୍ଖଂ ସେ ଆନକୁ କରଇ ନାଶ ଅନ୍ତକାଳେ
ମୋତେ କେତୁ ପ୍ରମାଦ ଶକ୍ତିକ ରଚଚଲେ । ୧୬୫ ।

---

ପୂର୍ବ ପୃଷ୍ଠାର ପାଠାନ୍ତର :—

ତୋହୋର ସ୍ଵାମୀର ନାମ ଅଟଇ ଲ୍ଲଷିତା ବ୍ୟାଧ
ଜରତା ନାମେ ବ୍ୟାଧୁଣୀ ଅଟୁ ତୁହ୍ମ ସାଧ
ତୁମ୍ଭରେ ପଞ୍ଚୀଜନ୍ତୁ ନ ବସନ୍ତି ଭୂମି
ବୃଷ୍ଟ ତେଜ୍ୟାକରି ହୋନ୍ତି ଅନ୍ତରୀକ୍ଷଗାମୀ ।
ପଞ୍ଚୀଜନ୍ତୁ ଭୂମିରେ ଯେ ନୁଆରନ୍ତି ଚରି
ନାନା ଜୀବଜନ୍ତୁ ସମସ୍ତେ ତୁମ୍ଭଂକୁ ଉସ୍ୱେକରି ।
ଯେ ମନ୍ତର ସମୟେ ଯେକଗୋଟି ପକ୍ଷୀ
ଗର୍ଭଭର ପାଇ ସେ ଅବ୍ଧଳ ହୋଇଅଛି ।
ସମାତ ନାମେ ପକ୍ଷୀ ଅଟଇ ଗର୍ଭବତୀ
ପିଲ୍ଲ କରିବାକୁ ସେ ଚଳାଇଲା ମତି ।
ବିଗୁଦଇ କାହ୍ନଂ ମୁହ୍ନଂ କରିବ ବିଶ୍ରାମ
ଲ୍ଲଷିତା ବ୍ୟାଧକଇଂ ଯେ ଉସ୍ୱେ ତାର ମନ ।
ସମାତି ନାମେ ପକ୍ଷୀ ଯେ ଲ୍ଲରିଛା ସନ୍ନିଧାନେ
ଡିମ୍ବ ପାଳିବୁ ପାଇଂ କେବଣହ୍ନଂ ବନେ ।
ଜରିଜା ବୋଇଲା ସ୍ଵାମୀ ଶୁଣ ମୋର ବାଣୀ
ବ୍ୟାଧରେ ଶରଣ ପଶିବା ପକ୍ଷପତ୍ନୀ ବେନି ।
ଲ୍ଲରିଜା ବଚନେ ଯେ ପକ୍ଷୀ ଚଳିଗଲା
ଲ୍ଲଷିତା ବ୍ୟାଧ ମନ୍ଦିରେ ଅଶ୍ରମ ପାଇଂ କଲା ।

[ପ୍ରକଷିପ୍ତାଂଶ ଉଦ୍ଧୃତାରେ]

ଆଗରେ ଆଗରେ ମରିବେ ଗୋ ସେ ହୋଇବ ସତ୍ୟ
ସେ ବଚନ ପ୍ରମାଣ ହେଉ ଗୋ ମୋତେ ମାତ । ୧୬୬ ।
କୃଷ୍ଣର ବଚନେ ଗାନ୍ଧାରୀ ପାଇଲେ ବଳ
ଭଲ ଶାପ ଭଲି ତୁମ୍ଭଂକ ହୋଇବ ଦେବତାଙ୍କି । ୧୬୭ ।
ଲଜ୍ଜାପାଇ ଗାନ୍ଧାରୀ ଯେ ହୋଇଲେ ତୁଷ୍ଣି
ସମ୍ବୋଧନା କଲ ତୁମ୍ଭଂ ଅନନ୍ତ ସ୍ଵଶ୍ରେଷ୍ଠ । ୧୬୮ ।
ପୁତ୍ରେଷ୍ଟ ବୋଇଲେ ଗୋ ମାତ କଥର ଆନ ଚିନ୍ତା
ଯୁଦ୍ଧଂ ସେ ଅଳ୍ପରେ ଭ୍ରମ୍ଭଂକୁ ବନ୍ଦେ ଭଗତା । ୧୬୯ ।

---

ଭୂବ ପୁସ୍ତାର ପାଠାନ୍ତର :—
ଚତୁର୍ଭୁଜ ରୂପରେ ବସାଇଲ ପକ୍ଷୀ
ଜମ୍ବୁ ଶାଖେ ସେ ବଣା ଜଗି ବସିଅଛୁ ।
ଭାଉ କଥକ ଭାଇଂଷ ବ୍ୟାଧ ତା ଦେଖିଲ
ଶରଷ ପକ୍ଷିଛୁ ତୋର ବ୍ୟାଧ ଜାଣୁଥ ଅଛିଲ ।
ସେ ମତେ ଜମ୍ବୁ ସେ ଶାଖେ ଯୋଡି ଉଚ୍ଚେ
କଣ୍ଠିତେ ବସିଅଛେ ହୋଇଷ ଭଉ ସେ ।
ଏତେବୋଲି ଚିତ୍ତ କଲ ସମାନ ନାମେ ହୁରୀ
ଢଳିଯୁ ହୋଇଣ ସେ ପୂରସ୍ତ ବସିଅଛୁ ।
କହନ୍ତା ମାସ କୃଷ୍ଣଙ୍କେ ଅମ ତଲ ଏଥି
ଶୋଭ ଅନ୍ଧକାର କର ମେଘ ବରଷିନ୍ତୁ ।
ଦୁଇ ଦୁଇ ବନନ୍ତେ କଛୁ ନ ପାଇଲ ବ୍ୟାଧ
ଜାଣୁଥ ଅଛିଲ ସେ ମନରେ ପାଇ ଖେଦ ।
ଜମ୍ବୁ ଫଳର ସେ ଭଙ୍ଗିତା ବ୍ୟାଧତର
ମରଣ ହୋଇ ବସିଲ ବ୍ୟାଧ ଘରଣୀ ଜଗର ।
ବ୍ୟାଧର ଶମ୍ଭୁକ ବେଣ୍ଟି ହି ଉଠିଲେ ଧାତ
ଏତେବୋଲି ପୁତ୍ର ମୋଡ ପଡିଲ୍ ସ୍ଵାମୀ ଜତ ।
ପକ୍ଷୀମାନଙ୍କ ମାର ପଣି ତୁମ୍ଭଂ ଫେରାଇଲ୍ ବ୍ୟାଧତ
ଦେଖିଣ ଜମ୍ବୁସେ ଶୋ ହୋଇଲ ତେଉର ହେ ।
ଶରଣ ପକ୍ଷିଲ ପକ୍ଷୀକୁ ମାରିଲ୍ ହନମନ୍ତ
ତ୍ରିସ୍ତୃଚ ବୋଷ ତୋତେ ଏତଣ୍ୟ ଫଳତରି ।

[ଏବସିଦ୍ଧାଂଷ ଓଡ୍ରେସ୍ତୃରେ]

ରଥ ବାହୁଡାଇ ଚଳନ୍ତି ଧୃଷ୍ଟଦ୍ୟୁମ୍ନ ନୃପତି
ଶ୍ରୀକୃଷ୍ଣ ବୋଇଲେ ସ୍ୱାମୀ ଶୁଣିମା ଯୁଧିଷ୍ଠି । ୧୬୦ ।
ଯାଜ ଅମ୍ଭେ ଯିବା ତେଣେ ନାହିଁ କିଛି କାର୍ଯ୍ୟ
ପାଟ ଅଭିଷେକ ହୋଇ ସୁଖେ କର ରାଜ୍ୟ । ୧୬୧ ।
ତହୁଂ ଲଗ୍ନକ୍ଷଣେ ଯେ କରନ୍ତି ଗମନ,
ଦ୍ରୌପଦୀ ଆଗେ ଯାଇଂ କହନ୍ତି ଯୁଧିଷ୍ଠି ସକଳ । ୧୬୨ ।
ଶ୍ରୀକୃଷ୍ଣ ହସନ୍ତହିଂ ବୃତ୍ତାନ୍ତ କହିଲେ
ମାୟା ଚରିତ୍ରେ ଶ୍ରୀକୃଷ୍ଣ ଅମୃତ ଭିଷାଇଲେ । ୧୬୩ ।
ଯାହାର ଚରିତ୍ର କହିଲେ ନ ସରଇ
ଦେଲେ ଯୁଧିଷ୍ଠିରଙ୍କୁ ବଳେ ରାଜ୍ୟଭାରଇ । ୧୬୪ ।
ବ୍ରହ୍ମା ଅନ୍ତକର ନୁଆଇଲେ ମାୟା ଯାହାଙ୍କର
ସେ କୃଷ୍ଣ ଚରଣେ ଶରଣ ମୋହୋର । ୧୬୫ ।

---

ଶୂଦ୍ର ଦ୍ୱାର ପାଠାନ୍ତର :—

ଯେତେ ବୋଲି ନୟନ ନ ବୁଜସି ଦ୍ରୁପଦିତା
ଯେ ପାପକୁ ମୋତେ ଲାଗିବ ବିଧାତା ।
ଶପ ଭୁଞ୍ଜିଲି ସେ ସମାପ୍ତ ନାମେ ଦୋଷୀ
ଚରଣ ପଛିଲୁ ଠାରେ ମାଇଲୁ ମୋର କଷି ।
ଦେହ ଛିଡ଼ି ପାପ ଯେତେ କଲୁ ନ ଡରିରୁ
କପଟ ବଶେ ହେବୁ ତୁ ସୋମବଂଶେ ବଧୁଧାରୀ ।
ସେ ଚିହ୍ନେ ଶତେପୁଣ ହୋଇବ ତୋହୋର
ସେବା ଭଣ୍ଡେ ତାହା ଭବିବ ପଡ଼ିହାର ।
ଶତେପୁତ୍ର ଭସ୍ମଜାଇ କୃଷ୍ଣ ଅଷ୍ଟ ଭୂତା ଅଷ୍ଟ ଭୂତ
ଶରଣ ପଶିବାରେ ଯେବେ ମାଇଲୁ ନ ଭବିର ।
ଶାପ ଦେଇ ଋଷୀ ସେ ତହୁଂ ଚଳିଗଲ
ଫଟୀକ ସେକପାଇ ବ୍ରହ୍ମାରେ ଧୀର ଭଲ ।
ଶୁଣ ଗୋ ଗାନ୍ଧାରୀ ପୁତ୍ରର ତୋହର ପାପ
ଫଳିଲୁ ଯେବେ ତୋତେ ତହିଁର ଅଭିଶାପ ।
ଯେବେ କମାଇ କହୁ ଗୋ ଯେତେହେନକ ବୁଝା
ପୁତ୍ରର ଅର୍ଜିଲ ଫଳ ବୁଝି ବୁଝି କି ତର୍ଥ ।

ତ୍ରଇଲୋକ୍ୟ ଆଧିପତି ଅଚନ୍ତ୍ର ଜଗନ୍ନାଥ
ମାୟା ରୂପେ ଅବତରି ଅସୁର କଲେ କ୍ଷୟନ୍ତ । ୧୭୭ ।
ସେ ଦେବଦେବ ଚରଣେ ଶରଣ ଅନୁଦିନ
ବଦନ୍ତି ସାରେଳ ଦାସ ବାକ୍ୟଦେବୀ
ଆଟ୍ୟାଂ ପରିମାଣ । ୧୭୭ । ୨୨୯ ।

ସମାପ୍ତୋଽୟଂ ନାଗପଦ୍ମ ଗ୍ରନ୍ଥଃ



ମୁଦ୍ରାକର—ଶ୍ରୀ ମଦନମୋହନ ଦାସ, ମୁକୁର ପ୍ରେସ, କଟକ-୨

# ସୂଚୀପତ୍ର

## ଶାନ୍ତ ପର୍ବ





# ସାରଳା ମହାଭାରତ

## ଶାନ୍ତିପର୍ବ

### ପାଣ୍ଡବଙ୍କର ଭୀଷ୍ମଙ୍କ ନିକଟକୁ ଗମନ
### ଓ
### ନୀତିବାକ୍ୟ ଶ୍ରବଣ

ଏଥୁ ଅନନ୍ତରେ ବଇବସ୍ୱତ ମନୁ ରାଜା
ଅଗସ୍ତିଙ୍କ ପାଦତଳେ କଲେକ ଦିବ୍ୟ ପଜା । ୧ ।
ହେ ମୁନି ଅଗସ୍ତି ତୁମ୍ଭେ ଅଟ ବ୍ରହ୍ମବେତ୍ତା
କହିବା ସାବଧାନେ ଶାନ୍ତିପର୍ବର ବାରତା । ୨ ।
ଏଥୁ ଉତ୍ତରେ କହି ହୋଇଲ ବ୍ରହ୍ମପତି
ତବ ମୁଖୁଂ ଶୁଣି ମୁହିଂ ହୋଇବି ମୁକ୍ତି । ୩ ।
ଶୁଣ ବଇସୁତ ମନୁ ବଦନ୍ତି ଅଗସ୍ତି
ଶ୍ରୀକୃଷ୍ଣ ସହିତେ ପାଣ୍ଡବ ପାଞ୍ଚମୂର୍ତ୍ତି । ୪ ।
ଏଥୁ ଅନନ୍ତରେ ବଦନ୍ତି ଜନାର୍ଦ୍ଦନ
ଅବଶେଷକ ସଞ୍ଜା ଦେବ କରିବା ବିଧାନ । ୫ ।
ବଦନ୍ତି ଯୁଧିଷ୍ଠି ଶୁଣିମା ଦେବଧର
ଭୀଷ୍ମଙ୍କୁ କହିଲେ ସେ ରାଜ୍ୟ କର ପାର । ୬ ।
ତହୁଂ ଯୁଧିଷ୍ଠି ଭୀଷ୍ମଙ୍କ ତହିଂକି କରନ୍ତି ଗମନ
ସନ୍ୟ ସାଖା ନାହିଂ ତୁଲେଣ ସାତଜଣ । ୭ ।
ଯହିଂ ଭୀଷ୍ମେ କରିଛନ୍ତି ଶରଶଯ୍ୟା
ସନ୍ନିଧ୍ୟେ ପ୍ରଳମ୍ବିତ ହୋଇଲେ ଦେବରାଜା । ୮ ।
ଚକ୍ଷ ବୁଜିଣ ଯେ ଥିଲେ ଦେବବ୍ରତ
ଯୁଧିଷ୍ଠିଙ୍କ ଦେଖି ବିକାଶିଲେ ବେନିନେତ୍ର । ୯ ।
ଭୀଷ୍ମଦେବ ଗୃହିଂଲେ ଯୁଧିଷ୍ଠିଙ୍କ ମୁଖ
ନିଷ୍କଣ୍ଟକ ରାଜ୍ୟ କର ସେବେ ତୋହୋର ସୁଖ । ୧୦ ।

କମ୍ପା ହୋ ଧର୍ମରାଜ ଅଇଲୁ ମୋର ପାଶ
ବଦସ୍କନ୍ତି ପାଣ୍ଡବ ଶୁଣ କୁରୁକୁଳ ମୁଖ୍ୟ ଯେ ପୁରୁଷ । ୧୧ ।
ଆମ୍ଭର ହାତେ ତୁମ୍ଭେ ଟେକିଲ ଜୀବନ
ଯମ୍ମୁଖେ ଫୁଟିଲେ ତେବେ କେହ୍ନ ଜଣିମ ରଣ । ୧୨ ।
ଆମ୍ଭନ୍ତ ତୁମ୍ଭର ଦୟା ସର୍ବଦା ଗାଙ୍ଗେବ
ପ୍ରଥମ ଦିନ ଯାହା ପ୍ରକାଶିଲ ସଦ୍‌ଭାବ । ୧୩ ।
ବୋଇଲ ଯେ ଶର୍ ମାଳ ଶେଯ୍ କଣ୍ଠକେ ହୁଅ ନରନାଥ
ମହନ୍ତଙ୍କ ବଚନ କା ହୋଇବ ଅନଂକୃତ । ୧୪ ।
ଯେ ବଚନ ଶୁଣି ଆଗ୍ୟାଂ ହେଲେ ଗଙ୍ଗାସୁତ
ନିକଣ୍ଟକେ ରାଜ୍ୟ ତୁମ୍ଭେ କର ଧର୍ମସୁତ । ୧୫ ।
ଶ୍ରୀକୃଷ୍ଣ ବଚନେ ତୋତେ କିଛୁ ଭୟେ ନାହିଁ
ଧୃତରାଷ୍ଟ୍ର ପୁତ୍ରେ ଯେବେ ହୋଇଲେ ନିଧନହିଁ । ୧୬ ।
ରାଜ୍ୟକର ଯେବେ ବାବୁ ଧର୍ମ ପ୍ରତିପାଳି
ଅଧର୍ମ ଛଣ୍ଡିହିଂ ନ ସନ୍ଧକରି ମହୀଆଳି । ୧୭ ।
ପରଜା ପାଳବୁ କେହ୍ନ ନୋହିବେଟି ଦୁଖୀ
ପ୍ରଜାଙ୍କ ରକ୍ଷଣେ ସିନା ରାଜା ହୋଏ ସୁଖୀ । ୧୮ ।
ନ୍ୟାୟେ ପ୍ରଜାନ୍ତ ପାଳିଲେ ଇନ୍ଦ୍ର କରେ ବୃଷ୍ଟି
ରାଜ୍ୟ ପ୍ରତିପାଳନେ ପରଜାଙ୍କୁ ପଡଇ ଅନାବୃଷ୍ଟି । ୧୯ ।
ପ୍ରଜା ପ୍ରତିପାଳନଟି ରାଜାର ସର୍ବବଧି
ପରଜା ଅତୁଷ୍ଟ ହୋଇଲେ ରାଜାକୁ ହୋଅଇ
ସକଳ ସିଦ୍ଧି । ୨୦ ।
ରାଜ୍ୟ ଦଣ୍ଡ କରିଗିବୁ ଧାର୍ମିକ ଲୋକ ଦେଖି
ତେବେ ସେ ଜନ ପରଜା ହୋଇବେ ବଡ ସୁଖୀ । ୨୧ ।
ଗ୍ରର ବରଗ ଦେଖିବୁ ବଧ୍ୟ ଯେ ଅବଧ୍ୟ
ଦଣ୍ଡ ଅବଧ୍ୟ କଲେ ତୁ ପକାଇବୁଟି ଛେଦ । ୨୨ ।
ଅଜ୍ଞାତ ବ୍ୟାପାରେ ଦଣ୍ଡିଲେ ଯେ ନାହିଁ ଦୋଷ
ଦୋଷ ଜାଣିଣ ଶାସ୍ତି ଦେବୁ ତୁ ପଣ୍ଡୁଶିଷ । ୨୩ ।

କୋଡ଼ଏ ହାଥ ଭୂମି କରିବୁ ନଳ କାଟି
ପଞ୍ଚବଂଶ ନଳରେ ମାଣେକ ପ୍ରକଟି ।
ବଂଶ ମାଣରେ ଯେ କରିବୁ ଯୋକବାଟି । ୨୪ ।
ବାହିକେ ଛନାଏ କର ଘେନିଥିବୁ ସଞ୍ଜା
ଆମ୍ଭର ଅଯୁତ ଘେନି ବୁଡ଼ିଥିବୁ ରଜା । ୨୫ ।
ଠାବେ ଠାବେ ଗଡ଼ା ଯେ କରିବୁ ଜଳକାଗି
ଇନ୍ଦ୍ର ବୃଷ୍ଟି ନ କଲେ କ୍ଷେତ ଯେମନ୍ତେ ବ୍ରଞ୍ଚ । ୨୬ ।
ଅଳପ ଦୋଷକୁ ବାବୁ ନ କରିବୁ ରୋଷ
ନିରେଖ ଜନଙ୍କୁ ଦେବୁ ପ୍ରାସାଦ ଗୃହବାସ । ୨୭ ।
ବ୍ରାହ୍ମଣେ ଦାନ ଦେବୁ ନ କର କପଟ
ଶିବ ଆଳେ କୋଦୋହନ କରିବୁ ଧର୍ମଗୃହ । ୨୮ ।
ନଗ୍ରମାନଙ୍କରେ ଶଙ୍ଖ ଆଡ଼ର ନାବ ଥିବ
ଶୀତକାଳେ ଦକ୍ଷିଣ ମେଲ୍ଲ ଡୋଳାଇବ । ୨୯ ।
ଅନଳ ଦାନ ତାହାଂ ଦେବ ଠାବେ ଠାବେ
ପଥ ଶ୍ରାନ୍ତ ଜନେ ଯେମନ୍ତେ କ୍ଳେଶ ନ ପାଇବେ । ୩୦ ।
ଗ୍ରୀଷ୍ମ କାଳେ ଦେବୁଟି ପାଣିଦେଣୀ ଦାନ
ଛତା ପାଣ୍ଡୋଇ ଶୀତଳ ସଞ୍ଜା ନାନା ବସ୍ତ୍ରମାନ । ୩୧ ।
ପଥଶ୍ରାନ୍ତ ଲୋକେ ହେବେ ସୁସ୍ଥହୋଂ ଦାଇବେ
ନୃପତିମାନଙ୍କୁ ସେ କଲ୍ୟାଣ ବାଞ୍ଛିବେ । ୩୨ ।
ତାହାଂକର ସନ୍ତୋଷରେ ରଜାର ଶୁଭକାର୍ଯ୍ୟ
ଯେହୁ ବଗୃର କାର୍ଯ୍ୟ କରିବୁ ଧର୍ମରାଜ । ୩୩ ।
ପ୍ରଜା ମୁଖେ ହେବେକେ ଉପୁଜଇ ସାଧୁବାଣୀ
ଯମ ତାହାକୁ ଦଣ୍ଡି ନୁଆରଇ କାଳପାଶ ଘେନି । ୩୪ ।
ଭାଇନ୍ତ ପେଷିବୁଟି ରାଜ୍ୟ ପରକଳ
ଉଚରୁ ମୁଖୁଂ ବାରତା ଶୁଣିମୁଂ ତନ୍ନଓଲ । ୩୫ ।
ମଉଫୁଲ ନିଯୋଗ ବିଶ୍ୱାସ ଲୋକ ହାଥେ ଦେବୁ
ସେ ଲୋକକୁ ଅଧିକାର ନ ଦେବୁ ନ ଦଣ୍ଡିବୁ । ୩୬ ।
ଧନ ଚଉର୍ଯ୍ୟ ଦାରା ଅନ୍ୟାଏ ଦଣ୍ଡନନ
ଅପ୍ରାଧି ଜନେ କ୍ଷମା କରିବୁ ବୋଲନ୍ତି ଶାସ୍ତ୍ରଜ୍ଞ । ୩୭ ।

ଷାଠି ବରଷ ଯୋଡ଼ା ଗଡ଼ାନ୍ତି ନ ଷଣ୍ଢ ଭରତ
ଷୋଳ ବରଷର ଗାଭାଣୀ ନଚାଇ କରନ୍ତି ଗଜମତ୍ତ । ୩୮ ।
ସତର ବରଷର ଘୋଡ଼ା ହୋଇଥିବ ଚିକ୍କ
କଳସୁ ମାଡ଼ନ୍ତି ତାଙ୍କ କନ୍ଧଥିବ ଖଳ । ୩୯ ।
ଅଶ୍ୱଗଜ ଗାଭାଣ୍ଡ ଲାଗିଲେ ସାଜିଥିବ
ବେଳା ଅନୁସାରେ ଅନ୍ତକାଳ ତେ କଥିବ । ୪୦ ।
କହୁଥିଲେ ଅନୁଦ୍‌ଦେ ଦେଖୁଥିବ ତେଜ
ଉଭରସ୍ତେ ନଅଳସ ହୋଇଥିବ ମହାରାଜ । ୪୧ ।
ପଣ୍ଡିତର ସୁଗ୍ରୁ ଶୁଣୁଥିବୁ ପୁରାଣ ଯେ ଶୋଭା
ସ୍ତ୍ରୀ ହସିଲେ ଦଣ୍ଡ ସେ କରିବୁ ପ୍ରବଧା । ୪୨ ।
ଅପୂର୍ବ ଦେଖି ଉଚ୍ଚେ ନ ଦ୍ରୁଣ୍ଡଭାରକ କାର୍ଯ୍ୟେ
ଭଣ୍ଡାରେ ନଗ୍ରୋଦ୍ଧ ବୁ ହୋଇଥିବୁ ମହାକାର୍ଯ୍ୟେ । ୪୩ ।
ବଳବନ୍ତ ସାମନ୍ତଙ୍କୁ ପ୍ରସାଦନ୍ତଂ ଦେବୁ
ଅନ୍ୟାୟ କଲେବାଲେ ତାହାଙ୍କର ବିଶ୍ୱାସ ନ ଯିବୁ । ୪୪ ।
ଗାଈଧରେ ଯେ ଗୀ ବୃନ୍ଦ ହୋଇଥିବୁ ରଜା
ଦେବ ଦ୍ୱିଜେ ନଅଭ୍ୟୋଂ କରୁଥିବୁ ଗାଦପଜା । ୪୫ ।
ଧାର୍ମିକେ କରୁଥିବୁ ବତାଇ ଯେଉଁ ଏକାଦଶୀ
ଏକାଦଶୀ ଲେଙ୍କର ଭକ୍ଷଣେ ନ ଦେବୁଟି ଶଶି । ୪୬ ।
ଯେ ଯାହା ଅନୁରୂପେ ବୃତ୍ତେ ସକଳ ବର୍ଗ
ବସ ସ୍ୱଦାର ହୋଇଥିବୁଟି ପ୍ରେଜ । ୪୭ ।
ଯାଗ ଯଜ୍ଞଂ ସ୍ନାନେ ଯେ ଯୋଗଥିବୁ ଅଦ୍ଭୁତ
ବସ୍ତୁ ବଳବୁ ଯେ ଇଶ୍ୱରର ବେଦ ଗ୍ରନ୍ଥ । ୪୮ ।
ଦୁଷ୍ଟ ଦାଳବନ୍ତ ଯେ କରୁଥିବୁ ନାଶ
ତାହାଂକ ନୃପତିର କଣ୍ଠାଙ୍କଂ ନାହିଂ ଦୋଷ । ୪୯ ।
ସୁହୃଜନମାନଂକୁ କରୁଥିବୁଟି କାରଣ
ପରଦାର ପରଧନ ନ କରିବୁ ହରଣ । ୫୦ ।

---

୩୮।୨—ଷଣ୍ଡରେ ଦଶ୍ତ ଯେ ବନ୍ଧୁଥିବୁ ଲଣ୍ଡା । (ଖ,ଚ)
*୩୯।୧—ଏ ଦାଣ ଜନଙ୍କୁ କରିଥିବ ଖ ଣ୍ଡ । (ଖ,ଘ)

ମହୀକର ଗୋଚରେ ସମର୍ପିଥିଲୁ ରାଜ୍ୟ
ଅଧିକାର ଲେଖନ୍ତ କରିଥିଲୁ ତେଜ । ୫୧ ।
ବୃତ୍ତିବାସ ଲେଖନ୍ତ ଯେ ନ ଦଣ୍ଡିଲୁ ଧନ
ଅନେକ ବସାଇଲୁ ଗୋଶାଳା ବ୍ରାହ୍ମଣ ଶାସନ । ୫୨ ।
ବର୍ତ୍ତୁର କସାଇଲୁ ଗୋଭୂ ଏ ଉପମାନ
ଗୋଚର ସମସ୍ତେ ବାଲୁ ଛୁଡ଼ଦେଲୁ ବନ୍ଧୁସ୍ଥାନ । ୫୩ ।
ତୀର୍ଥସ୍ଥାନମାନଙ୍କରେ ଅନ୍ନଛତ୍ର ଦେଇଥିଲୁ ନୃପତି
ଅସହଣ ଭୂମିରେ ଖୋଇଲୁ ସେବାଗତ । ୫୪ ।
ଗଜ ଅଶ୍ୱ ସମସ୍ତେ ଦେଇଥିଲୁ ଧନ
ଗୋପାଳେ ବଣୋଇବାକୁ ଖୋଇଥିଲୁ ସ୍ଥାନ । ୫୫ ।
ଗୁଣ ଅନୁଭବେ କରୁଥିଲୁ ପୂଜା
ବଡ଼କୁଳ ଜନଙ୍କୁ ବୃତ୍ତଣ ନୋହିଲୁଟି ମହାରାଜା । ୫୬ ।
ସେ ମଧ୍ୟରେ ଅନେକ କହିଲେ ପ୍ରାପ୍ତ ରାଜଧର୍ମମାନ
ଶ୍ରୀକୃଷ୍ଣ ପୁରୁଷୋତ୍ତମଙ୍କର ଶୁଣିଲେ ବଚନ । ୫୭ ।
ସର୍ବେ ବୋଇଲେ ସେ କୃଷ୍ଣ ମୁଁ ତୋହୋରେ ଶରଣ
ସେତେବେଳେ ତହୁଁ ତ ଜବେ ଛାଡ଼ିଲେ ନିଜ ପ୍ରାଣ । ୫୮ ।
ଦୂତୀଙ୍କ [illegible]
ବଇକୁଣ୍ଠେ ଗଲେ ସେ କୃଷ୍ଣଙ୍କ ଦର୍ଶନେ । ୫୯ ।
ଜୟନ୍ତୁ ଜଗନ୍ନାଥ ଜଗତ ଚିନ୍ତାମଣି
ସବୁରେ ଜଗନ୍ନାଥ ସକଳ ଗୁଣମଣି । ୬୦ ।
ମନ୍ତ୍ରୀ ରଘୁଭର ନାଶ କରାଇଲୁ ଦୁଷ୍ଟ
ଜଗତ ବନ୍ଧୁ ନାଥ ପ୍ରସାଦ ପାଇଲେ ବଇକୁଣ୍ଠେ । ୬୧ ।
ନମାମି ଶ୍ରୀ ନାରାୟଣ ଶଙ୍ଖଚକ୍ର ଧାରିଣ
ଜନ୍ମେ ଜନ୍ମେ ଅଭ୍ୟାସିଲି ଶ୍ରୀକୃଷ୍ଣ ଚରଣ । ୬୨ ।
ଯାବତ ଜୀବ ଅଛୁ ତାବତକୁ ଦଉ
ଭଗତ ଜନ ଉଦ୍ଧାରଣ ନାଥ, ନାମ ନରହର । ୬୩ ।

---

ଶ୍ଲୋ—ବଇକୁଣ୍ଠ ବୃନ୍ଦେ ତାଙ୍କୁ ବନ୍ଦେବ ବଢ଼ାସ୍ଥାନେ । (ଭକ୍ତ)

ସଦାଶିବ ହୋଇଣ ଯେ ନାମ ଶିଖିବଣ
ଶତ୍ରୁପଣେ ଯେ ଚିନ୍ତିଲ ସେ ହୋଇଲେକ ମୋକ୍ଷ । ୬୪ ।
ଯେତେ ଜନମାନେ ପଡ଼ିଲେ ଯେ ରଣଭୂମି
ଶତ୍ରୁ ମିତ୍ର ହୋନ୍ତୁ ବା ସମସ୍ତେ ସ୍ୱର୍ଗଗାମୀ । ୬୫ ।
ଆହେ ଚଇତନ ବୋଧିର ମାଂସ କର୍ଦ୍ଦମ ଦ୍ୱାଦଶ
ଯୋଜନ ଭୂମି
ବ୍ରାହ୍ମଣ ହୋଇ କି ଶୃଗାଳ ହୋଇ ମୃତ୍ତପିଣ୍ଡେ ନ ବସିଲେ
କୁମି । ୬୬ ।

ସଇଲେକକୁ କାରେଣୀ ଶ୍ରୀକୃଷ୍ଣ ନାମଗୋଟି
ମମ ହୃଦେ ମାଳା ଗଣ୍ଡସ୍ଥଳେ ହେଉ କଣ୍ଠି । ୬୭ ।
ସଦା ଆଲିଙ୍ଗନ କରଇ ଶତଶ୍ରିୟ
କମଳ ମାଳେକ ହୋଇ ବନ୍ଧଂଯୁ ମୋର ହୃଦ୍ୟା । ୬୮ ।
ପ୍ରାଣ ଅପାନ ବ୍ୟାନ ଉଦାନ ସମାନ ପଞ୍ଚ ଆତ୍ମା
କୃଷ୍ଣତ୍ତ୍ୱଂ ଆନଜନ ନ ଭାବୁଂ ମମ ଆତ୍ମା । ୬୯ ।
ତ୍ରିପୁରାଜ ବାଣାସୁର ଅସୁର ବଳୀ ଦକ୍ଷ
ଭଗତ ମନାଇ ବୈଷ୍ଣବଲୋକେ ବସିଲେ ପ୍ରତକ୍ଷ । ୭୦ ।
ରକ୍ଷ ଭକ୍ଷ ହେତ ପ୍ରହେତ ମାଲି ଯେ ସୁମାଳି
ହିରଣ ହିରଣ୍ୟାକ୍ଷ ମଧୁ କଇଟଭ ମହାବଳୀ । ୭୧ ।
ରାବଣ କୁମ୍ଭକର୍ଣ୍ଣ ଦନ୍ତବକ୍ର ଶିଶୁପାଳ
ଯେମାନେ ଶ୍ରୀକୃଷ୍ଣଂକୁ ମାରି ଲୋଡ଼ନ୍ତି ସର୍ବକାଳ । ୭୨ ।

ବୈଷ୍ଣବର କଥାମାନ ସମସ୍ତେ କରନ୍ତି ଚେଷ୍ଟା
କରନ୍ତି ହିଂସାସନ୍ତି ହତେନ୍ତି ଭାରଜା । ୭୩ ।
କୃଷ୍ଣଂକୁ ମାରିବେ ବୋଲି କରିଥାଆନ୍ତି ଲକ୍ଷ୍ୟେ
ତେଣୁକରି ସମସ୍ତେ ହୋଇଲେ ବୈଷ୍ଣବ ମଧ୍ୟେ । ୭୪ ।

ଶ୍ରୀ ବାସୁଦେବଂକର ଚରଣ କମଳେ
ବନ୍ଦୟନ୍ତି ସାରଳା ଦାସ ତୁଳସୀମାଳା
ମମ ବକ୍ଷସ୍ଥଳେ ଲଗେ । ୭୫ ।

## ଦୁର୍ଯ୍ୟୋଧନାଦି ଓ ଭୀଷ୍ମଙ୍କର ପିଣ୍ଡଦାନ

ଶୁଣ ବଇବସ୍ଵତ ମନୁ ବଦଯ୍ତନ୍ତି ଅଗସ୍ତି
ଶ୍ରୀକୃଷ୍ଣ ଦେଖିଣ ଭୀଷ୍ମ ଗ୍ଭଡ଼ଲେ ଜୀବନ୍ତ । ୧ ।
ଭୀଷ୍ମଂକୁ ତୋଷିଣ ଯେ ଯୁଧିଷ୍ଠି ଶ୍ରୀପତି
ଯାଇଣ ପ୍ରବେଶ ହୋଇଲେ ଗାନ୍ଧାରୀ ଧୃତରାଷ୍ଟ୍ର କତି । ୨ ।
ଗାନ୍ଧାରୀ ବୋଇଲେ ବାବୁ ଶୁଣ ଫାଲଗୁନି
ମୋ ପୁତ୍ରମାନେ କବେ ପାଇବେ ବହ୍ନି । ୩ ।
ଗାନ୍ଧାରୀ ବଚନ ଶୁଣି ସେ ପଞ୍ଚଇ ପାଣ୍ଡବେ
ଅନଲେ ଦାହ ନେଇ କରନ୍ତ କନ୍ଦଳବେ । ୪ ।
ଯୁଧିଷ୍ଠି ବୋଇଲେ ଦୁର୍ଯୋଧନକଇଂ ଆଣ ଯାଇ ବ୍ୟାଘ୍ର
ସରୋବର ତୀରୁଂ
ଭୀମସେନ ବହୁ ଆଣିଲେ ଯାଇଂ କ କାନ୍ଧି ବଶଇ
ଗିରେନ୍ଦ୍ରୁ । ୫ ।
ସମସ୍ତ ମଡ଼ାମାନଂକୁ ଉପରେ ଶୁଆଇ
ଶତେ ଭ୍ରାଥ ମୂଳେ ଦେଲେ ବନ୍ଧୁ ସୋଦର ହୋଇ । ୬ ।
ଶ୍ରୀକୃଷ୍ଣ ବୋଇଲେ ମୋ କା ବେଳକେ ଦହନ ହୋଇ ମୋହ
ଦକ୍ଷିଣ ମୂର୍ତ୍ତି ହୋଇ ସଧୀରେ ବହଇ ପବନ
ଅଗ୍ନି ବାଣେକ ଯେ ବନ୍ଧିଲେ ଫାଲଗୁଣ୍ୟ । ୭ ।
ପ୍ରଜ୍ୱଳନ୍ତ ଅଗ୍ନି ହକାଶିଲା ମହାତେଜ
ଦ୍ୱାଦଶ ଯୋଜନ ଆକୃତ ହୋଇଲା ଦହନ । ୮ ।
ସମସ୍ତ ମୃତ୍ତୁ ପିଣ୍ଡମାନେ ହୋଇଲେ ଅଶ୍ଵମେଧ
ତହିଂକ ପଶୁ ମୃତ୍ତୁଶବ ହୋଇଲା ମାନ ଯେ ଗୋବନ୍ଦ । ୯ ।
ଯେସନେକେ ବହନ୍ତି ଘୃତ ଯେ ସଞ୍ଚାଳ
ଆକାଶେ ବ୍ୟାପିଲା ତେଜ ଯେ ଅନଳ (ଅନଳ) । ୧୦ ।

---

୯— { ସମସ୍ତ ମୃତ୍ତୁପିଣ୍ଡମାନ ହୋଇଲେ ସମିଧ
ତହିଂକ ମୂଳ ମୃତ୍ତୁଶବ ହୋଇଲା ମାନ ଗୋବନ୍ଦ । (ଝ,ଠ,ନ,ଖ)

ବହନ୍ତି ଦେଖି ପଚାରଇ ରାଜା ଧୃତରାଷ୍ଟ୍ର
ବାବୁ ରାଜ୍ୟଭାର ସିଂହାସନ ପାଲ୍ଲୁଅଛି ଯୁଧିଷ୍ଠିର ତୁ
ଜ୍ୟେଷ୍ଠ । ୧୧ ।

ଯେ ପୁତ୍ରଙ୍କ ଅଭାବେ ଆମ୍ଭେ ବୃଦ୍ଧକୁ କିସ କରି
ବହନରେ ପଶିବୁ ଆମ୍ଭେ ପୁତ୍ରନ୍ତ ସୁମରି । ୧୨ ।

ଯୁଧିଷ୍ଠିର ବୋଇଲେ ଶୁଣିମା ମୋ ତାତ ମାତ
ମୋତେ ବନ୍ଧୁ ତୁମ୍ଭେ ଚନ୍ତ୍ରଲ ଅନୁବ୍ରତ । ୧୩ ।

ଯେତେବେଳେ ତୁମ୍ଭର ନୋହିବ ବଦାୟେ
ମୁହିଁ ତୁମ୍ଭର କି ଯୁଗତେ ନୋହଇ ତନୟେ । ୧୪ ।

ଧୃତରାଷ୍ଟ୍ର ଗାନ୍ଧାରୀ ଯେ ବଚନ ଉଚ୍ଚାରି
ପାଧୋରିଲୁ ପୁତ୍ରଙ୍କଷ୍ଟ ତୋହୋର ବଚନେଣ କରି । ୧୫ ।

ବାବୁ ପରମ କଲ୍ୟାଣ ତୁ ହୁଅସି ନୃପତି
ଆମ୍ଭ ଆଇଷ୍ୟ ଯେନଥାଅ ଶୁଭେ ବ୍ରତ । ୧୬ ।

ରଖିଲ ମମଆତ୍ମା ବାବୁ ତୋହୋର ବଚନେ
ତୋହୋର ସମ୍ପଦ ମୁଂ ଦେଖଇ ନୟନେ । ୧୭ ।

ଅନେକ ଦାନ ଯେ ଦେଇଣ ମହାରାଜ
ଦ୍ୱାଦଶ ଦିବସେ ସେ ସାରିଲେ ପିତୃକାର୍ଯ୍ୟ । ୧୮ ।

ମକର ମାସ ଶୁକ୍ଲପକ୍ଷ ଅଟେ ଚନ୍ଦ୍ରବାର
ଶତଭିଷା ନକ୍ଷତ୍ର ଅଟଇ ସେ ଦିନର । ୧୯ ।
ତଇତଲ ନାମେ କରଣ ବରୀୟାନ ଯୋଗ
ମାଘ ସଂକ୍ରାନ୍ତିକ ଯେ ପନ୍ଦର ଦିନ ଭୋଗ । ୨୦ ।
ସେ ଦିନଠାରୁ ସମର ହୋଇଲା ପ୍ରଥମ
ଅଷ୍ଟାଦଶ ଦିନେ ଶେଷ ହୋଇଲା ସଂଗ୍ରାମ । ୨୧ ।
କୁମ୍ଭ କୃଷ୍ଣ ଚତୁର୍ଥୀରେ ଅଟେ ଶଉରିବାର
ହସ୍ତା ନକ୍ଷତ୍ର ହୋଇଛି ଭୋଗ ସେ ଦିନର । ୨୨ ।
ସେ ଦିନ ଗଦା ସମର ହୋଇଲାକ ଶେଷ
ଯେ ବଧିରେ ଗଲା ଉନବିଂଶତି ଦିବସ । ୨୩ ।

ଅଶ୍ୱତ୍ଥାମା ଲାଗି ପାଣ୍ଡବନ ଗତ ହେଲା
ପ୍ରେତକୃତ୍ୟ ସାରିବାକୁ ବାରବନ ଗଲା । ୨୪ ।
କୁମ୍ଭ ଅନ୍ତେ ମୀନମାସ ହେଲା ଉପସ୍ଥିତ
କୁରୁ ପାଣ୍ଡବେ ଯୁଦ୍ଧରୁ ହୋଇଲେ ବିରତ । ୨୫ ।
ଆହୋ ଚଇତନ ଶୁଣିମା ଦିବ୍ୟଗୀତ
ଯେତେ ଦିବସ ହୋଇଲା ଭୀଷ୍ମେ ଅଦହନ ଅଛନ୍ତି । ୨୬ ।
ମନୁଷ୍ୟ ଅସ୍ଥିମାନ ପୃଥିରେ ପଡ଼ିଅଛି
ମର୍ତ୍ତ୍ୟପୁରେ ଯେମନ୍ତ ଅପୋଡ଼ା ଭୂମି କାହିଁଅଛି । ୨୭ ।
ନୀଳସୁନ୍ଦର ପର୍ବତେ ଅଛି ତିଳମନ୍ଦାର ସର
ତହିଂରେ ଜଳସ୍ନେ କରିଅଛନ୍ତି ବାସେଳୀ । ୨୮ ।
ମତ୍ସ୍ୟଦେଶ କାଶୀକ୍ଷେତ୍ର ତୀର୍ଥନଦୀ ତଟେ
ତହିଂର ନିକଟେ ବୃକ୍ଷେକ ଅଛଇ ବାଞ୍ଛାବଟେ । ୨୯ ।
ଉତ୍ତରାଷ୍ଟ୍ର ମଣ୍ଡଳେ ଚନ୍ଦ୍ରୋତ୍ପଳା ନଦୀକୂଳେ
ପାରେଶ୍ୱର ଭୂମି ଅଛି ଅପୋଡ଼ା ଭୂମିରେ । ୩୦ ।
ଜମ୍ବୁଦ୍ୱୀପ ମଧ୍ୟେ ପାଞ୍ଚଗୋଟି ଠାବ ଅଛି
ଆହ୍ମମାନେ ଦହନ ଭୂମିତ ଭୀଷ୍ମଦେବା ପୃଚ୍ଛି । ୩୧ ।
ଚନ୍ଦ୍ରଦ୍ୱୀପ ଅଛି ମେରୁ ପଶ୍ଚିମ ପାର୍ଶ୍ୱଶେ
ତହିଂ ନେଇ ଦହନ କରନ୍ତି ମନୁଷ୍ୟେ । ୩୨ ।
ଯେତେବେଳେ ପ୍ରାଣୀଙ୍କ ଆବୋରେ ବିଷ୍ଣୁଜ୍ୱର
ଜୀବ ଥାଉଂ ଥାଉଂ ସେ ମେଲନ୍ତି ସାଗର । ୩୩ ।
ବଡ଼ବା ଅନଳ ତେଜେ ହୁଅଇ ସେ ଦହ୍ମ
ଆହ୍ମମାନେ ଦହନ ଅଦହନ ସ୍ଥାନ ଯେହ୍ନ । ୩୪ ।
କରଞ୍ଜଦ୍ୱୀପେ ଠାବେକ ଯେ ଅଛି
କୁଶ ଦ୍ୱୀପରେ ଯେ ନାହିଂ ଜାଣ କହି । ୩୫ ।
ପଦ୍ମଦ୍ୱୀପ ମଧ୍ୟେ ଯେ ତଉବଂଶ ଥାନ ଅଛି
ପାଣ୍ଡବ ଆଗେଣ ବିଶ୍ୱଦେବାସ୍ନେ ଯେ ପୃଚ୍ଛି । ୩୬ ।

---

୩୩ । ୨ ଜୀବ ଥାଉଂ ଥାଉଂ ସେ ମେଲ ଶ୍ୱେତ ଗଙ୍ଗାର । (୯,୪)

ଶୁଣିଣ ଯୁଧିଷ୍ଠି ଦେବ ମନେଣ୍ଡ ହରଷ
ହେ ଜଗନ୍ନାଥ ସ୍ୱାମୀ ଯେବେ କରିବାକ କସ । ୩୭ ।
କୁରୁ ପାଣ୍ଡବ ଦଳ ହୋଇଲେ ଅବଶେଷ
ବାନ୍ଧବଙ୍କ ପ୍ରେତଗ୍ୟାଂହେଁ କରନ୍ତୁ ପାଣ୍ଡବଙ୍କୁ ବଂଶ । ୩୮ ।
ହରି, କଉରବଙ୍କ ମୁଖ ନ ଗୃହ୍ନିଂବ ବୋଲି
ତେର ବରଷ ମୁଂ ଯେ ବନବାସ କଲି । ୩୯ ।

ଗଗେଣ ବଦନ ଗୃହ୍ନିଂଲି ଯେତେବେଳେ
ଚେହୋକୁଳ କୁଣ୍ଡଲ ଯେ ନାଶଗଲେ ସମୁଳେ । ୪୦ ।
ଭୀମସେନ ପ୍ରେତଗ୍ୟାଂ କଲା ମାଇଲା ଶତେଭାଇ
ଅର୍ଜୁନ ପ୍ରେତଗ୍ୟାଂ କଲା ମାଇଲା ଭୀଷ୍ମ ଦ୍ରୋଣ କର୍ଣ୍ଣଙ୍କୁ ଇଂ ।୪୧।
ନକୁଳ ପ୍ରେତଗ୍ୟାଂ କଲା ଅନେକ କ୍ଷେତ୍ରୀ
ସହଦେବ ପ୍ରେତଗ୍ୟାଂହେ ମହାମନ୍ତ୍ରୀ ଶକୁନି ପାପାତ୍ମା । ୪୨ ।

ଆମ୍ଭେ ପ୍ରେତଗ୍ୟାଂ କରି ଶଲ୍ୟଂକୁ କଲୁ ନାଶ
ହରି ପ୍ରେତଗ୍ୟାଂ କରି ବୁଡ଼ାଇଲୁ ସୋମବଂଶ । ୪୩ ।
ଧର୍ମଯ ପ୍ରେତ୍ରୁତେ ଯେ ମଧ୍ୟପାନ୍ତ ପଟେ ଗଲେ
ଗ୍ରାମ ମାଗନ୍ତେ କଉରବେ ଉପହାସ୍ୟ କଲେ । ୪୪ ।
ଧର୍ମ୍ମ ପ୍ରେତ୍ରୁତେ ବୋଇଲେ ପ୍ରେତଗ୍ୟାଂ କଲୋ ଯେତେ
କ୍ରିୟା କରିବାକୁ ପୁଣ ଅବସର ନାହିଂ ମୋତେ । ୪୫ ।

ଧର୍ମ୍ମ ପୁରୋହିତଂକ ପ୍ରେତଗ୍ୟାଂକ ହେଉଛି ଅବଧି
ତୁମ୍ଭର କ୍ରିୟାରୁତ ହେଉଅଛି ସର୍ବ ସିଦ୍ଧି । ୪୬ ।
ଯୁଧିଷ୍ଠିଂକ ବଚନେ ସେ ଧର୍ମ୍ମ ପୁରୋହିତେ
ସମସ୍ତଂକ ପ୍ରେତକ୍ରିୟା ଘେନିଲେ ବିଧିମତେ । ୪୭ ।

---

୩୭।୧ ଶୁଣିଣ ଯୁଧିଷ୍ଠି ଦେବ ବସ୍ତ୍ରକୁ ହରଷ । (କ,ଠ,ଝ)
୪୫।୨ କ୍ରିୟା କରିବାକୁ ପୁଣ ଅସତ୍ତ ନାହିଂ ମୋତେ । (ଝ,ଠ,କ)
୪୬ { ଧର୍ମ୍ମଂକର. ପ୍ରେତଗ୍ୟାଂ ସମସ୍ତେ ହୋଇବେ ବଧି
ତୁମ୍ଭର ପ୍ରେତଗ୍ୟାଂ ସାରୁ ହୋଇଲା ସର୍ବ ସିଦ୍ଧି । (ଝ, ଠ)

ପାର କଲେ ପାଣ୍ଡବେ ପ୍ରତଗ୍ୟାଂ ସମସ୍ତ
ତୁମ୍ଭର ପ୍ରାସାଦେ ସିନା ଯେତେହିଁ ଯଦୁନାଥ । ୪୮ ।
ନାମ ଯେ ଧରେ ତୁମ୍ଭର ସେ ଭବଜଳୁଂ ଉଦ୍ଧରେ
ବଦାପ୍ରନ୍ତ ସାବ୍ରେଳ. ଦାସ ମୋ ମନ ରହୁ ଶ୍ରୀକୃଷ୍ଣ
ପଦ୍ମରେ । ୪୯ ।



। ୧୨୪ ।

## ଯୁଧିଷ୍ଠିରଙ୍କର ରାଜ୍ୟାଭିଷେକ

ଏଥୁ ଅନନ୍ତରେ ଯେ ବଦଯନ୍ତି ଜନାର୍ଦ୍ଦନ
ଅଭିଷେକ ଯୋଗାଡ଼ ଏବେ କରିବା ବିଧାନ ।୧।
ବିଦୁର ସହଦେବେଣ ଆଇଲେ ନିଜ ପୁରୀ
ଅଭିଷେକ ଆୟୋଜନ ଜମିଷେକ ଯୋଗାଡ଼ କରି ।୨।

ମେଷମାସ ଶୁକ୍ଳପକ୍ଷ ତୃତୀୟା ଯେ ତିଥି
ରୋହିଣୀ ନକ୍ଷତ୍ର ଆଜ ବାର ବୃହସ୍ପତି ।୩।
ବ୍ୟାସଦେବଙ୍କୁ ସ୍ମରଣ କଲେକ ଯୁଧିଷ୍ଠି
ଷାଠିସହସ୍ର ଶିଷ୍ୟ ଘେନି ବିଜେ ତପୋନିଧି ।୪।

ଧର୍ମ ପ୍ରୋହିତଙ୍କ ତୁଲେ ଲକ୍ଷେକ ବ୍ରାହ୍ମଣ
ବଶିଷ୍ଠ ମାର୍କଣ୍ଡ ତୁଲେ ଆଇଲେ ମୁନିଗଣ ।୫।
ଶୁକଦେବ ସହିତେ ଆଇଲେ ଅଶୀସହସ୍ର ଶିଷି
ନବଲକ୍ଷ ବାଳଖିଲା ଘେନି ଆଇଲେ ଅଗସ୍ତି ମହାଋଷି ।୬।

କୋଟିଏକ ଯତି ଘେନିଣ ଆଇଲେ ଦୁର୍ବାସା
ଲକ୍ଷେକ ଶିଷ୍ୟ ଘେନି ଆଇଲେ ପାରେଶ୍ୱର ପୁରୁଷା ।୭।
ଅର୍ଦ୍ଧ ବୁଢ଼ିଙ୍କ ଶିଷ୍ୟ ଘେନିଣ ଆଇଲେ ଉଦ୍ଦାଳକ
ଲକ୍ଷେକ ଶିଷ୍ୟ ଘେନିଣ ବିଜୟେ ବିଭାଣ୍ଡକ ।୮।

ନବ ସହସ୍ର ଶିଷ୍ୟ ଘେନି ବିଶ୍ୱାମିତ୍ର ଆଇଲେ
ସହସ୍ରେକ ଚେଲା ଘେନି ସୁମନ୍ତ ବିଜେକଲେ ।୯।
ଅର୍ଦ୍ଧବୁଢ଼େକ ଶିଷ୍ୟ ଘେନି ବିଜେ ମାର୍କଣ୍ଡ ଋଷି
ଋଷ୍ୟଶୃଙ୍ଗ ତୁଲେ ବିଜେ ନବ ସହସ୍ର ବାଳଶିଷି ।୧୦।
ଲକ୍ଷେକ ଶିଷ୍ୟ ଘେନି ଅଷ୍ଟାବକ୍ର ତପୋବନ୍ତ
ପଞ୍ଚ ଅର୍ଦ୍ଧବୁଢ଼ ତୁଲେ ବିଜେକଲେ ପୁଲସ୍ତ୍ୟ ।୧୧।

---

୪।୧ ବଶିଷ୍ଠଙ୍କୁ ସୁମରଣା କଲେକ ଯୁଧେଷ୍ଠି । (ଖ,ନ,ଙ,ଚ)

୮ { ଉଦ୍ଦାଳକ ବିଭାଣ୍ଡକ ଘେନି ଲୋମଶଙ୍କ ତୁଲେ
ସହସ୍ରେ ଶିଷ ଘେନି ସୁମନ୍ତକ ବିଜେକଲେ । (ଙ,ଘ,ଦ,ଢ,ଛ)

ନବ ସହସ୍ର ଶିଷ୍ୟ ଘେନି ବଇଶମ୍ପାୟନ ଲୋମଶ
ଅର୍ବୁଦେକ ଶିଷ୍ୟ ଘେନି କଣ୍ୱ ପରବେଶ । ୧୨ ।
ବେନିଲକ୍ଷ ଶିଷ୍ୟ ଘେନି ବଇଶମ୍ପାୟନ ଅଜପା
ଲକ୍ଷେକ ଶିଷ୍ୟ ଘେନି ବଇଶମ୍ପାୟନ ସତ୍ୟପା । ୧୩ ।
ଲକ୍ଷେକ ବ୍ରାହ୍ମଣ ଘେନି ଅତି ମହାମୁନି
ଗର୍ଗ ପାଞ୍ଚ ଅହ୍ନବ୍ରତ ଶିଷ୍ୟ ତୁଲେ ଘେନି । ୧୪ ।
ସୁଦେବ ବାମଦେବ ଋଷି ଯେ କଞ୍ଚଣ
ସେହାଙ୍କର ତୁଲେ ତିନିଲକ୍ଷ ଯେ ବ୍ରାହ୍ମଣ । ୧୫ ।
ଅରୁଣ ତେଜ ଯେ ଅନଙ୍ଗ ସଦାଶିବ
ପାଞ୍ଚଲକ୍ଷ ବ୍ରାହ୍ମଣ ଘେନି ବିଜେକଲେ ବାମଦେବ । ୧୬ ।
ଆଉ ଚଉଦନ ଯେତେ ଋଷି ଥିଲେ ଆରଣ୍ୟକ କାଳେ
ସମସ୍ତେ ଅଇଲେ ଯେ ଯୁଧିଷ୍ଠିର ପାଟ ଅଭିଷେକ କାଳେ । ୧୭ ।
କଷା କଉପୁନୀ ହାଥେ ଦଣ୍ଡ କମଣ୍ଡଳ ଜପାମାଳୀ
ଭସ୍ମ ଲେପନ କେ ଗୋପୀ ବୃନ୍ଦାବନ ରଜ ଯେ ଶାମଳ । ୧୮ ।
ନିକଛ ବସନ ଶୋହେ କାଖେ ବେଦ ଯେ କରଣ୍ଡି
ପୋଥି, ଛତା ପବିତ୍ର ଉତ୍ତରୀ ହାଥେଣ କୁଶବଣ୍ଡ । ୧୯ ।
ଦେବଋଷି ବ୍ରହ୍ମଋଷି ରାଜଋଷି ଆସିଣ ମିଳିଲେ
ଅଭିଷେକ ବିଧାନ ସମସ୍ତେହିଂ କଲେ
ପାଟେ ଅଭିଷେକ କରି ଯୁଧିଷ୍ଠିରଙ୍କ ବନ୍ଦାଇଲେ । ୨୦ ।
ଶଙ୍ଖ ଶବଦେ ଯେ କଲେ ନାନା ମଙ୍ଗଳ ଧ୍ୱନି
ଶ୍ରୀକୃଷ୍ଣ ଚରଣେ ଶରଣ ପଶଇ ସାରଳା ଦାସ ମୁନି । ୨୧ ।
ଶୁଣ ବଇବସ୍ୱତ ମନୁ ବଦେସ୍ପନ୍ତ ଅଗସ୍ତି ମହାମୁନି
ଯୁଧିଷ୍ଠିର ଅଭିଷେକ ପାପ ନାଶନ ଯେ ଧ୍ୱନି । ୨୨ ।
ବନ୍ଦାପନା ବିଧି ସାରି ଦେବ ଧର୍ମରାୟେ
ଦିବ୍ୟ ବେଶ ହୋଇଣ ଆସ୍ଥାନେ ବିଜେକରେ । ୨୩ ।
ଗଳାୟେ ରୁଦ୍ରାକ୍ଷମାଳ ତୁଳସୀ କଣ୍ଠହାର
କରେ କୁଶବଟୁ ତମ୍ବାପାତ୍ରୀ ଶୋହେ ଟୋପୟାନ
ଦୋହୋର । ୨୪ ।

ନିର୍ଦ୍ଧୂମ ଅଗ୍ନି ଜାଣି ବସ୍ତ୍ରଜଇ କାପେ
କର ପ୍ରସାରି ବେଦ ଆଧାନ ଋଷି କପେ । ୨୫ ।
କଣପ୍ ଉତ୍ତ୍ରୁସ୍ତ୍ର ଯେ କଣପ୍ ପଇତା
ଯୁଦ୍ଧେଷ୍ଟିଙ୍କ ଅଭରଣେ କଲେକ ଭୂଷିତା । ୨୬ ।
ଋକ ଯଜୁ ସାମ ଅଥର୍ବ ବେଦ ସ୍ବର
ଅଜପା ଗାୟତ୍ରୀ ମହାମନ୍ତ୍ରେ କଲ୍ୟାଣ ଉଚ୍ଚାର । ୨୭ ।

ଗହ ଗହ ଧ୍ୱନି ଶୁଣିଣ ଧୃତରାଷ୍ଟ୍ର
ଅମ୍ବା ବଇକୁଳି ତା ଶରୀର ମହାକଷ୍ଟ । ୨୮ ।
ହେ ଦଇବ ପୁରୁଷ ସ୍ନେହା ତୁ ମୋତେ କଲୁ
ଚହଟ ପ୍ରାସ୍ତ୍ରେକ ଦେଖାଇ ହରି ନେଲୁ । ୨୯ ।
ଗାନ୍ଧାରୀ ବୋଇଲେ ସ୍ୱାମୀ ଶୁଣ ଧୃତରାଷ୍ଟ୍ର
ଯେତେକାଳ ବଢ଼ିବା ସ୍ନେହମନ୍ତ କଷ୍ଟ । ୩୦ ।
ସାଗର ସଙ୍ଗମେ ପଶି ଝାସ ଦେବା ନିଜ ପ୍ରାଣ
ଅଭିଷେକ ସରିଲେ ଆମ୍ଭେ ଯାଇ ସିନା ପୁଣ । ୩୧ ।
ଯେତେହେଁ ସେ ରଜାଙ୍କର ଅଭିଷେକ ବିଧାନ
ବିଦୁର ସମାଧ ଅଛୁ ସକଳ ସଞ୍ଜାମାନ । ୩୨ ।
ଶ୍ୱେତହାତୀ ଶ୍ୱେତଅଶ୍ୱ ଶ୍ୱେତ ଚାମରଗନ୍ତ
ଶ୍ୱେତ ଛତ୍ର ଶ୍ୱେତଆଲଟ ଶ୍ୱେତବର୍ଣ୍ଣ ନେତ । ୩୩ ।
ଶ୍ୱେତ ବର୍ଣ୍ଣ ବସ୍ତ୍ର ଶ୍ୱେତବର୍ଣ୍ଣ ଯେ କଳସ
ଶ୍ୱେତ ଶ୍ରୀଫଳ ଶ୍ୱେତଗୁଆ ଅକ୍ଷତ ଯେ ପ୍ରକାଶ । ୩୪ ।
ଶ୍ୱେତଧୂପ ଲକ୍ଷେ ଗୁଆଘୃତେ ଭରି
ଶ୍ୱେତନେତ ବନ୍ଧିତା ଶ୍ୱେତରୁଖା ଗଡେଇକରି । ୩୫ ।
ଶ୍ୱେତ ସୁଗନ୍ଧ ଚନ୍ଦନ ଶ୍ୱେତପୁଷ୍ପ ସାରକ୍ଷେ
ଶ୍ୱେତଦୁବା ଶ୍ୱେତପୁଷ୍ପ ଲକ୍ଷେ ଲକ୍ଷେ । ୩୬ ।
ଶ୍ୱେତ ପାରୁଆ ଶ୍ୱେତଗୁଞ୍ଜି ଶ୍ୱେତ ବାସୁସା ଶ୍ୱେତ ଚଙ୍ଗଚାଲ
ଶ୍ୱେତ ହସ୍ତିକର ସିଂହାସନ କଣପ୍ ସମତୁଲ । ୩୭ ।
ଶ୍ୱେତମୃଗ ଶ୍ୱେତଗଣ୍ଡା ଶ୍ୱେତବର୍ଣ୍ଣ ଗାଈ
ଶ୍ୱେତବର୍ଣ୍ଣ ଶଙ୍ଖେଲକ୍ଷ ଦଣ୍ଡ ସନ୍ନିଧେ ଭୁଲଇ । ୩୮ ।

ଶ୍ୱେତ ଛତ୍ରାଣ ଶ୍ୱେତପାଦ୍ୱ ଶ୍ୱେତ ଶୁକସାର୍ଯ୍ୟୀ
ଶ୍ୱେତବର୍ଣ୍ଣ କଦଳୀ ତରୁ ଦ୍ୱାରେଣ ବେଷ୍ଟିକର । ୩୯ ।
ଶ୍ୱେତବର୍ଣ୍ଣ ସଜରେ ପାଦରେ ଲକ୍ଷେକ ପ୍ରୋକ୍ଷଣୀ ସ୍ରୁଗ
ଅଶ୍ୱମେଧ ଗୁଆଳରେ ଅହୁତ ଲକ୍ଷେକ ଦୋହୋଲ୍ ୪୦ ।
ବେଦମନ୍ତ୍ରେ ନିର୍ଜିତ ଯେ ପଣ୍ଡିତ ବ୍ରାହ୍ମଣ
ଗୃହବେଦରୁ ଲକ୍ଷେ ଲକ୍ଷେକ ବ୍ରାହ୍ମଣ ବରେଣ । ୪୧ ।
ପ୍ରାଣତ୍ୟାଗ ବଶ୍ୟାନତ କାଳାନଳ ବହ୍ନି ପିଙ୍ଗଳ ଜ୍ୱାଳ
ଜାତ ଅନଳ ବଡ଼ବାନଳ କ୍ରୋଧ ଅନଳ ବନ୍ଧୁ ଅନଳ । ୪୨ ।
ବେଗ ଅନଳ ଯୋଗ ଅନଳ କ୍ରୋଧ ଅନଳ ବହ୍ନିତ
ବ୍ରହ୍ମଅଗ୍ନି ରୁଦ୍ରଅଗ୍ନି ଭସ୍ମର ତେଜକାନ୍ତି । ୪୩ ।
ସ୍ୱେହାଂକର ମୂଳେ ଚନ୍ଦ୍ରବଂଶ ଅନଳେ
ବିଜୟେ ଯୁଗାନ୍ତେକ ଯୁଧିଷ୍ଠିରଙ୍କ ଅଭିଷେକ କାଳେ । ୪୪ ।
ଆଗ୍ନେୟୀ ବରଣ ମାର୍କଣ୍ଡେ ବ୍ରହ୍ମା ବରଣ ଶୁକେ
ସନକ ବଶିଷ୍ଠଦେବ ବଶିଷ୍ଠକ କଣ୍ଠିକେ । ୪୫ ।
ଗୃହଦ୍ୱାରେ ବରେଣ ଯେ ଗୃହଗୋଷ୍ଠି ଋଷି
ଅଜପା ମନ୍ତ୍ରେଣ ଜପନ୍ତି ପାଞ୍ଚଲକ୍ଷ ଶିଷ୍ୟ ବସି । ୪୬ ।
ଯାଗେଣ ଯାଗନିକ ପାରେଶ୍ୱର ସୁଦେବ ଅଗସ୍ତି
ବଶିଷ୍ଠ ପଉଲସ୍ତି ବିଶ୍ୱାମିତ୍ର ଭୃଗୁପନ୍ତ । ୪୭ ।
ଶ୍ରୀରାମ ମୁଦ୍ରା ଯେ ଶାଳଗ୍ରାମ ଶିଳା
ଲକ୍ଷ୍ମୀ ନାରାୟଣ ରୁଦ୍ର କୃଷ୍ଣ ଯେ ପିଙ୍ଗଳା । ୪୮ ।
ମୀନରୂପ କନକର ଲକ୍ଷେକ ପ୍ରତିମା
ଲକ୍ଷେକ କୂର୍ମରୂପ ଲକ୍ଷେକ ବରାହ ପ୍ରତିମା । ୪୯ ।
ଅମ୍ବନ ନରସିଂହ ଜାତ ନରସିଂହ
ବିଦାରଣ ନରସିଂହ ଜଠ ନରସିଂହ ଯୋଗ ନରସିଂହ । ୫୦ ।
ରୂପ ନରସିଂହ କାମ୍ୟକ ନରସିଂହ
ପ୍ରହଲ୍ଲାଦ ନରସିଂହ ଲକ୍ଷ୍ମୀ ନରସିଂହ । ୫୧ ।

---

୩୯ । ୧ ଶ୍ୱେତ ପାଟଛ ଶ୍ୱେତ ପ୍ରାଙ୍ଗଣ ଶ୍ୱେତ ଶୁକସାର୍ଯ୍ୟୀ । (ଖ,ଣ,ଠ)

ଯୋଜନକ ନରସିଂହ ପଦ୍ମ ନରସିଂହ
ଅର୍ବୁଦେକ ନରସିଂହ ଜପ ନରସିଂହ ପ୍ରତିମା ଲକ୍ଷେ
ନରସିଂହ । ୫୨ ।

ବାମନଙ୍କ ପ୍ରତିମା ଲକ୍ଷେକ ପ୍ରଶୁରାମ ପ୍ରତିମା ଲକ୍ଷେ
ଶ୍ରୀରାମ ପ୍ରତିମା ହଳଧର କଲ୍କି ପ୍ରତିମା ଅସଂଖ୍ୟା । ୫୩ ।
ସଦାଶିବ ବାମଦେବ ପ୍ରତିମା ଲକ୍ଷେକ ବାଣ ଲିଙ୍ଗ
ବିଶାଖା ବେଲପତ୍ରୀ ଲିଙ୍ଗ ଗୋଟିକେ ଲକ୍ଷେକ
ସଂଯୋଗ । ୫୪ ।

ଟପ୍ପୁକା ଲିଙ୍ଗକେ ଲକ୍ଷେ ଲକ୍ଷେ ଦୁହାଂଙ୍କ ଯେ ଗାଣ୍ଠି
ଦଶ ଅବତାରେ ତୁଳସୀମାଳ ଲକ୍ଷେକ ଆଭରଣ
କରାଇ । ୫୫ ।
ସହସ୍ରେକ ଭୁଜ ହୋଇ ଲକ୍ଷେକ ଦୁର୍ଗା ଯେ ପ୍ରତିମା
ଚତୁର୍ମୁଖ ହୋଇ ଲକ୍ଷେକ ବ୍ରହ୍ମା ଯେ ଉତ୍ତମା । ୫୬ ।
ଲକ୍ଷେକ ପ୍ରତିମା ସର୍ବ ମଙ୍ଗଳା ଯେ ପିତୁଳ
ଲକ୍ଷେକ ପ୍ରତିମା ଲକ୍ଷ୍ମୀ ଅବତାର ଧବଳୀ । ୫୭ ।
ବାର ଆଦିତ୍ୟ ଷୋଳ ଚନ୍ଦ୍ରମା ପବନ ଅଣଗୃଷ
ନବ ଗ୍ରହଂକ ମୂଳେ ଯେ ଦିଗପାଳ ଦଶ । ୫୮ ।
ଶଂଖ ଶ୍ୱେତ ପଦ୍ମ ମହାପଦ୍ମ କର୍କୋଟକ ତକ୍ଷକ କୁଳକ
ମୂଳେ ଅନନ୍ତ
ଅଷ୍ଟ ରତ୍ନରେ ନିର୍ବାଣ ଯେ ଅଷ୍ଟକୁଳ ନାଗାନ୍ତ । ୫୯ ।
ଲକ୍ଷେକ ପ୍ରତିମା କଲେ ଗ୍ରାମ ଯେ ଦେବତୀ
ଯମ କାଳ ବିକାଳ ଚିତ୍ର ଯେ ଗୁପତ । ୬୦ ।
ସୁବର୍ଣ୍ଣର ଶିର ନଖ ମୁଖ ଗୃବ ଚରଣ କର
ଲକ୍ଷେକ ଆସନ କୃଷ୍ଣାଜିନ ଯେ ଛତିଂଶ ପାତ୍ର । ୬୧ ।
ଡାହାଣବୃ ଚେକ ଶଂଖ ଲକ୍ଷେକ ସୁବର୍ଣ୍ଣ ବନ୍ଧା ଫୁର
ଏକମୁଖୀ ରୁଦ୍ରାକ୍ଷ ଲକ୍ଷେକ ମାଳ କରି । ୬୨ ।
ଲକ୍ଷେକ ଘର ଯ ସୁବର୍ଣ୍ଣର ଖଟପୁଣି
ସୁବର୍ଣ୍ଣର କଳସ ନେତ ପାତାଙ୍ଗ ନିରବାଣି । ୬୩ ।

ବହୁବଧ ତାଣ୍ଡବ ମଧୁର ସଙ୍ଗୀତ
ଦ୍ୱାରେଣ ଗୀତ ଗାବନ୍ତି ଲକ୍ଷେକ ବନିତା । ୬୪ ।
ମୃଦଙ୍ଗ ତାଳ କଂସାଳ ମହୁରି ବ୍ରହ୍ମବେଣୀ
ସତ୍ୱଗୁଣା ଅଧାତି ମର୍ଦ୍ଦଳ ଗଣ୍ଡତ ବାଦ୍ୟଯନ୍ତ୍ର ସଙ୍ଗୀତ
ଟୋପ୍ପୂଣୀ । ୬୫ ।
ଗ୍ରହଯୋଗେ ମଙ୍ଗଳ କରନ୍ତି ଗ୍ରହପୁରେ
ଶୁଭ ଅନୁକୂଳ ଧଇଲେ ମାହେନ୍ଦ୍ର ଯୋଗ ପେଟେ । ୬୬ ।
କୋଟିଏ ତୀର୍ଥ ଘେନି ହେଷାଧି ପୁଷ୍କର
ତୀର୍ଥପତିମାନେ ସମସ୍ତ ସଙ୍ଗତର । ୬୭ ।
ସିଂହାସନ ପରେ କଶ୍ୟପୁ ଆସନ
ତହିଁର ଉପରେ ନେତର ବସନ ଯେ ମାନ । ୬୮ ।
ତହିଁର ମାହେନ୍ଦ୍ର ଯୋଗର କମଳ
ଶାଳଗ୍ରାମ ଶିଳା ଲକ୍ଷେ ଅଷ୍ଟରତ୍ନ ତହିଁ ତୋଳ । ୬୯ ।
କୋଟିଏ ରତ୍ନ ଶଙ୍ଖର ଆଭରଣ କର
ତହିଁର ଉପରେ କୃଷ୍ଣାଜିନ ମୃଗର ଛଡ଼ିଂଶ । ୭୦ ।
ସେ ଶାଳଗ୍ରାମମାନଂକୁ କରନ୍ତି କୋଟିଏ ପୂଜା
ଦେବାଧି ଦେବୀମାନଂକୁ ଅନେକ ବଳିଭୋଜା । ୭୧ ।
ଅନେକ ଗୋ ଦୋହନ ଶିବଅଚଳେ କର
କୋଟିଏ ମାଣିକ୍ୟ ମୁକୁଟ ଶିରେ ଧର୍ମଦ୍ୱୟେ ଭର । ୭୨ ।
ସୁବର୍ଣ୍ଣର ଉତ୍ତୁରି ପବନ ଘେନିଣ ପରମ ଯୋଗୀ
ଯୁଧିଷ୍ଠିର ଦେବଙ୍କୁ ନେଇ ବ୍ୟାଘ୍ର କରାଇ ଲାଗି । ୭୩ ।
ଶ୍ରୀଭୃଙ୍ଗେ ଦିଲେ ନେଇ ବଇଜୟନ୍ତୀ ମାଳା
ଶ୍ରୀକୃଷ୍ଣେ ଆଭରଣେ କଲେ ନେଇ ଯୁଧିଷ୍ଠିରଂକ ଗଳା । ୭୪ ।
ଅମୃତ ଯୋଗାଡ଼ ଘେନି ମାହେନ୍ଦ୍ର ଅନୁକୂଳେ
ରାଜକର୍ମ ଧର୍ମ ସମସ୍ତ ମଙ୍ଗଳ ଯେତେବେଳେ । ୭୫ ।
କୋଟିଏ ତୀର୍ଥ ଘେନି କ୍ଷେତ୍ରାଧି ପୁଷ୍କର
ବଜାୟେ ପାଖାଳୀ ଯାଇଂ ଯୁଧିଷ୍ଠିରଦେବଂକ କୋଡର ।୭୬ ।

---

୬୯।୧ ତହିଁରେ ମାହେନ୍ଦ୍ର ଜୀବନ୍ତ କମଳ । (ଛ,ଣ)

ତାହାଙ୍କ ବଳଦେବ ବୃକୋଦର ବାମେଣ ଫାଲଗୁନି
ପଛେଣ ନକୁଳ ଯେ କଣପ୍ଣ ଦଣ୍ଡ ଘେନି । ୭୬ ।
ଆଗେଣ ଉଭା ସହଦେବ କାଖେ ମହାମନ୍ତ୍ର ପୋଥି
ରତ୍ନ ଅଭରଣ କଲେ ଆଣି ଶ୍ରୀକୃଷ୍ଣ ପଞ୍ଚମୂର୍ତ୍ତି । ୭୮ ।
ଲକ୍ଷେକ ଧବଳଛତ୍ର ଉଡନ୍ତି ଅଗ୍ରତେ
ନେତର ଆଲମ୍ବ ଫରହର ଉଡଇ ଅନ୍ତରୀକ୍ଷେ । ୭୯ ।
ଏକଲକ୍ଷୀ ନନ୍ଦଲକ୍ଷୀ ଆଦର ପଞ୍ଚଲକ୍ଷୀ
ଏମାନ ଲକ୍ଷେ ଲକ୍ଷେ ମୟୂର ଝାଲ ପକ୍ଷୀ । ୮୦ ।
ଉଦାଳେକ ପକ୍ଷୀ ଲକ୍ଷେକ ଉଡାଇ
ଏମନ୍ତେ ଅଭିଷେକ ବଧାନ କରାଇ । ୮୧ ।
ମଙ୍ଗଳ ହୁଳହୁଳି ଦଅନ୍ତି ଗଣିକା
ଆଗେ ଲକ୍ଷେ ନାଚନ୍ତି ବିଦ୍ୟାଧରୀ ନାୟିକା । ୮୨ ।
ବିଦ୍ୟ ଅବତାର ଯେ କରନ୍ତି ଗୋବିନ୍ଦ
ଅଇରାବତ ଆରୋହି କଣପ୍ଣ ବୃଷ୍ଟି ତହିଁ କରଇ
ଦେବଇନ୍ଦ୍ର । ୮୩ ।
ମୁକୁତା କଳସରେ କୋଟିଏ ତୀର୍ଥ ପାଣି
ଯୁଧିଷ୍ଠିରଙ୍କ ଶିରେ ପୁଷ୍କର ଅଭିଷେକ କଲ ଆଣି । ୮୪ ।
ଅମୃତ ବୃଷ୍ଟି କରନ୍ତି ତହିଁ ଯେ ମେଘମାଳା
ଡାକନ୍ତି ଚଣ୍ଡପୁରୋହ ଶୁଭଲଗ୍ନ ବେଳା । ୮୫ ।
ଶୁଣ ହୋ ରାଜନ କୋଟିଏ ତୀର୍ଥେ ଜଳ ଘେନି ସମସ୍ତ
ମହରଷି
ପାଦାଅର୍ଘ୍ୟ ଦେଇ ପୂଜା କରନ୍ତି ସର୍ବେ ଆସି । ୮୬ ।
ଶତେପଳ ପଞ୍ଚାମୃତେ ହୁଏ ପାଦପୂଜା
ରାଜ ଅଭିଷେକେ ବସିଲେ ଧର୍ମରାଜା । ୮୭ ।

---

୭୯।୨ ଲକ୍ଷେକ ଧବଳଛତ୍ର ଉଡଇ ଅବରତେ । (ଛ,ଷ)
୮୨ । ମୁକୁତା ଛତ୍ର ପଞ୍ଚ ଗଣିକା ଆଭରଣିକା
କଣପ୍ଣ ସମୃଦ୍ଧ ଜାଣି ଚନ୍ଦ୍ରରେଖା, ଚେଜରେଖା । (ଯ,ଝ)
୮୬ । ଶିରେ ଅର୍ଘ୍ୟ ଦେଇଣ ସେ କରନ୍ତି ଅଶିଷ
ବଧିମତେ ଅଭିଷେକ ହୋଇଲେ ଧର୍ମଶିଷି । (ଖ,ନ,ଠ)

ବାଜନ୍ତି ସାବଡ଼ର ଝମକ ନିଶାଣ ଦାଣ୍ଡି
ସାର ମର୍ଦ୍ଦଳ ବଜାଘୋଷ ଘଣ୍ଟାନାଦେ କମ୍ପଇ ମହୀଖଣ୍ଡି ।୮୮।
ଯେସନେକ ବିଧାନେ ଅଭିଷେକ ସାରି
ପାଟହାଥୀ ଉପରେ ଧର୍ମରାଜା ବିଜେକରି ।୮୯।

ଅଶ୍ଵନ୍ତ ଆରୋହଣ ପାଣ୍ଡବ ଗୃହଭାଇ
ଖଗବର ବାହାନେ ବିଜେ ନାରାୟଣ ସାଇଁ ।୯୦।
ଜୟତୁ ଜୟ ପରମାନନ୍ଦ ବାସୁଦେବ
ଖଣ୍ଡଣ ମଣ୍ଡଣ ନାଥ କରନ୍ତା ଦେବ ସର୍ବ ।୯୧।

ମାନଗୋବିନ୍ଦ ଗୃପି ପାଣ୍ଡବନ୍ତ ଥାପି
ଜଗତ ଜନ ବାନ୍ଧବ ନାଥ ଅଟ ବିଶ୍ଵରୂପୀ ।୯୨।
ଧର୍ମ ନନ୍ଦନଙ୍କର ଅଭିଷେକ କାଳେ
ବିନୟେ ସେବା ଇଚ୍ଛିଲି ତୁମ୍ଭର ପାଦତଳେ ।୯୩।

ନୁହଇ ପଣ୍ଡିତ ମୁଁ ନ ଜାଣଇ ଶାସ୍ତ୍ରବିଧି
ନିରଞ୍ଜନ ବୋଧନରେ କହେ ମୋର ବୁଦ୍ଧି ।୯୪।
ଯାହା ସେ ଆଶ୍ଵାସିଲେ କୃପାଜଳ ନିଧି
ତାହା ମୁଂ ବଖାଣିଲି ହୃଦେଣ ସନ୍ଧି ଘେନି ।୯୫।
ଜନ୍ମେ ଜନ୍ମେ ଭଗତ ମୁଂ ଝୁଂଟେଶର ପୁର ବାସୀ
ଶ୍ରୀକୃଷ୍ଣ ବଚନେ ସାରୋଳା ଦାସ ଶୂଦ୍ରକ ଜନ ତୋଷି ।୯୬।

ଯେଥୁ ଅନନ୍ତରେ ବଇବସ୍ଵତ ମନୁ ହେ ପ୍ରମାଣି
କୋଟିପ୍ରେ ବଂଶ ଘେନି ଚଳିଲ ହୋ ଅଗସ୍ତି ମହାଋଷି
ଯେଥଂ ଉତ୍ତାରେ କସ କଲେ ଧର୍ମଶିଷି ।୯୭।
ଅଗସ୍ତି ବୋଇଲେ ସୁଶ୍ରେଷ୍ଠ ପ୍ରତ୍ୟକ୍ଷେ ନିରଞ୍ଜନ
ଯାହାର ପଦ୍ମରେ ଆରାଧନା କରନ୍ତି ଜନାର୍ଦ୍ଦନ ।୯୮।
ତାହାର ଅଭିଷେକ ଯେ ଶୁଣନ୍ତି ଶ୍ରବଣେ
ପାବନ୍ତି ବଇକୁଣ୍ଠ ନ ଦଣ୍ଡନ୍ତି ଯମଗଣେ ।୯୯।

ଯେ ସକଳଯେ କର ଶ୍ରବଣେ ଶୁଣନ୍ତି ଗାବନ୍ତି ଯେତେ ଲୋକ
ଜରାବ୍ୟାଧି ନାହିଂ ଅଙ୍ଗେ ନ ବସିବାକ ଶୋକ । ୧୦୦ ।
ଆୟୁ ଧନଧାନ୍ୟ ପୁତ୍ର ଯେ ଯାହା ମନେ ଇଚ୍ଛି
ଅବଶ୍ୟ ପ୍ରାପତ ହୁଅଯେ ମନେ ଯାହା ବାଞ୍ଛି । ୧୦୧ ।
ଗୋ କୋଟି ଦାନ ଦଲେ କୋଟିଏ ତୀର୍ଥ କଲେ
ପର୍ବତ ସର କଣସୁମାନ ଦାନ ଦିଲେ । ୧୦୨ ।

ଅନ୍ନ ବସ୍ତ୍ର ଜଳଭୂମି ଦାନ କରିବ ବିପୁଳ
କେହି ତୁଲ୍ୟ ନୁହନ୍ତି ଭାରଥ ଶ୍ରବଣ ପୁଣ୍ୟଫଳ । ୧୦୩ ।
ହେ ବୁଧଜନେ ଶ୍ରୀକୃଷ୍ଣେ ଭଗତ ବଇକୁଣ୍ଠେ ଯାହାର ଇଚ୍ଛା
ଧର୍ମରାଜା ଅଭିଷେକ ଶୁଣି କରନ୍ତି ଯେ ଯାହା
ମନେବାଞ୍ଛା । ୧୦୪ ।

ଧର୍ମ ଅର୍ଥ କାମମୋକ୍ଷ ପ୍ରାପତ ହୋଇବ ଚତୁର୍ବର୍ଗ
ଯାହା ଶୁଣନ୍ତେ ଯାଇ ଅକ୍ଷୟେ ମହାସ୍ୱର୍ଗ । ୧୦୫ ।
ଶରୀରେ ନ ପୀଡ଼ଇ କାଳ କାମ କ୍ଷୁଦା
କ୍ଷେତ୍ର ଧର୍ମଅର୍ଥ ପ୍ରାପତ ସର୍ବସିଦ୍ଧା । ୧୦୬ ।

ଧର୍ମରାଜା ଅଭିଷେକ ବିଧାନ ଶୁଣନ୍ତେ
ବସିବ ବିଷ୍ଣୁ ଭଗତଂକ ସହ ଇନ୍ଦ୍ର ସଂଗତେ । ୧୦୭ ।
ସୁଜନେ ଶ୍ରୀରାମ ନାମ ହୃଦପଦ୍ମେ ଧର
ବଦନ୍ତି ସାରଳା ଦାସ ହରିଧ୍ୱନି କର । ୧୦୮ ।

ବଇବସୁତ ମନୁଯେ ପୁଚ୍ଛାକଲେ ଅଗସ୍ତି
ଯେତେ ଅଭିଷେକ କାଲେ ନାହିଂ ହାଥୀ ଯେ ଯାଦାନ୍ତି ।୧୦୯।
ଅଗସ୍ତି ବୋଇଲେ ଶ୍ରୀକୃଷ୍ଣଂକର ଲକ୍ଷେ ଷାଠିଏ ସହସ୍ର-
ଅଶିଏ ନନ୍ଦନ
ଏମାନେ ଆରୋହିଛନ୍ତି ଯେ ଯାହାର ଯାନ ଯେ ବାହାନ ।୧୧୦।

---

୧୦୬।୨ ବଳ ବୁଦ୍ଧି ପ୍ରାପତ ଯେ ହୋଅଇ ସର୍ବଦା । (ଖ,ନ)

ଦିବ୍ୟ ଅବତାର ନାନା ଶସ୍ତ୍ରାସ୍ତ୍ର ଯେନି
ବିହରନ୍ତି ବୀରେ ନାନା ରଙ୍ଗେ ଆଗଚ୍ଛେ ସାତ ବଂଶ ସଇନି ।୧୧୧।
ଯଦୁ ବଂଶ ବୀରମାନେ ଦିଶନ୍ତି କାମଦେବ ପ୍ରାୟେ
ଆଉ ସମସ୍ତେ ଦିଶୁଛନ୍ତି ଯେ ବୃନ୍ଦାରକ ପ୍ରାୟେ । ୧୧୨ ।
ବିଦ୍ୟାଧର ଭୁଲେ ଯେସନ୍ତେ ବିଜୟେ ଅସ୍ପନ୍ଦ
ତେସନ ସାରଥେ ଦିଶନ୍ତି ଯୁଧିଷ୍ଠିର ନରଇନ୍ଦ୍ର । ୧୧୩ ।
ଦେବର୍ଷି ରାଜର୍ଷି ବ୍ରହ୍ମର୍ଷି ଶ୍ରୀକୃଷ୍ଣ ସହିତେ
ଭ୍ରମନ୍ତି ଲୀଳାୟେ ସେ ପଞ୍ଚ ଯେ ପ୍ରଶସ୍ତେ । ୧୧୪ ।
ଆଳଟ ଚାମର ଧରି କୃଷ୍ଣର ସୁତମାନେ
ଢଳାଉଛନ୍ତି ଘୋଟିଣ ଯୋଜନେ ଯୋଜନେ । ୧୧୫ ।
ମହା ସମ୍ଭ୍ରମେଣ ଯେ ପଞ୍ଚୁ ରାଜ୍ୟ ଫେରି
ଦର୍ଶନ କଲେ ଆସି ଧୃତରାଷ୍ଟ୍ର ଗାନ୍ଧାରୀ । ୧୧୬ ।
ଅନେକ ଆନନ୍ଦ ଯେ ହୋଇଲେ ଅନ୍ଧରାୟେ
ସ୍ୱେଚ୍ଛ ରୂପେ ସ୍ୱର୍ଗ ପ୍ରାପତ ତୋତେ ହୋୟେ । ୧୧୭ ।
ସାନନ୍ଦ ଯୁଧିଷ୍ଠିର ଧୃତରାଷ୍ଟ୍ର ବାକ୍ୟ ଶୁଣି
ଶ୍ରୀକୃଷ୍ଣ ସାନନ୍ଦେ କଲେ ପାଞ୍ଚଜନ୍ୟ ଶଂଖଧ୍ୱନି । ୧୧୮ ।
କଲ୍ୟାଣ ବାଞ୍ଛିଲେ ଯେ ସକଳ ମହର୍ଷି
ଯେ ଯାହାର ଆଶ୍ରମେ ପ୍ରବେଶ ହେଲେ ଆସି । ୧୧୯ ।
ରାଜ୍ୟେ ଏକଛତ୍ର ହୋଇଲେ ଯୁଧିଷ୍ଠିର
ଶ୍ରୀକୃଷ୍ଣ ନାଥଂକ ମନ ହୋଇଲା ମହାତୁଷ୍ଟି । ୧୨୦ ।
କଥୟନ୍ତି ଶ୍ରୀକୃଷ୍ଣ ଯେ ଯୁଧିଷ୍ଠିରଂକ ଆଗେ
ଦ୍ୱାରକା ଭୁବନକୁ ଇଂ ଯିବୁଂ ଆମ୍ଭେ ବେଗେ । ୧୨୧ ।
ଧର୍ମେଣ ରାଜ୍ୟ ତୁମ୍ଭେ ପ୍ରତିପାଳି ଥିବ
ପ୍ରଜାଂକୁ ସୁଖୀ କରାଇ ରାଜ୍ୟଭୋଗ ଭୁଞ୍ଜିବ । ୧୨୨ ।

---

୧୧୧ { ସଂଗତରେ ଛନ୍ତି ପଦ୍ମଂ ଦେବ ଚକ୍ରଧାରୀ
ଅନେକ ସମ୍ଭବ ସେ କହନ୍ତ କି ପାରି । (ଝ,ଢ)

୧୨୦ { ରାଜ୍ୟେ ଏକଛତ୍ର ହୋଇଲେ ଯୁଧିଷ୍ଠିର ଦେବ
ନିଜ ଭୁବନକୁ ଗଲେକ ବାସବ । (ଠ)

ଯେତେକ ଉଆର ପ୍ରସନ୍ତ ଯେଉଁଣ ମଧୁହାସ
ଯେଉଁ ଦେବ ଏଇଲୋକେ ଅଟନ୍ତି ମନୋହାସ । ୧୨୩ ।
ଯୁଧିଷ୍ଠିରଙ୍କ ଉଆରଣ ଶ୍ରୀକୃଷ୍ଣ ଗଲେ ବେଗେ
ଦ୍ୱାରକାରେ ପ୍ରବେଶ ହୋଇଲେ ଶ୍ରୀରଙ୍ଗେ । ୧୨୪ ।
ବଳରାମଙ୍କ ଛାମୁରେ କହିଲେ ସର୍ବ କଥା
କୁରୁ ପାଣ୍ଡବ ଯୁଦ୍ଧର ଯେବଣ ବ୍ୟବସ୍ଥା । ୧୨୫ ।
ଏସନେକ ବୃତ୍ତାନ୍ତ ଯଦ୍ଦୁଂ ଯେଁପି ସକଳ କହିଲେ
ଶୁଣି ବଳଦେବ ମନେ ଉତ୍ପୁତ ହୋଇଲେ । ୧୨୬ ।
ଶ୍ରୀଭଗବାନଙ୍କର ଦାସର ମୁଂ ଦାସ
ବଦସ୍କନ୍ଧ ଶୂଦ୍ରମୁନି କବି ସାରଳା ଦାସ । ୧୨୭ ।
ଶ୍ରୀ ମହାଭାରଥ କଥା ଅମୃତ ରସବାଣୀ
କର୍ଣ୍ଣରେ ପିବନ୍ତେ ନରେ ଅମୃତପାନ ଜାଣି । ୧୨୮ । ୨୫୨ ।



## ଦୁର୍ବାସା ଋଷି କୃଷ୍ଣଙ୍କ ମାୟା ଦର୍ଶନ କରି ବ୍ରହ୍ମାଙ୍କୁ ଜଣାଇବା ଓ କୋଣାର୍କ ତୀର୍ଥ ମହାତ୍ମ୍ୟ ବର୍ଣ୍ଣନ

ବଇବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କ
ହେ ଋଷି କେଉଁଠାକୁ ଶ୍ରୀକୃଷ୍ଣଙ୍କୁ ଗାନ୍ଧାରୀ ଶାପ ବାକ । ୧ ।
ସେହି ମୁନି ମୋତେ କହିବା ସଞ୍ଚରି
ନିଭୁବନ ଅଧିକେକ ହୋଇଲଟିକ ଶାପି । ୨ ।
ବଦନ୍ତି ଅଗସ୍ତି ଶୁଣ ବଇବସୁତ ମନୁ ଗହ୍ୱେ
ଚଉଦ ଲକ୍ଷ ବଳ ଯେବେଣ ହରି ଆସ୍ୱେ । ୩ ।
ପାଣ୍ଡବଗଣ ଇନ୍ଦ୍ରପ୍ରସ୍ଥେ ରହିଲେ
ଧର୍ମ ବିବେକ କରି ରାଜ୍ୟ ପ୍ରତିପାଳିଲେ । ୪ ।
ଶ୍ରୀହରି ରହିଲେ ଯେ ଦ୍ୱାରକା ପୁର ସ୍ୱର୍ଗ
ଷୋଳ ସହସ୍ର ନାୟିକା ଘେନି କରନ୍ତି ବଇଭୋଗ । ୫ ।
ପୃଥୀର ଭାରଭର ନିବାରଣ ଅର୍ଥେ
ବଳରାମ ଶ୍ରୀକୃଷ୍ଣ ଉପୁଜିଲେ ଆସି ମର୍ତ୍ତ୍ୟେ । ୬ ।
ଶ୍ରୀକୃଷ୍ଣ ଚରିତମାନ ବୁଝିବାର ନିମିତ୍ତ
ଆଇଲେ ଦୁର୍ବାସା ସନ୍ଥୋ ଅଛନ୍ତି ଦାଇବକୀର ସୁତ । ୭ ।
ବଦନ୍ତି ଅଗସ୍ତି ଶୁଣ ହେ ମହାରାୟେ
ବିଷ୍ଣୁର ପୁରେ ଦୁର୍ବାସା କଲେକ ବିଜୟେ । ୮ ।
ଜାଣିଲେ ମାୟାଧର ଦୁର୍ବାସାଙ୍କ ଚିତ୍ତ
ଦ୍ୱାରକାୟେ ମାୟା କଲେକ ଜଗନ୍ନାଥ । ୯ ।
ପ୍ରଥମରେ ରୁକ୍ମିଣୀଙ୍କ ମନ୍ଦିରକୁ ଗଲେ
ତହିଁ ଯାଇଁ ଦୁର୍ବାସାୟେ କୃଷ୍ଣଙ୍କୁ ଭେଟିଲେ । ୧୦ ।
ଦୁର୍ବାସାଙ୍କୁ ଦେଖିଣ ହେଲେ ରୁକ୍ମିଣୀ
ଶ୍ରୀକୃଷ୍ଣ ହସ୍ତେ ତାଙ୍କୁ ଅର୍ଘ୍ୟେ ପୂଜିଲେକ ଆଣି । ୧୧ ।
କୃଷ୍ଣଙ୍କୁ ଦେଖିଣ ମୁନି ସନ୍ତୋଷ ଯେ ମନ
ପୁଣି ଦୁର୍ବାସାୟେ ଜମ୍ବୋବତୀ ପୁରକଇଁ ଗବନ । ୧୨ ।

---

୩୨ ଧର୍ମାଧର୍ମ ବିଚାରିଣ ରାଜ୍ୟକାର୍ଯ୍ୟ କଲେ । (ଖ,ନଟ)

ତହୁଂ ଯାଇଂ ଦେଖିଲେ ଦେବ ଦାମୋଦର
ଜମ୍ବୋବନ୍ତର ସଙ୍ଗେ ବଇସେ ପଲ୍ୟଂକର । ୧୩ ।
ଦୁର୍ବାସ୍ୟାଂକୁ ଦେଖିଣ ଉଠିଲେ ଦେବକୃଷ୍ଣ
ପ୍ରଣାମ୍ଭ କରଣ ସେ ଶୁଦ୍ଧଲେ ପାଦପୃଷ୍ଟ । ୧୪ ।
ପୁଣ ପଶିଲେ ଯାଇଂ ଶଙ୍ଖାବତୀ ପୁର
ତହିଂ ବିଜେ କରଛନ୍ତି ଦେଖିଲେ ଦେବ ଚକ୍ରଧର । ୧୫ ।
ଭଲନ୍ତ ଦେଖି ମୁନି କୃଷ୍ଣର ଚରିତ
ବତିଶ ସହସ୍ର କନ୍ୟାଂକ ଯେ କେମନ୍ତେ ହରଇଂତଉ । ୧୬ ।
ଯେତେ ବଗୃର ମୁନି ଗବନ କର ଆସି
ଗୋପକନ୍ୟାଂକ ମନ୍ଦରେ ପଶିଲେ ଉପନେସି । ୧୭ ।
ତହିଂ ଦେଖିଲେ କୃଷ୍ଣ ଛନ୍ତି ତାଂକ ତୁଲେ
ରୁଷିଂଙ୍କ ଦେଖି ବନମାଳୀ ପ୍ରଣପତ୍ୟ କଲେକ ଭୂଇତେ । ୧୮ ।
ତହୁଂ ମୁନିବର ଦିବ୍ୟ ପୂଜାବିଧି ପାଇ
ଅନେକ କନ୍ୟାପୁରେ ପ୍ରବେଶ ହେଲେ ଯାଇଂ । ୧୯ ।
ତହିଂ ମୁନି ଯାଇଂ ଦେଖିଲେ ଦେବହରି
ପୁହ ପଙ୍କଜ ଘେନି ନମସ୍କାର କଲେକ ଶ୍ରୀହରି । ୨୦ ।
ଛଡ଼ ଅର୍ଘ୍ୟେ ପୂଜା ଘେନିଣ ମହାମୁନି
ଯେସନେକ ବତିଶ ସହସ୍ର କନ୍ୟାପୁରେ ପଶିଲେ ମହାମୁନି । ୨୧ ।
ସବୁ ଥାନେ କୃଷ୍ଣଂକୁ ଖୋଜଲେ ମହାମୁନି
ପୁହ ପଙ୍କଜ ସମେତେ ପ୍ରଣମ୍ଭ କରନ୍ତି ଚକ୍ରପାଣି । ୨୨ ।
ଷୋଳ ସହସ୍ର ଯେ ଗୋପର ନାୟିକା
ଷୋଳ ସହସ୍ର ଅପକ୍ଷସ୍ରୀ ଆଣିଲେ ମାରଣ ନାରକା । ୨୩ ।
ବତଶ ସହସ୍ର କନ୍ୟା ଅଷ୍ଟ ପାଠବଂଶୀ
ସବୁର ମନ୍ଦରେ ଦେଖିଲେ ଶ୍ରୀକୃଷ୍ଣ ଛନ୍ତି ବସି । ୨୪ ।
କନ୍ୟା ଗୋଟିଙ୍କେ ଯେ ଶ୍ରୀକୃଷ୍ଣ ଗୋଟିଏ
ଦେଖିଣ ଆଚମ୍ବିତ ହେଲେକ ଦୁର୍ବାସ୍ୟାଏ । ୨୫ ।
ସବୁର ପୁରେ ଦୁର୍ବାସା ପାଇଲେକ ପୂଜା
ଆଦଣେ ଆଦଣେ ମୁନି ପାଇଲେକ ଲଜ୍ଜା । ୨୬ ।

ଜାଣିଲେ ମୁନି କୃଷ୍ଣର ଯେସନେକ ବିଧାନ
ମଞ୍ଚପୁରେ ପାଇଲେଯେ ସୁଖଭୋଗମାନ । ୨୭ ।
ତକ୍ଷଣେ ଦୁର୍ବାସ୍ୟାୟେ ଅନ୍ତର୍ଦ୍ଧାନ ହୋଇ
ପିତାମହ ଗ୍ରାମୁରେ ତୁରିତେ ମିଳିଲେକ ଯାଇଂ । ୨୮ ।
ବ୍ରହ୍ମାଂକର ଗ୍ରାମୁରେ ବୋଲନ୍ତି ମୁନିବର
କୃଷ୍ଣର ଚରିତ ଧାତା ଅଟେ ଅଗୋଚର । ୨୯ ।
ଶୁଣିଣ ବ୍ରହ୍ମା ତାଂକୁ ବୋଇଲେ ସନ୍ତୋଷେ
ପୃଥୀର ଭାରଭର ଉଶ୍ବାସ କରି କାଂକେ ନୁଆସନ୍ତି
ଋଷୀକେଶେ । ୩୦ ।
ଦୁର୍ବାସ୍ୟାୟେ କହିଲେ ସେ ପିତାମହର ଆଗେ
ସେ କୃଷ୍ଣ ଆବରିଟି ହୋ ନୁଆସନ୍ତି ସ୍ବର୍ଗେ । ୩୧ ।
ହେ ପରମେଷ୍ଠି ସେ ଆସିବେ ଆଜ କାହିଂ
ଯେବଣ ଚରିତ ମୁଂ ଦେଖିଲି ତାହା କହିଂ । ୩୨ ।
ବତିଶ ସହସ୍ର କନ୍ୟାପୁରେ ମୋତେ କଲେ ହାଦେ ପୂଜା
ଆପଣେ ଆପଣେ ମୁଂ ଯେ ପାଇଲିଇଂ ଲଜ୍ଜା । ୩୩ ।
ଯେହା ଶୁଣି ପରମେଷ୍ଠିର ଉତ୍ତସନ୍ଧି କାୟେ
ପୃଥୀ ଭାରଭର ଉଶ୍ବାସିଲେ ଦେବରାୟେ । ୩୪ ।
ରାମ ଅବତାରେ ପାଇଥିଲେ ବଡ ଦୁଖ
କୃଷ୍ଣ ଅବତାରେ ଯେବେ ପାଇବେ ତାହାଂକ ସୁଖ । ୩୫ ।
ଆହୋ ପୃଥୀ ଦୁଖ ଦେଖି ଆମ୍ଭେ ଗଲିଇଂ କୃଷ୍ଣର ପାଶେ
କ୍ଷୀର ସମୋଦ୍ରେଣ ବିଷ୍ଣୁ ନିଦ୍ରାରେ ଅବଶେ । ୩୬ ।
କ୍ଷୀର ସମୋଦ୍ର ମଧ୍ୟେ ନିର୍ମାଣ ଯେକ ପୁର
ଅନନ୍ତ କୋଳେ ଶୟନ କରିଛନ୍ତି ପୀତାମ୍ବର । ୩୭ ।
ତ୍ରିଦଶ ଦେବତା ସହ ଗ୍ରାମୁରେଣ ମିଳି
ସ୍ତୁତି କରି ଆମ୍ଭେ ବୋଇଲୁ ରଖ ହୋ ବନମାଳୀ । ୩୮ ।
ବିବୁଧାହାଂକ ବଚନେ ହରି ହୋଇଲେ ପ୍ରସନ୍ନ
କାମେ ଦେବଗଣ ତୁମ୍ଭେ କଲ ହୋ ଆଗମନ । ୩୯ ।
ପୃଥୀଦେବୀ ଆକୁଳେ ଅଶ୍ରୁଜଳ ନେତ୍ରେ ଭରି
ବୋଇଲୁଂ ସକଳ ଦେବେ କୃତ ଅଞ୍ଜୋଳି କରି । ୪୦ ।

ଅସୁରଙ୍କ ପାଦଭାର ପୃଥୀ ନୁଆରଇ ସହି
ସେ ଦେବ ବିଷ୍ଣୁ ନାଥ ତୋତେ ଅଇଲାଇଂ କହି । ୪୧ ।
ହସି ପରମ ବିଷ୍ଣୁ କହିଲେ ପରମେଷ୍ଠିର ଆଗେ
ଦଶରଥ ଘରେ ଆମ୍ଭେ ଜନ୍ମିଲୁ ତେତୟା ସେ ଯୁଗେ । ୪୨ ।
ରାମ ରୂପେ ଉପୁଜିଲୁଂ ସୀତା ହରାଇଣ ପାଇଲୁଂ ବହୁତ ଦୁଖ
ତେତିଶ କୋଟି ଦେବେ ତାହା ଦେଖିଛତ ପ୍ରତକ୍ଷ । ୪୩ ।
ଅସୁରଙ୍କୁ ବର ଦେଇଥାର ଧାତା ତୁମ୍ଭେ
ଅଶକ୍ୟ ହୋଇଲେ ଯାଇଂ ସଂହାରିବୁ ଆମ୍ଭେ । ୪୪ ।
ଯେ ନ୍ତ ପରସ୍ତାପେ ତୁମ୍ଭେ ପାଳୁଥିବ ପୃଥୀ
ସେ ନିଦ୍ରା ସ୍ଥାନେ ତୁମ୍ଭେ ବସଅଛୁଂ ପେଥି । ୪୫ ।
ପର ବିଷ୍ଣୁର ବଚ ନ ଦେବେ କଲେ ଶଂକା
ପ୍ରଳ କର ଯାଇଂ ବୋଇଲେ ସେକମୁଖା । ୪୬ ।
ତୁ ଯେବେ ପୃଥୀକି ହୋ ନ କରିବୁ କାରଣ
ପାତାଳେ ରସାଂତେ ହୋଇ ପଡ଼ିବ ସେହିକ୍ଷଣ । ୪୭ ।
ବିଷ୍ଣୁର ଶରଣ ବଚନେ ପୃଥୀ ବେଦନ ଯେ କଲା
ତାହାର ବେଦନେ ହରିହର ଦୟା ଯେ ବସିଲା । ୪୮ ।
କମାଇଂ ବେଦନ ଗୋ ଦେବୀ କରୁଅଛ ତୁମ୍ଭେ
ତୋହୋର ଦୁଖ ଦେଖିତ ନୁଆଁଟିଲୁ ଆମ୍ଭେ । ୪୯ ।
ବ୍ରହ୍ମାର ସମ୍ମୁଖେ ମୋତେ ଦିଅନ୍ତି ବରଇଂ
ତୋହୋର ନିମନ୍ତେ ମଞ୍ଜେଣ ମୁଂ ଅବତରଇ । ୫୦ ।
ମାଇଲଇଂ ବାରେ ବାରେ ଯେ ଦାନବ ସମସ୍ତ
ବାରେ ବାରେ ଡେଇ ମୋତେ ଦୁଖ ଯେ ବହୁତ । ୫୧ ।
ଯେବେ ଦେବୀ ତୁମ୍ଭେ ନ କର ମନେ ଚିନ୍ତା
ମୁହିଂ ସେ ଭାରତର ଭୂମିର ଛେଦନ୍ତା । ୫୨ ।
ପୃଥୀଙ୍କ ଅଶ୍ୱାହିଣ ସେ ଆମ୍ଭନ୍ତ ବୋଇଲ
ମୁହିଂ ଜନମି ସୁଖ ଭୁଞ୍ଜି କରିବଇଂ ଲୀଳା । ୫୩ ।
ରାମ ରୂପରେ ମୁଂ ପାଇଲଇଂ ବହୁତ ଦୁଖ
[illegible] ଲିବଇଂ ସୁଖ । ୫୪ ।

ସେହିଠାରେ ଏକ ବଚନ ବୋଲାଣ ପଠିଆସେ
ବସୁଦେବ ଘରେ ସେ ଜନମ ଯାଇଂ ହେଁସେ । ୫୫ ।
ସେସନେକ ସକୃପେ ଭୋଗ ଯେ ତାହାର
କମାଇ ଆସିବେ ସେ ଦେବ ଯୋଧାସି । ୫୬ ।
ହେଲେଣ କଂସକଇଂ ସେ ସଂହାର ଦେବହର
ସମୁଦ୍ରକଇଂ ଭୂମି ମାଗି ଦ୍ୱାରକା ପୁର କର । ୫୭ ।
ଷୋଳ ସହସ୍ର ନାୟିକା ଅମରୁ ହଲୁ ବାଛି
ସଦେଶ ରମଣ ତୁ କର ହୋ ଶିଖିବହି । ୫୮ ।
ଏହୁଥୁ ଅନନ୍ତରେ ଶୁଣ ତୁ ହୋ ଛତ
ଷଣ ସହସ୍ର କନ୍ୟା ବରିଲେ ଦେବ ଶିଖିପତ । ୫୯ ।
ନଷେ ରାଜାଂକର ଯେବଣଜ୍ଞ ବଭବ
ସେ ଭୋଗ ଭୁଞ୍ଜଇ ସେବେ ଦେବ ବାସୁଦେବ । ୬୦ ।
ବହୁତ ଯତ ଶ୍ରୀକୃଷ୍ଣଂକୁ ଦେଖି ଯାନ୍ତି
ତାହାଂକ ତୃପ୍ତି ପାଇଂ ଦେବ ଧରିଛନ୍ତି ଅନେକ ମୂରତ । ୬୧ ।
ପିତାମହ ବୋଇଲେ ଭୋ ଦୁର୍ବାସା ତୁ ବହନ ହୋଇ ଯିବୁ
ଶ୍ରୀକୃଷ୍ଣେ ପାଇଂ ସକଳ କଥା ଚତୋଇବୁ । ୬୨ ।
ସେଥୁ ଅନନ୍ତରେ ଯେ ଦେବ ଶିଖିବହି
କୃଷ୍ଣମ୍ବର ସ୍ନେହେ ସେ କଷ୍ଟେନ୍ତେ ରହିଛନ୍ତି । ୬୩ ।
ଶୁଣ ହୋ ରାଜନ କେତେକ ସମସେ
ଶାମ୍ବ କୁମରକଇଂ ରାଇ ଆସ୍ୟାଂହଲେ ଦେବବସେ । ୬୪ ।
ତୁ ବାବୁ ଦ୍ୱାରକାସେ ଥିବୁ ସତ୍ୟଭାମାର ଦ୍ୱାରେ
କାହାକଇଂ ପଶିତେ ନ ଦେବୁଟି ଭିତରେ । ୬୫ ।
ସେକାନ୍ତରେ ଆମ୍ଭେ ଅବକାଶ କରିଇବୁ
ଆସ୍ୟାଂ ମେଣ୍ଟିଲେ ଶାମ୍ବ ତୁ କଷ୍ଟେ ଶାପ ଯେ ପାଇବୁ । ୬୬ ।
ଆମ୍ଭେ ପାଇଂ ବିଜେ କରୁଁ ଛୁଂ ରମ୍ୟସ୍ଥାନେ
ଯେପରି କେହି ନ ପଶି ପାରିବେଟି ଭିତର ଭୁବନେ । ୬୭

୬୬।୧ —ଜନ ନରୋଧି ଅବକାଶ କରିଥିବୁ । (ଖ)
୬୬।୧— ଜନ ନରୋଧି ଅମ୍ଭେ କଅବକାଶ କରିବୁ । (ଚ)

ଏହିରେ ବୋଲି ଦେବ ସତ୍ୟଭାମାର ସଙ୍ଗରେ
ଶାମ୍ବ କୁମରଙ୍କୁ ଦ୍ୱାରେ ଥୋଇ ରହିଲେ ନିଶ୍ଚିନ୍ତେ । ୬୮ ।
ପୁଣ ପିତାମହ ବଚନେ ଦୁର୍ବାସ୍ୟାପ୍ରେ ଏକବଦନେ ଆସି
ଶାମ୍ବ କୁମର ତାହାଂକୁ ଭିତରେ ନ ଦେଲକ ପଶି । ୬୯ ।
ନିଅବକାଶ ବାସୁଦେବ ଜନମାଂକ ମେଳେ
ତୁମ୍ଭେ ଶ୍ରୀକୃଷ୍ଣଂକୁ କାହିଂ ଭେଟିବ ଏତେବେଳେ । ୭୦ ।
ସାମାନ୍ୟ କାର୍ଯ୍ୟ ହୋଇଲେ କାହିଁକି ତୁମ୍ଭେ ଯାଅ
ଦେବକାର୍ଯ୍ୟ ହୋଇଲେ କ୍ଷଣେହେଂ ଏଥି ରହ । ୭୧ ।
ଦୁର୍ବାସ୍ୟାପ୍ରେ ବୋଇଲେ ବଡାଇ ଆକଠ ରେ ବାବୁ
ଏହିକ୍ଷଣି କୃଷ୍ଣଂକୁ ଆମ୍ଭେ ଦର୍ଶନ କରିବୁଂ । ୭୨ ।
ଶାମ୍ବ ବୋଲନ୍ତି ମାତାପିତା ଏକଯୋଗ ସ୍ଥାନେ
ମୁହିଂ ପୁତ୍ର ହୋଇ କେମନେକେ ପଶିବ ସଦନେ । ୭୩ ।
ଦୁର୍ବାସ୍ୟାପ୍ରେ ବୋଇଲେ ତୁମ୍ଭେ ବେଗ ହୋଇ ଯାଅସି
କୃଷ୍ଣଂକୁ ଜଣାଇ ବେଗେ ଆମ୍ଭଂକୁ ନିଅସି । ୭୪ ।
ବୋଲଇ ଶାମ୍ବ କୁମର କୃତ ଆଞ୍ଜୋଳି ଯେ ହୋଇ
କେଉଂଣ ମତେ ଭିତରେ ମୁଂ ପଶିବଇଂ ଯାଇଂ । ୭୫ ।
ଏତେକ ବଚନ ଶୁଣି ମୁନି ଯେ କୋପିଲେ
ଶାମ୍ବକଇଂ କଠୋର କର୍ଣେ ବହୁତ ବଚନ ବୋଇଲେ । ୭୬ ।
ଅଥବା ତୁ ଯେବେ ନ ଯିବୁ ଭିତରେ
ଏହିକ୍ଷଣି ଦ୍ୱାରକା ସହିତେ ଭସ୍ମ କରିବ ତୋହୋରେ । ୭୭ ।
କୃଷ୍ଣକଇଂ ତୁ ଯାଇ ନ ଆଣିଲେ ଶାମ
ସାତବଂଶ ସହିତେ ଯାଦବ କରିବଇଂ ନିଧନ । ୭୮ ।
ଭାଳଇ ଶାମ୍ବ କୁମର ମୁଂ କରିବଇଂ କେମନ୍ତ
ନିଅବକାଶେ ବଜେ କରିଅଛନ୍ତି ତାତ ମାତ । ୭୯ ।
ଉଭୟେ ସଭେଟ ଦେଖିଲେ ମହାଦୋଷ
ନ ଗଲେଣ ଭସ୍ମ ଏ କରିବ ମୋହୋରେ ସାତବଂଶ । ୮୦ ।
ପିତାର କୋପେ ମଂ ଯେ ଜଣେ ନାଶଯିବି
ମୁହିଂ ଏକା ମଲେ ସିନା ସାତବଂଶ ଉଦ୍ଧରିବ । ୮୧ ।

ରୁକ୍ମିଣୀଙ୍କ ଦ୍ୱାରେ ରୁହାଇଣ କୃଷ୍ଣସୁତ
ଭିତର ପୁରେ ଯାଇଁଣ ପଶିଲା ତୁରିତ । ୮୨ ।
ଦେଖିଲା ମାତାପିତା ଯେ ବିବସନ କାଳେ
ଶ୍ରୀକୃଷ୍ଣ ସତ୍ୟଭାମା କ୍ରୀଡାରଙ୍ଗ ହେଳେ । ୮୩ ।
ପୁତ୍ରକୁ ଦେଖି ଛଡାଛଡ଼ି ହୋଇଲେକ ବେନି
ରସଭଙ୍ଗ ହୋଇଣ କୃଷ୍ଣର ତେତେବେ ଉଠିଲା ବହ୍ନି । ୮୪ ।
କୋପେଣ ପ୍ରଜ୍ୱଳିତ ଦେବ ଶ୍ରୀ ପୁରୁଷ ଉତ୍ତମ
ମମ ବଚନ ଭଗ୍ନ କର କମ୍ପେ ଅଇଲୁରେ ଶାମ । ୮୫ ।
ମୋହୋର ଆଜ୍ଞାଂ ପୁତ୍ରରେ କଲୁ ଯେବେ ଭ୍ରଷ୍ଟ
ତୋହୋର ଶରୀରେ ଶାମ୍ବ ହୋଇବରେ ଗଳିତ କୁଷ୍ଠ । ୮୬ ।
ତତକ୍ଷଣେ କୁଷ୍ଠ ବ୍ୟାଧି ହୋଇଲା ବାହାର
ଧବଳ ବର୍ଣ୍ଣ ବିକାଶିଲା ଅଷ୍ଟାଙ୍ଗ ଶରୀର । ୮୭ ।
ଶାମ୍ବ ବୋଇଲା ଦେବ କମ୍ପେ ଦେଲୁ ଶାପ
ସର୍ବଜ୍ଞ ପୁରୁଷ ହୋଇ ନ ବିଚାରି କଲୁ କୋପ । ୮୮ ।
ସେହିକ୍ଷଣି ଦ୍ୱାରେ ଆସି ପ୍ରବେଶ ଦୁର୍ବାସା
ବୋଇଲେ କୃଷ୍ଣଙ୍କଇଂ ଦେଖିବାରେ ବଡାଇ ମନାଶା । ୮୯ ।
ମୁହିଂ ବୋଇଲି ଦେବ ସମସ୍ତ ଚରିତ
ଶୁଣିଣ କୋପ ମତେ କଲେ ଭଗବନ୍ତ । ୯୦ ।
ବୋଇଲେ ସେହିକ୍ଷଣି କୃଷ୍ଣଙ୍କୁ ନ ଦେଖିଲେ ନୟନେ
ପୁର ଦହନ କରିବି ସେବେ ଯଥ ତୁ ବଚନେ । ୯୧ ।
ଯେବେ କୋପ ମୋତେ ଅନମିତେ କଲୁ ସ୍ୱାମୀ
ଦୁର୍ବାସାର ଚରଣେ ଯାଇଂ ତୁ ଅସି ପରଣାମି । ୯୨ ।
ଶାମ୍ବ କଥା ଶୁଣି କୃଷ୍ଣ ଚଳିଲେ ବହନ
ଦୁର୍ବାସା ମହର୍ଷିଂକ ଚରଣେ କଲେକ ପ୍ରଣାମ । ୯୩ ।
କୃଷ୍ଣ ବୋଇଲେ ମୁନି ହେ କହ କମ୍ପା ଆଗମନ
ତୁମ୍ଭ ଯୋଗୁଂ ନାଶଗଲା ମୋହୋର ନନ୍ଦନ । ୯୪ ।
ଦୁର୍ବାସା ବୋଇଲେ ତୋତେ ଧାତାଂକର ଆଜ୍ଞାଂ ଅଛି
ମର୍ତ୍ତ୍ୟପୁର ତେଜ ଆକାଶକୁ ଆସ ହେ ଶ୍ରୀବତ୍ସ । ୯୫ ।

ଶ୍ରୀକୃଷ୍ଣ ବୋଲନ୍ତେ ଯେବେ ଆଗ୍ୟାଂ ଦଲେ ଦେବ ଧାତା
ଯାଉଅଛୁ ତେବେ ସ୍ୱର୍ଗକଇଂ ମୁହ୍ନିଂ ସର୍ବଥା । ୯୬ ।
ପୁଣ ଦୁର୍ବାସ୍ୟାଂକୁ ଗୃହ୍ନଂ କହନ୍ତି ଗୋବିନ୍ଦ
ତୁମ୍ଭ ଯୋଗୁଂ ପୁତ୍ରକୁ ପଡିଲା ପ୍ରମାଦ । ୯୭ ।
ଦୁର୍ବାସ୍ୟା ବୋଇଲେ ଅହେ ଶୁଣ ବାବୁ ଶାମ
ତପ କର ଯାଇଂ ତୁହ୍ନି ସୂର୍ଯ୍ୟର ତୀର୍ଥ ଯା ନାମ । ୯୮ ।
ଦୁର୍ବାସ୍ୟାଂକ ବାଣୀ ଶୁଣି ଶାମ ତହୁଂ ଚଳିଗଲା
ଅର୍କତୀର୍ଥେ ପ୍ରବେଶିଣ ତପ ଆଚରିଲା । ୯୯ ।
ମଜଦଧିରେ ସ୍ନାନକରି ଚନ୍ଦ୍ରଭାଗାରେ ସ୍ନାନ
ବଟ ପ୍ରଦକ୍ଷଣ କରି କଲା କୋଣାର୍କ ଦର୍ଶନ । ୧୦୦ ।
ନିବର୍ଣି ଉପବାସେ ବଟ କୋମଳ ପତ୍ର ଭକ୍ଷି
ଅନ୍ତର୍ଦ୍ଧାନ ହୋଇଗଲେ ଦୁର୍ବାସା ମହର୍ଷି । ୧୦୧ ।
ବ୍ରହ୍ମାର ଅଗ୍ରତେ ସେ କହିଲେ ସମସ୍ତ
ଶୁଣିଣ ସାନନ୍ଦ ସେ ବ୍ରହ୍ମ ଦଇବତ । ୧୦୨ ।
ପୁଣି ବ୍ରହ୍ମାର ଆଗରେ ସମସ୍ତ କହିଲେ ବୁଝାଇ
କେତେ ଦିନ ଗ୍ଭଡି ଆସିବେ ଯଦୁସାଇଂ । ୧୦୩ ।
ଏମନ୍ତ ଶୁଣି ପ୍ରଜାପତି ହୋଇଲେ ନିବୃତ
ପୁଣି ଅଗସ୍ତିଂକୁ ପୁଛିଲେ ସେ ମନୁ ନରପତି । ୧୦୪ ।
ବୋଇଲେ ହେ ମୁନି ଶାମ୍ବ କୁମର ତପକଇଂ ଗଲା
ଅର୍କକ୍ଷେତ୍ରେ କେମନ୍ତେଣ ସେ ତପ ଆଚରିଲା । ୧୦୫ ।
ଅଗସ୍ତି ବୋଲନ୍ତି ଜମ୍ବୁଦ୍ୱୀପ ଅଗ୍ନିକୋଣେ
ଅର୍କ ଦତ୍ୟକଇଂ ନାଶିଲେ ତରଣି ନାରାୟଣେ । ୧୦୬ ।
ଦକ୍ଷିଣେ ମଜଦଧି ଉତ୍ତରେ ଚନ୍ଦ୍ରଭାଗା
କୋଟିଏ ତୀର୍ଥ ଯେଣି ତହିଂ ବଜନ୍ତି ଦେବୀ ଗଙ୍ଗା । ୧୦୭ ।
ତହିଂ ସ୍ନାହାନ କରି ଯେ ଦେଖଇ ତରଣି
ଶରୀର ନିଷ୍କଳଂକ ତାହାର ଯେ ସଣି । ୧୦୮ ।
ଏମନ୍ତେକ ତପ ଯେ କରଇ କୁମର
କେବଳ ଜଳ ପବନ କରଇ ଆହାର । ୧୦୯ ।

ଦ୍ୱାଦଶ ବରଷ ତପ କଲେକ ସେ ନୃପତି
ଶରୀର ନିଷ୍କଳଙ୍କ ତାହାର ଭଲ ହୋଇଲେକ ବ୍ୟାଧି । ୧୧୦ ।
ବାହୁଡ଼ ଦିଶଇ ମକର କେତନ ଜାଣି ତାର କାୟେ
ଶରୀର ବଢ଼ାଗିଲ ନିର୍ଧୂମ ଅଗ୍ନି ପ୍ରାୟେ । ୧୧୧ ।
ଭାସ୍କର ତୀର୍ଥେ ସେ ରହିଅଛଇ ଶାମ
ଦୁର୍ବାସାୟେ ଚଳ୍ପି ବଜେଙ୍କଲେ ତୀର୍ଥଧର୍ମ । ୧୧୨ ।
ଦେଖିଣ ଶାମ୍ବ କୁମର ଦୁର୍ବାସା ଚରଣେ ପରଣାମି
ସାଧୁଥ୍ୟେ ତୀର୍ଥର ମହିମାଂ କହିବା ମୋତେ ସ୍ୱାମୀ । ୧୧୩ ।
ଦୁର୍ବାସ୍ୟାୟେ ବୋଇଲେ ଶୁଣ ହୋ ହରିସୁତ
ସତ୍ୟଂ ଆଦି ସୃଜନ ହୋଇଲା ସେହୁ ତୀର୍ଥ । ୧୧୪ ।
ଅନାଦି ଯୁଗାଦି ଚନ୍ଦ୍ରଭାଗା ଉତ୍ପତ୍ତି
ଯେଉଁଥି ସେ ତପ ହାଦେ କରୁଥିଲା ସନ୍ଧ୍ୟପା । ୧୧୫ ।
ଇନ୍ଦ୍ରଙ୍କଇଂ ଅପ୍ରୀତ ହୋଇଲା ଇଳପତି
ସେ ପଦ ଘେନିମ ବୋଲି ବଳାଇଲା ବାଳମତି । ୧୧୬ ।
ସେହି ଚନ୍ଦ୍ରଭାଗା କୂଳେ କଲା ବସି ତପ
ନବଶତ ବରଷେ ସେ ନ ଦେଖିଲା ବରଞ୍ଚି ସରୂପ । ୧୧୭ ।
ମକର ଶୁକ୍ଳ ସପ୍ତମୀ କୃତ୍ତିକା ନକ୍ଷତ୍ର
ଅର୍କବାର ସେ ଦିନର ଅଟଇ ନିୟତ । ୧୧୮ ।
ବାଣିଜ୍ୟ ନାମେ କରଣ ବ୍ରହ୍ମ ନାମେ ଯୋଗ
ଅର୍କଦେତ୍ୟ ଭ୍ରମୁଥିଲା ଯାଇ ମଧ୍ୟସ୍ୱର୍ଗ । ୧୧୯ ।
ତୀର୍ଥଭୂମି ମିଳିଲା ସେ ମହୋଦଧିର କୂଳେ
ବିଶ୍ରାମ କଲେକ ଆସି ସେ ଅର୍କବଟର ତଳେ । ୧୨୦ ।
ଦେଖଇ ପୁରୁଷେକ ତତ୍କଂ ବିଦ୍ୟାଧର ରୂପ
ମହୋଦଧି ଚନ୍ଦ୍ରଭାଗାର ମଧ୍ୟେ କରଇ ସେ ତପ । ୧୨୧ ।
ଭାଳଇ ଅର୍କଦେତ୍ୟ ସେ ଅଟଇ ମନୁ ମାଂସ
ସେହିା ଭୋଜନ କରିବି ମୁଂ ଅଛଇ ପଞ୍ଚ ଦିବସ
ଉପବାସ । ୧୨୨ ।

୧୨୨।୨ ସେହିା ଭୋଜନ କରିବ ମୋର ବହୁ ଦିନ ଉପବାସ । (ଖ,ନ,ଠ)

ପ୍ରତେକ ବଗୃର ସେ ବାହାର ବଟ ତନ୍ତୁ
ଧୀରେ ଚରଣ ତାର ଗୃଳଇ ଫେନ୍ତୁଂ ହେନ୍ତୁଂ । ୧୨୩ ।
ପଛ କଡରେ ଆସି ମିଳିଲା ହୋଇଣ ଯେ ଭିନ୍ନ
ଲୁହାର ଯଷ୍ଟି ଯେକ ହାତରେ ଅଛୁ ଘେନି । ୧୨୪ ।
ସେ ଯଷ୍ଟି ଉଞ୍ଚାଇଅଛୁ ପିଟିବ ନେଇ ଶିରେ
ବରଞ୍ଚି ନାରାୟଣ ଉଦେ ସାହେର ଭିତରେ । ୧୨୫ ।
ଅସୁର ପ୍ରହାର ଯେ ଦେଖିଣ ଅରୁଣ
ସ୍ୱାମୀ ତପଧନୀ ଗୋଟିକ ଯେ ମାରିବ ପ୍ରେକ୍ଷଣ । ୧୨୬ ।
ଦେଖିଣ ବରଞ୍ଚି ନାରାୟଣ ରଥେ ଥାଇଂ
ଜାଣିଲେ ଆମ୍ଭଂକୁ ଧ୍ୟାନ ବସି ଯେ କରଇ । ୧୨୭ ।
ଲକ୍ଷେକ ଯୋଜନ ଅଟଇ ତହିଂକ ଯେ ଦୂର
ରଥେ ଥାଇଂ ବାମଭୁଜ ବଢାଇଲେ କରତାର । ୧୨୮ ।
ଲକ୍ଷେକ ଯୋଜନକଇଂ ସେ ଭୁଜ ବଢାଇ ନେଲେ
ଅର୍କ ଦଇତର କର ବରଞ୍ଚିନାରାୟଣ ଯେ ଧଇଲେ । ୧୨୯ ।
ଆରେ ରହ ରହ ଡାକନ୍ତି ବରଞ୍ଚି ନାରାୟଣ ଉଚ୍ଚସ୍ୱରେ ବୋଲି
ସଂଗେ କମଳ ଲୋଚନ ପକାଇଲେ ଫେଲି । ୧୩୦ ।
ପଡିଲା ଦୁରନ୍ତକ ଉତ୍ଥାନଶାକ୍ତି ହୋଇ
କାଳଚକ୍ର ଧରି ଦେବ ସଂଗେଣ ଉଞ୍ଚାଇ । ୧୩୧ ।
ଅର୍କଦତ୍ୟ ବୋଲଇ ତୁ କେଉଂଣ ପୁରୁଷ
ମୋହୋରେ ବିବାଦୀ ହେଉ ତୋହୋରେ
କସ୍ୱ ଯଶ । ୧୩୨ ।
ବଦନ୍ତି କରତାର ବରଞ୍ଚି ନାରାୟଣ
ମୁହିଂ ସେହି କରତାର ରେ ଯେ ଶର୍ଥ ମୋର ଜାଣ । ୧୩୩ ।
ଅର୍କଦତ୍ୟ ବୋଇଲା ମୁଂ ଯେ ତୀର୍ଥର ନୃପତି
ମୋହୋର ଆଧାର ଯେ ତପୋଧନ ଯତି । ୧୩୪ ।
ଯଦ୍ୟପି କଲୁ ତୁରେ ଯେ ମହାତୀର୍ଥ ଠାବ
କମାଇ ଅନୀତ ରେ କଲୁ ଦତ୍ୟ ଯେବ । ୧୩୫ ।
ତୋତେ ନ ମାଇଲେ ଯେଥି କେ ତୀର୍ଥ କରଇ
କୋପେ କାଳଚକ୍ର ସ୍ୱାମୀ କଲେକ ପ୍ରହାରଇ । ୧୩୬ ।

ଅର୍କ ଦୈତ୍ୟର ଦେହ ଜାଣିଣ ବଜ୍ରଯନ୍ତ୍ରା
ପଡ଼ ଭାଳଚନ୍ଦ୍ର ତହୁଂ ହୋଇଲା ଶତେ ଚୂନା । ୧୩୭ ।
ପୁଣି ସୂର୍ଯ୍ୟାବ୍ରତକ ଚକ୍ର ଯେ ପ୍ରହାର
ତେଣେହେଁ ଛାୟା ଯେ ଅଦ୍ଭୁତ ତାହାର । ୧୩୮ ।
ଶହସ୍ରେଣ ବଧ ଯେତୁଂ ନୋହିଲାକ ଦୈତ୍ୟ
ବକ୍ଷସ୍ଥଳେ ମାଡ଼ ବସିଲେ ଭାସ୍କର ଯେ ତୀର୍ଥ । ୧୩୯ ।
କଳପ ବଟ ତଳେ ଚନ୍ଦ୍ରଭାଗା ମହୋଦଧିର ତୀରେ
ଅର୍କ ଦୈତ୍ୟକଇଂ ମାଡ଼ ବହିଲେ ବକ୍ଷତଳେ । ୧୪୦ ।
ପୃଥୀର ଅଗ୍ନି କୋଣେ ଯେତୁ ଅର୍କ ଦଇତକୁ ଧ୍ୱଂସି
ତେଣୁକରି କୋଣାର୍କ ନାମ ହେଲା ଅମର ସ୍ୱର୍ଗବାସୀ । ୧୪୧ ।
ମକର ଶୁକ୍ଳ ପକ୍ଷ ଷଷ୍ଠୀ ହେବାର ରାତ୍ର
ସେ ଦିନକର ଲେଉଟାଇଲେ ଦୈତ୍ୟଗାତ୍ର । ୧୪୨ ।
ତିନି ଅବତାର ଯେ ଭାସ୍କର ମୂରତି
ଜାଗର ଜାଳି ଉଜାଗରେ ଜାଗଇ ଯେ ରାତି । ୧୪୩ ।
ସପ୍ତମୀ ପ୍ରାତକାଳେ ମହୋଦଧିରେ ସ୍ନାହାନ
ଚନ୍ଦ୍ର ଭାଗାୟେ ସ୍ଥାନେ ଅର୍କବଟ ଯେ ଦର୍ଶନ
ସେଠାରେ ମହାପାତକ ନାଶଯାଇ ବଦ୍ୟମାନ । ୧୪୪ ।
ଶ୍ରୀ କୋଣାର୍କ ତୀର୍ଥ ନାମ ଯେଉଂଣ ତୀର୍ଥଗୋଟି
ଯେହାକଇଂ ସମାନ ନୁହଇ ତୀର୍ଥ କୋଟି । ୧୪୫ ।
କୋଟିୟେ ଗୋଧନ ଦାନ କୋଟିୟେ ଅଶ୍ୱଗଜ
କୋଟିୟେକ କନ୍ୟା କୋଟିୟେ ରାଇଜ । ୧୪୬ ।
କୋଟିୟେ ପର୍ବତ ସର୍ବକରି ଦାନଦେଲେ ହିରା
ତଥାପି ସମାନ ନୋହଇ ଅର୍କ ତୀର୍ଥ ଭାବ । ୧୪୭ ।
କଳ୍ପକୁ କଳ୍ପ ଭାସ୍କର ଉଦୟେ ମାରତଣ୍ଡ
ଅର୍କ ବିଦାରଣ ଜ୍ୟୋତି ଅନନ୍ତ କୋଟି ବ୍ରହ୍ମାଣ୍ଡ । ୧୪୮ ।
ସଂଗ୍ୟାର ବଲ୍ଲଭ ଦେବ କୃତାନ୍ତଙ୍କ ପିତା
ଦିନକର ଦୋଷକୃତ ହରନ୍ତା ବହନ୍ତା । ୧୪୯ ।
ସକଳ ଅନ୍ଧକାରକୁ ଭୁଞ୍ଜି ସେ ଦିବ୍ୟଚକ୍ଷୁ
ସମସ୍ତେ ଅନ୍ଧ ଦେବ ଭୁଞ୍ଜି ସେ ସର୍ବ ଯେତ୍ରିକା ଦେଖୁ । ୧୫୦ ।

ନମାମି ନାରାୟଣ କମଳ ଲୋଚନ
ଶନିଶ୍ଚରଂକର ପିତା ଅନ୍ଧକାର ବିଧ୍ୱଂସନ ।୧୫୧।
ତିମିର ନିବାରଣ ନବଦ୍ୱୀପ ତେଜ୍ୟା
ଦ୍ରଶନେ ପାପ ଧ୍ୱଂସନ ପ୍ରସନ୍ନେ ହୋଇ ରାଜା ।୧୫୨।
ଜଳପୂ ଉଦ୍ଧରଣ ତୁ କଶ୍ୟପ ଗୋଦୀ
ଅରୁଣ ପ୍ରକାଶେ ଯାହାର ନିକାଶଇ ଜ୍ୟୋତି ।୧୫୩।
ଶ୍ରୀ କୋଣାରକ ତୀର୍ଥ ମଉଦଧିର ତଟେ
ମୁହିଂ ତାହା ଭାବଲ୍ ଭାସ୍କର କଲ୍ୟାଣ କଳ୍ପବଟେ ।୧୫୪।
ଶ୍ରୀ ହରଅଁ ନାରାୟଣଂକ ଚରଣେ ଶରଣ
ବଦପୂନ୍ତ ସାରେଳ ଦାସ ମୋତେ କରସି
ଉଦ୍ଧାରଣ ।୧୫୫।୪୦୭।

ଶାନ୍ତିପର୍ବ ସମାପ୍ତ

---

୧୫୩ । ୨ ଅରୁଣ ପ୍ରକାଶେ ଯାହାର ନିବାରଣ ଭୟ । (ଝ,ଠ)

# ସୂଚୀପତ୍ର

## ଆଶ୍ରମିକ ପର୍ବ

# ସାରଳା ମହାଭାରତ

## ଆଶ୍ରମିକ ପର୍ବ

### ଯଦୁବଂଶ ଧ୍ୱଂସ ବିବରଣ

ଶୁଣ ହୋ ସୁଜ୍ଞଜନେ ଶାମ୍ବ କୁମରର କଥା
ଶ୍ରୀ ମହାଭାରଥ ଯେ ମଧୁର ରସ ଗୀତା । ୧ ।
ଶ୍ରୀ ଭାରଥ କଥା ଯେ ଅମୃତ ରସ ବାଣୀ
ସହସ୍ର ବାର ଗଙ୍ଗାଯେ ସ୍ନାନସର ଫଳ ଜାଣି । ୨ ।
କଳି କଳୁଷରେ ଲିପ୍ତ ହୋଅନ୍ତି ଯେଉଁ ପ୍ରାଣୀ
ତରନ୍ତି ସଂସାରୁ ଯେ ଭାରଥ ବାଣୀ ଶୁଣି । ୩ ।
ଶାମ୍ବ କୁମର ଆଗେ ଦୁର୍ବାସା ମହାମୁନି
ଷର୍ଥର ଆଦିଜନ୍ମ ସୁଦଶା ଚତ୍ରେ ଭଣି । ୪ ।
ଶୁଣିଣ ସନ୍ତୋଷ ସେ କୃଷ୍ଣର କୁମର
ତହୁଁ ଦୁର୍ବାସା ମୁନି ଯେ ଗଲେ ସ୍ୱର୍ଗପୁର । ୫ ।
ଶାମ୍ବ କୁମର ଆସି ଦ୍ୱାରକାଯେ ପ୍ରବେଶ
ଅନଙ୍ଗ ଠାନ୍ତର ତାହାର ତେଜ ପରକାଶ । ୬ ।
ଦେଖିଣ ଆନନ୍ଦ ଯେ କୃଷ୍ଣ କାମପାଳ
ଦ୍ୱାରକାଯେ କରାଇଲେ ଉତ୍ସବ ମଙ୍ଗଳ । ୭ ।
ଆପଣେ ପୁତ୍ରକଇଁ କୋଳେ ଧଇଲେ ବନମାଳୀ
ଅର୍ଘ୍ୟ ବନ୍ଦାବନ୍ତି ଶୁଦ୍ଧ କାମିନୀଯେ ଧରି ସ୍ୱର୍ଣ୍ଣଥାଳୀ । ୮ ।
ତୁଳମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ସଉରି ବାସର
ଅଶ୍ୱିନୀ ନକ୍ଷତ୍ର ଭୋଗ ଅଟେ ସେ ଦିନର । ୯ ।

---

୩।୧ କଳପତେଗ ମଲେ ପେବଣ ଲଂଘିତ ହୋନ୍ତି ପ୍ରାଣୀ । ( ଝ, ଠ )

ସେ ବଧାଚା ଅଷ୍ଟବକ୍ରଙ୍କୁ ଯେ ଗାଇ
ଆଗ୍ୟାଂ ହଲେ ଦେଖ କୃଷ୍ଣ ମର୍ତ୍ତ୍ୟେ କ କରଇ । ୧୦ ।
ଭାବ ନିବାରଣ ତ ହୋଇଲା ଅବଶେଷ
ସେ କୃଷ୍ଣ କ ନିମନ୍ତେ ମଞ୍ଚରୁ ନୁଆସନ୍ତି ଆକାଶ । ୧୧ ।
ଯେମନ୍ତେ ଶ୍ରୀକୃଷ୍ଣ ହୋ ଆସନ୍ତୁ ଆକାଶେ
କୁଟୁମ୍ବ ନାଶଯାଉ ତାହାରଙ୍କ ଦୋଷେ । ୧୨ ।
ପିତାଂକର ବଚନେ ସେ ଅଷ୍ଟବକ୍ର ଋଷି
ଦ୍ୱାରବତୀ ଭୁବନେଣ ପ୍ରବେଶ ହେଲେ ଆସି । ୧୩ ।
ଯୁଗତେ ସେ ମହାତମା ଅଟନ୍ତି ଅଷ୍ଟବକ୍ର
ଦେଖିଣ ଉପହାସ କରନ୍ତୁ ମଞ୍ଚଲୋକ । ୧୪ ।
ଯଦୁବଂଶ ସଭାରେ ବସିଥିଲେ ଯେତେକ ଯାଦବେ
କାହାକଇଂ ଭୟେ ନାହିଂ ତାହାଂକର ମତ୍ତଗର୍ବେ । ୧୫ ।
ଯମ ପଶି ନୁଆରଇ ଯେଉଂ ଦ୍ୱାରବତୀ ପୁରୀ
କୃଷ୍ଣଂକର ପ୍ରସାଦେ ମତ୍ତଗର୍ବ ସବୁଂକରି । ୧୬ ।
ଭଲେଣୀ କରନ୍ତି ସମସ୍ତ କୁମାରେ ଯେ ମିଳି
ଶାମ୍ବକଇଂ ସ୍ତ୍ରୀ ବେଶ କଲେ ହୋଇ କୁତୂହଳୀ । ୧୭ ।
ଲୁହାର କପୋରପ୍ରେ ଆଣିଲେ କୃଷ୍ଣଂକ କୁମାରେ
ଶାମ୍ବକଇଂ ସ୍ତ୍ରୀ ବେଶ କରନ୍ତି ଅବଗୃହେ । ୧୮ ।
ଲୁହାର କପୋରକୁ ପେଟରେ ତାର ବାନ୍ଧି
ମିଛେହେଂ ଅଗକତ ଅଳପ ଅଳପ କାନ୍ଦି । ୧୯ ।
ଯଥାବିଧି ମୁନିଂକ ପ୍ରଳମ୍ବ ଯାଇଂ କପ୍ରେ
ଯେ ଯାହାର ସନମାନେ କଲ୍ୟାଣ କଲେ ମୁନିପ୍ରେ । ୨୦ ।
ପୁଛନ୍ତି ସେ କରଯୋଡ଼ ମୁନିଂକର ଆଗେ
ପ୍ରେ କାମିନୀ ଗର୍ଭ ବାସ ହୋଇଲା ସଂଯୋଗେ । ୨୧ ।
ଦଶମାସ ସମ୍ପୂର୍ଣ୍ଣ ତ ଅଗୁଳ ହୋଇଲା
କମାଇ ପ୍ରେ ନାରୀଗର୍ଭ ପ୍ରସବ ନୋହିଲା । ୨୨ ।
ମୁନିପ୍ରେ ବଡ଼ାଇ କଷ୍ଟୋର ବଥାଇ ପ୍ରେହାର ପେଟ
ବଡ ପ୍ରାସ ପାଇଲାନି ପ୍ରସବ ନିକଟ । ୨୩ ।

ପୁତ୍ର ଦୋହିତା ଅବା କସ ହୋଇବ ଜାତ
କହିବା ମହାମୁନି ସ୍ଥେଥିର ତଦନ୍ତ । ୨୪ ।
ଧ୍ୟାସ୍ତେ ଜାଣିଲେ ତାହା ମୁନି ଯୋଗବଳେ
ହାସ କଥାକୁ ମୁନି ବଡାଇ କୋପକଲେ । ୨୫ ।
ଅଷ୍ଟବକ୍ରେ ବୋଇଲେ ମୁହାର ସିଏ ଅଛି ଗର୍ଭେ
ତେଣେ ନାଶଯିବ ତୁମ୍ଭେ ସମସ୍ତ ଯାଦବେ । ୨୬ ।
ମୁହିଂ ତତ୍ତ୍ୱୋବନ୍ତ ମୋତେ କଲ ଉପହାସ
କୃଷ୍ଣସହ ନାଶଯିବ ତୁମ୍ଭର ସାତବଂଶ । ୨୭ ।
ସ୍ଥେସନେକ ଶାପ୍ୟ ଦେଇ ଗଲେ ମହାମୁନି
ଦ୍ୱାରକାସ୍ତେ ନ ପଶିଲେ ଅପମାନ ଘେନି । ୨୮ ।
ଶାପପାଇ ସକଳ କୁମାରଇ
କେବଣ ଚରିତ କରିବା ବୋଲି ଭାଳନ୍ତ ତହିଂ ରହି । ୨୯ ।
ହାସ୍ୟ ନିମନ୍ତେ ଆମ୍ଭେ ଯେବଣ କୃତ୍ୟକଲୁ
ସକଳ ଯାଦବେ ହରି ସହିତେ ତେଣେ ମଲୁ । ୩୦ ।
ଗୃହେ ଯାଇ କହିବା ଦେବ ଚକ୍ରଧାରୀ
କେବଣ କୃତ୍ୟ ଅବା କରିବେ ଜଗୁନାହା । ୩୧ ।
ପ୍ରଦ୍ୟୁମ୍ନ ସହିତେ ଯେ ସକଳ କୁମାରଇ
କେବଣ ଚରିତ ଅବା କରିବା ବୋଲି ବିଗୁରଇ । ୩୨ ।
ବେଗେଣ ଚଳିଗଲେ କୃଷ୍ଣଂକୁ ଯାଇ ଭେଟି
ପ୍ରଳମ୍ବ କରି ଯାଇ ସମସ୍ତେ ପାସ୍ତେ ଲୋଟି । ୩୩ ।
ବୋଲନ୍ତି କୁମାରେ ତାଂକୁ କରପଦ ଯୋଡି
ହସିବାର ନିମନ୍ତେ ଦେବ ଶାମ୍ବକୁ କଲେ ନାରୀ । ୩୪ ।
ହସିବା ନିମନ୍ତେ ନାଥ ଯେବଣ କୃତ୍ୟ କଲୁଂ
ଅଷ୍ଟବକ୍ର ଋଷିଠାରେ ଶାପ ଯେ ପାଇଲୁ । ୩୫ ।
ଲୁହାର କୋପସ୍ଥେ ଦେବ ପେଟରେ ବାନ୍ଧିଲୁ
ଶାମ୍ବ କୁମାରକୁ ଆମ୍ଭେ ସ୍ତ୍ରୀବେଶ କଲୁ । ୩୬ ।
ଯାଇଣ ଋଷିଂକୁ ଆମ୍ଭେ କହିଲୁ କର ଯୋଡକରି
ସ୍ଥେହ ନାରୀ ହୋଇଛି ଦଶମାସ ଗର୍ଭ ଧରି । ୩୭ ।

ଏସ ପ୍ରସବ ଅବା ହୋଇବ ମୁଷଳ ନରନାଥ
ସେହି ମହାମୁଷଳ ତୁମ୍ଭେ କହିବା ବିଗ୍ରହ । ୩୮ ।
ଧାସ୍ତେ ମୁଷଳ ଚଳସ୍ତେ କଲେକ ଯେତେବେଳେ
କପଟ ଚରିତ ବୋଲି ଜାଣିଲେ ଯୋଗବଳେ । ୩୯ ।
ଯେବଣ ପ୍ରସଙ୍ଗ ସେଥୁ ଉତପତ୍ତି ହୋଇସ୍ତେ
ଯାଦବ ବଂଶ ହରି ସଙ୍ଗତେ ଯାଅ ତୁମ୍ଭେ କ୍ଷୟେ । ୪୦ ।
ଯେସନେକ ଶାପ ଦେଇଲୁ ନରନାହା
ଗାନ୍ଧାରୀର ଶାପ୍ୟ ହରି ଟେଳିଇଲେ ତାହା । ୪୧ ।
ଶ୍ରୀକୃଷ୍ଣ ବିଚାରିଲେ ସେସନେକ ସରୂପ
ନ ପଡ଼ଣ କଣ୍ଠ ଯିବ ଗାନ୍ଧାରୀର ଶାପ । ୪୨ ।
ଅନନ୍ତେ ମୁଂ ଯେ ମଣ୍ଡିଲି ତାର ବଂଶ
ଯାହା ଅଟେ ତାହା ଭୁଞ୍ଜିବାକ ଅବଶ୍ୟ । ୪୩ ।
ଶ୍ରୀକୃଷ୍ଣ ଡକାଇଲେ ଯେ ମନ୍ତ୍ରୀ ଅକ୍ରୂରଇଂ
ତାହାଙ୍କଇଂ ଶ୍ରୀକୃଷ୍ଣ ଦେଲେ ଆଦେଶଇ । ୪୪ ।
ଯାଅ ତୁ ଅକ୍ରୂର ହୋ ଇନ୍ଦ୍ରପ୍ରସ୍ଥେ ବେଗେ
ପାଣ୍ଡବଂକ ନଗରେ ପଶିବୁ ସଂଯୋଗେ । ୪୫ ।
ପାଣ୍ଡବ ଗୃହଭାଇ ବସାଇଂ ଯୁଧିଷ୍ଠିରଂକ ଅଗ୍ରତେ
ମୋହୋର ବଚନ କହିବୁ ଯାଇଣ ତୁରିତେ । ୪୬ ।
ସର୍ବଦା ସେନେହ ବସଇ ମୋର ଚିତ୍ତ
ଭୀମସେନଙ୍କୁ ଡାକ ଆଣସି ତୁରିତ । ୪୭ ।
ଅଥବା ଯଦି ପୁଣି ନ ଆସଇ ମାରୁତ
ମୋତେ ସୁମରିବୁ ମୁହିଂ ଯିବଇଂ ସିନା ଧାଇଁ । ୪୮ ।
ସର୍ବଦା ସେନେହ ସେ ଯେ କରଇ ମୋତେ ଭୀମ
ଧାଡକାରେ ନ ଆସି କରଇ ନିକି ତମ । ୪୯ ।
ତକ୍ଷଣେ ଆଜ୍ଞାଂ ଘେନି ଅକ୍ରୂର ବେଗେ ଗଲା
ପାଣ୍ଡବଂକ ଭୁବନେ ପ୍ରବେଶ ହୋଇଲା । ୫୦ ।

---

୪୩।୨ ଯାହା ଅରଜ୍ଜି ସେ ଫଳ ଫଳଇ ଅବଶ୍ୟ । (ଖ,ଠ)

୪୬— { ଯୁଧିଷ୍ଠିର ଦ୍ରୌପଦୀ କୋଇନ୍ତା ସମେତେ
ସେ ମୋହୋର ବଚନ କହିବୁ ବୁଝି ତଥ୍ୟ । (ଘ,ଡ)

ଦେଖଇ ଯୁଧିଷ୍ଠି ଦେବ ବସିଅଛନ୍ତି ଆସ୍ଥାନେ
ଯାଇଣ ଅକ୍ରୂର ପ୍ରଲମ୍ବ କଲକ ବନ୍ଦନେ । ୫୧ ।
ଶ୍ରୀକୃଷ୍ଣଂକ ଆଗ୍ୟାଂ କହିଲ ବେଗେ ଯାଇ
ଭୀମସେନକଇଂ ତହୁଂ ଆଣିଲ ହକରାଇ । ୫୨ ।
ଦ୍ୱାରକା ଭୁବନେ ଭୀମସେନ ପ୍ରବେଶ ହୋଯନ୍ତେ
କୋଳକର ଶ୍ରୀକୃଷ୍ଣ ଆଲିଙ୍ଗନ କଲେ । ୫୩ ।
କୃତକୃତ୍ୟ ହୋଇ ହରି ପୁଛନ୍ତି ବାରତା
ତୋହୋର ପ୍ରସାଦେ ହରି କୁଶଲ ସର୍ବ କଥା । ୫୪ ।
ଭୀମର ଆଗେ କ୍ରୋଧେ କହନ୍ତି ହୃଷୀକେଶ
ଲୁହାର କୋପରଗୋଟି ଦେଖାଇଲେ ଦାଶ । ୫୫ ।
ବାବୁ ଭୀମସେନ ରେ ଆତ୍ମା ସାର୍ଥକ କର ମୋତେ
ସେ ଲୁହା କୋପର ନାଶ ହୋଅଇ ଯେମନ୍ତେ । ୫୬ ।
କ୍ଷୀରୋଦ୍ର ପାଟଖଣ ଯେ ପାଷାଣ ଯେକ ଗିରି
ହଣାଣତେ ଯୋଜନ ଆୟତନ ବିସ୍ତାର । ୫୭ ।
ସେ ପର୍ବତ ପରେ ଯେ ଘୋର ନେଇ ସେହା
ଯେସନେ ବିନଶ୍ୟନ୍ତି ହୋଅଇ ସେହି ଲୋହା । ୫୮ ।
ଭୀମସେନ ଲୋହା କୋପର ଘେନି ଯାଏନ୍ତେ
ଦ୍ୱାରକାପୁରକୁ ଯୋଜନ ଅଟେ ହଣାଶଯେ । ୫୯ ।
ସେ ପର୍ବତ ଉପରେ ଯେ ଭୀମସେନ ଉଠିକରି
ଗଦା ହିବସେଣ ଯେ ଇଲଦେଇ ଘୋରି । ୬୦ ।
ପବନ ଦେବତା ଭୀମକୁ ନେଇ ଦେଉଥାଇ ଆହାର
ହକାରନ୍ତେ ଘୋରିଲ ସେ ବରଷ ସେଗାରି । ୬୧ ।
ନ ଖଣ୍ଡିତ କରି ତହୁଂ ପକାଇଲ ଛାଣ୍ଡାଇ
ଛିଦ୍ରଖଣ୍ଡି ମାନ ହାଥରେ ଅଛି ରହି । ୬୨ ।
ରେଣୁ ପ୍ରମାଣେ ରହି ସକଳ ଛୁଡିଗଲା
ସମୁଦ୍ର ବଣହୋଇ କୂଳରେ ଲାଗିଲା । ୬୩ ।

---

୬୩।୧ 'ରେଣୁ ପ୍ରମାଣେ ରହି ସକଳ ଛୁଡିଗଲା' ପରେ କେତେକ ପୋଥିର ପାଠ :—]

[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

ଘୋରନ୍ତେଣ କୋପରେ ହୋଇଲା ନିର୍ଣ୍ଣଇ
ମନେ ମନେ ଭାଳଇ ଭୀମସେନ ଆପଣେ ଆପଣାଇଁ । ୬୪.
ଯେବେ କ୍ଷୁଦ୍ରଖଣ୍ଡି ଯେ ହୋଇବାକ କସ
ତେବେତେ କୋପରେ ଘୋର କଲା ଅବଶେଷ । ୬୫ ।
ବହୁତ ଛୁନାଇଣ ପକାଇଲା ଘୋର
ପୁଣି ବୃକୋଦର ଭାଳଇ ବିସ୍ତର । ୬୬ ।
କ୍ଷୁଦ୍ରଖଣ୍ଡି ଆବେ ମୁହିଁ କରିବଇଁ କସ
ଅଷ୍ଟବଙ୍କ ହେଲା ଶାପ୍ୟ ହେଲା ଅବିଶେଷ । ୬୭ ।
ଭାଳିଣ ବୃକୋଦର ସମୋଦ୍ର ଭିତରକୁ ପକାଇଣ ଦେଲା
ସମୋଦ୍ର ଭିତରେ ଯେ ମୀନେକ ଚରୁଥିଲା । ୬୮ ।
ଅଗାଧ ସମୁଦ୍ରେଣ ପଡନ୍ତେଣ ଲୁହା
ଜଳଙ୍ଗ ମୀନ ଛେଷଣେ ଗିଳିଲାକ ତାହା । ୬୯ ।
ଗିଳନ୍ତେଣ ହଗିଲା ସେ କନକ ମୀନ ପ୍ରାୟେ
ସମୋଦ୍ରଟାକ ସବୁ ହଗିଲା ଆଲୋକମୟେ । ୭୦ ।
ତହୁଁ ଭୀମସେନ ବାହୁଡିଣ ଆସେ
ଅସିଣ ସେ ଶ୍ରୀହରି ଗ୍ରୁମୁଟେଣ ହୋସେ । ୭୧ ।
ସମସ୍ତ ଘୋର ଦେବ ପକାଇଲା ସାରି
ଘୋରନ୍ତେ ଭୂମିସର ହୋଇଲା ତେତେ ଗିରି । ୭୨ ।
ଶେଷେ ଖଣ୍ଡିକ ଦେବ ଘୋର ନୁଆଣିଲା
ତାହାକୁ ସମୋଦ୍ର ଭିତରେଣ ପକାଇଣ ଦେଲା । ୭୩ ।
ଭାଳନ୍ତି ଶ୍ରୀକୃଷ୍ଣ ଭୀମର ବଚନ ଯେ ଶୁଣି
ଅଷ୍ଟବଙ୍କ ଶାପର ହୋଇଲା ନବାଣି । ୭୪ ।
ସେ ଲୁହା କୋଟରେ ହୋଇଲା କାଳଇ
ସେସନେକ ବୋଲି ହରି ମନେ ମନେ ଭାଳଇ । ୭୫ ।

---

[ପୂର୍ବପୃଷ୍ଠାର ପାଠାନ୍ତର]

ଯେବେରକା ବନ ହୋଇ ସେ କୂଳରେ ଲାଗିଲା ।
ଗଣ୍ଡ ପ୍ରାୟେ ହୋଇ ସକଳ ଛୁଡିଗଲା
ସେ ରଣ୍ଡମାନ ସମସ୍ତ ସନ୍ତସବଣ ହୋଇ ଜନମିଲା ।

ଭୀମସେନ ତାହା ଘୋଡ଼ାଙ୍କ ନେଇ
କର୍ମେ ଉପୁଜଇ ସନ୍ତାପ ହୋଇ । ୭୨ ।
ଶେଷ ଖଣ୍ଡିକ କର୍ମେ ନୁଆଉଲ ଘୋର
ସେ ଖଣ୍ଡି ପ୍ରାଣ ଯେ ହରିବ ମୋହୋର । ୭୭ ।
ଅନେକ ପୂଜା ଭୀମକୁ କଲେ ଦେବକୀର ବାଳେ
ଭୁଜରେ ଭଣ୍ଡ ତାକୁ ବସାଇ ଦେବ କୋଳେ । ୭୮ ।
ସର୍ବଦା ଅନୁରାଗ ମୋତେ ଥିବଟି କରେ ଭୀମ
ଦୋଷେ ଅଦୋଷେ ମୋତେ ନ ଧରିବୁଟି ତମ । ୭୯ ।
ଅନେକ ମଣିରତ୍ନ ଧେନୁ ଦେବ କଲେ ପୂଜା
ହସ୍ତିନା ପ୍ରବେଶ ହୋଇସେ ଯେ ପବନ ଆତ୍ମଜା । ୮୦ ।
ଧର୍ମସୁତ ଚରଣେ କରଇ ନମସ୍କାର
ଦେଖିଣ କଲ୍ୟାଣ ଯେ କଲେ ଧର୍ମ ନୃପବର । ୮୧ ।
ଯୁଧିଷ୍ଠିର ବୋଇଲେ ହେ କେବଣ କାର୍ଯ୍ୟ ଅର୍ଥେ
ଶ୍ରୀକୃଷ୍ଣ କର୍ମେ ତୋତେ ନଆଇଲେ ଗୁପତେ । ୮୨ ।
ଭୀମସେନ ବୋଲଇ ଦେବ ଅଷ୍ଟବକ୍ର ମହର୍ଷି
ଯେକ ଦିନକେ ସେ ଦ୍ୱାରକାୟେ ଆସି । ୮୩ ।
ମତ୍ତଗର୍ବେ ମୁନିଙ୍କ ଗୃହବା ନିମନ୍ତେ
ଲୋହ କୋପର ବାନ୍ଧିଲେ ଶାମ୍ବକୁମର ଗର୍ଭଗତେ । ୮୪ ।
ସ୍ତ୍ରୀବେଶ ଅଳଂକାର ତାହାଙ୍କଇଂ କଲେ
ଅଷ୍ଟବକ୍ର ଋଷିଙ୍କଇଂ ପ୍ରକମ୍ପ କରାଇଲେ । ୮୫ ।
ମୁନିଙ୍କୁ ଦଶମାସ ହୋଇଲା ଏବେ ଭାର
ଏହାର ଗର୍ଭେ କିସ ହୋଇବ ପୁତ୍ର-କନ୍ୟା ନାଶ । ୮୬ ।
କର୍ମେ ପ୍ରସବ ନୋହି ପାଉଅଛି ବ୍ୟଥା
ଜାଣି କହ ମହାତ୍ମାୟେ ଯେଥିର ତଥ୍ୟ କଥା । ୮୭ ।
ଧ୍ୟାନେ ଜାଣିଲେ ମୁନିୟେ କରନ୍ତି ଉପହାସ୍ୟ
ବୋଇଲେ ତେଣେ ତୁମ୍ଭର ବଂଶ ହେଉ ନାଶ । ୮୮ ।

---

୮୭।୨ ତଥ୍ୟ – ତଥ୍ୟ ।

କୃଷ୍ଣ ସଙ୍କେତେଣ ସେହି କପୋତରୂପେ ମରୁ
ଶୁଣିଣ ଶ୍ରୀକୃଷ୍ଣଙ୍କୁ ଲାଗିଲା ମହାଗରୁ । ୮୯ ।
ମୋତେ ଡକାଇ ବୋଇଲେ ଘୋର ନେଇ ସେହି
ନିଖଣ୍ଡି କରି ଛିନ୍ନାଇ ପକାଇବୁ ସେହି ଲୁହା । ୯୦ ।
ସ୍ୱାମୀ ସମୋଦ୍ର ତଟରେ ଯେ ମାଳନାମେ ଗିରି
ବଶାଶତ ଯୋଜନ ଯେ ଉତ୍ସର୍ଗ ତାହାରି । ୯୧ ।
ତହିଁକ ଲାଗଇ ଦେବ କଳୀ ବଟଇ ଥାଇ
ତହିଁର ତଳେ ବସି ମୁଁ ଘୋରୁଣ ପକାଇ । ୯୨ ।
ସେହିକାଦଶ ବରଷେ ଲୁହା ଯେ ଛିଡ଼ିଲା
ମାଳଗିରି ପର୍ବତ ଭୂମିସରି ହୋଇଲା । ୯୩ ।
ସେହିକଛିଦ୍ର ଲତାସେହି ନୁଆରିଲି ଘୋରି
ବାରିନିଧି ଭିତରକୁ ଦେଲି ଫିଙ୍ଗିକରି । ୯୪ ।
ଯୁଧିଷ୍ଠିର ପଚାରିଲେ ଶୁଣ ରେ ସହଦେବ
ଅଷ୍ଟବଂଶ ଋଷି ଶାପ କେମନ୍ତେ ହୋଇବ । ୯୫ ।
ମନ୍ତ୍ରୀ ବୋଇଲା ଦେବ ଅବଶ୍ୟ ଫଳିବ
ପୂର୍ବର କାଲକର୍ମ କେ ଅନ୍ୟଥା କରିବ । ୯୬ ।

---

୯୬ । ୨—"ପୂର୍ବର କାଲକର୍ମ କେ ଅନ୍ୟଥା କରିବ" ପରେ
'ଝ' ପୋଥିରେ ଅଧିକ ପାଠ :—

ଯୁଧିଷ୍ଠିର ବୋଲନ୍ତି ସେ ଖପରି କେଉଁଠାର କେମନ୍ତ
କିମ୍ପା ସେ କୃଷ୍ଣବଂଶ କରିବ ନିପାତ ।
ସେଥିର ଚରିତ ମୋତେ କହ ବୁଝାଇ
ଶୁଣିଲେ ହାଦେ ସନ୍ଦେହ ଯିବ ମୁହିଁ ।
ସହଦେବ ବୋଲନ୍ତି ବ୍ରହ୍ମା କଲେକ ନିର୍ବାଣ
ଦୁର୍ବାସା କହନ୍ତେ ସେ ଜାଣିଲେ ଆପଣ ।
ଲୁହା ଖପରି ବ୍ରହ୍ମା ନିର୍ବାଣ ଯେ କଲେ
ସେ ଖପରି ଗୋଟିକ ଯେ ଦୁର୍ବାସାଙ୍କୁ ଦେଲେ ।
ସେ ଖପରି ଗୋଟି ଦୁର୍ବାସା ଗଙ୍ଗାରେ ପକାଇ
ତାହା ଭାସି ଆସିଲା ଯେ ଦ୍ୱାରକା ପୁରଠାଇଁ ।
(ଅବଶିଷ୍ଟାଂଶ ପରପୃଷ୍ଠାରେ)

ଶ୍ରେ ଦେବ ସେ ଲୁହା ଘୋରନ୍ତେଣ ଯେ ଯଦୁଙ୍କ ଫେଣ
ତନ୍ମୁଁ ଉପୁଜିଲା ସନ୍ତ୍ରା ନାମେ ବଣ । ୯୭ ।
ତହୁଁ ଯାଦବେ ଯେ ହୋଇବେ ମରମର
ସମସ୍ତେ ଛିଡ଼ିବେ ଯେ ଭରଣ ପ୍ରମାଣେ କର । ୯୮ ।
ତାହାର ଦାଢରେ ସମସ୍ତେ ନାଶଯିବେ
ବାକ୍ୟତେ ଆଦ୍ୟକର ସମସ୍ତେ ମରିବେ କୃଷ୍ଣ ସେକା ଥିବେ ।୯୯।
ଶୁଣିଣ ଯୁଦ୍ଧେଷ୍ଟିଙ୍କ ଯେ ସନ୍ତାପିତ ମନ ହୋଯେ
କମାଇ ସେଡ଼େ ଶାଗ୍ର ହର ପୁଣ ପାସେ । ୧୦୦ ।
ଶ୍ରୀକୃଷ୍ଣର ଅଭାବେଣ ଆମ୍ଭର କସ ରାଜ୍ୟ
କସ ଆମ୍ଭର ସୁଖଭୋଗ କସ ଅଇଶ୍ୱର୍ଯ୍ୟ । ୧୦୧ ।
ସହଦେବ ବୋଇଲ ହେ ଛିଦ୍ର ଖଣ୍ଡି ସେକ ଭ୍ରମ ପକାଇଲ ଫିଙ୍ଗି
ମହାବଳୀ ଜଳଙ୍ଗ ତା ଗିଳିଲାକ ବେଗି । ୧୦୨ ।
ବେଣ୍ଟପୁର ରାଜା କୁଞ୍ଜର ନାମେ କଇବର୍ତ୍ତ
ତାହାର ସୁତାରେ ମୀନ ଲାଗିଲା ଭୁରିତ । ୧୦୩ ।
ବୃତକର ଧରି ଆଣିଲ କଇବର୍ତ୍ତ ମୀନକୁ
କୁବଳୀ ନାମେ ଖରଯା ଯେ ଗଢ଼ିଲ ତାହାକୁ । ୧୦୪ ।

---

(ପୂର୍ବ ପୃଷ୍ଠାର ପାଠାନ୍ତର)

ଶାମ୍ବ କୁମର ଯେ ସ୍ତ୍ରୀହାବେ ଯାଇଥିଲ
ଦବ୍ୟ ସୁଘଟଣ ଦେଖି ସେ ଖପରକୁ ଆଣିଲ ।
ସେ ଖପର କବାଣ କଲେ ବଷ୍ଟୁବଂଶ ନାଶପାଇଂ
ସେ କାଳ ଖପର ଯେ ଦ୍ୱାରକାରେ ହୋଇଲାକ ଯାଇଂ ।
ତାହାର ଗଢେ଼ ଖପର ରଖି ଶାମ ଯେ ଖେଳନ୍ତି
ଦଇବ ଯୋଗେ ଖେଳ ଖେଳନ୍ତେ ଅଷ୍ଟାବକ୍ର ମିଳନ୍ତି ।
ସେ ଲୁହାକୁ ନେଇଣ ଭ୍ରମ ଯେ ଘୋରନ୍ତି
ଶୁଣିଣ ଯୁଦ୍ଧେଷ୍ଟିଙ୍କ ମନ ସାନନ୍ଦ ହୋଇଲ ॥

ଆମ୍ଭର ମିତ୍ର ଗୋ ଅଟନ୍ତି ଜାଣ ନାମେ ଶବର
ଏହି ମୀନଗୋଟି ନେଇ ଦିଅ ତାହାଂକର ଘର । ୧୦୫ ।
ମତ୍ସ୍ୟଂକର ମଧ୍ୟେ ଏହି ଯେ ବଡ଼ାଇ ଅପୂର୍ବ
ଦେଖିଣ ମଇତ୍ର ବଡ ହରଷ ହୋଇବ । ୧୦୬ ।
ଅପୂର୍ବ ପଦାର୍ଥ ପାଇଲେ ଯେ ମଇତ୍ରଂକୁ ଦିଅଇ
ବଜାରୁ କେଉଟୁଣୀ ତା ଶବର ପଲ୍ଲୀକି ନିଅଇ । ୧୦୭ ।
ଯେ ଯାହାର ସନମାନ ଉଚିତ ଯେ କରି
ମୀନଗୋଟି ଥୋଇଲା ଯେ ଦୁଆରେ ତାହାରି । ୧୦୮ ।
ମୀନ ଦେଖି ସାନନ୍ଦ ହୋଇଲା କିରାତ
ମୃଗ ଗୋଟିଏକ ଧରି ଦିଲାକ ତୁରିତ । ୧୦୯ ।
ଆସି କଇବର୍ତ୍ତ ନିଜ ମନ୍ଦିରେଣ ମିଳିଲା
ସେ ଯେଉଂ ମୃଗ ଗୋଟିକି ଦିଲା ନେଇ ପତିକି ସମର୍ପିଲା ।୧୧୦।
ଏଥୁଁ ଅନନ୍ତରେ ସେ ଶବର ମତ୍ସ୍ୟକୁ ଦେଖିଲା
ଶବରୁଣୀକଇଂ ହକାରି ସେ ବଚନ ବୋଇଲା । ୧୧୧ ।
ଏହି ମତ୍ସ୍ୟ ବେଗକରି କେଳାଅ ତୁ ନେଇ
ଆମ୍ଭର ମଇତ୍ର ଯେ ଦିଲେକ ପଠିଆଇ । ୧୧୨ ।
ଏତେକ ବଚନ ଯେହ୍ନୁଂ ଶବରୁଣୀ ଶୁଣିଲା
ପନିକ ଯେନିକରି ସେ ମୀନକୁ ଚିରିଲା । ୧୧୩ ।
ଦେନିଖଣ୍ଡ କରି ଯେ ଛୁନାବନ୍ତେ ତାହା
ଗର୍ଭର ଭିତରେ ପାଇଲାକ ଛୁଦ୍ର ଲୁହା । ୧୧୪ ।
ଦେଖି ଆଶ୍ଚର୍ଯ୍ୟ ଯେ ହୋଇଲା ଶବରୁଣୀ
ଲୁହା କରେ ଧରି ଚାରି ମନେ ମନେ ଗୁଣି । ୧୧୫ ।
ଶବରୁଣୀ ବୋଇଲା ସେ ଶବରକଇଂ ବାଇ
ଏହି ଲୁହାଖଣ୍ଡେ ମୀନ ଗର୍ଭରେ ଥିଲା ରହି । ୧୧୬ ।
ଲୁହା ଦେଖିଣ ଶବର ଯେ ହରଷ ହୋଇଲା
ହାଥରେଣ ଘେନି ଲୁହା ମନରେ ବିଚାରିଲା । ୧୧୭ ।

---

୧୦୮।୨ ଅପଣାର ମୀନ ଦେଇ କହଇ ପ୍ରୀତିକରି । (ଢ଼)

ବଡ ତେଜବନ୍ତ କୃଷ୍ଣ ଅଟଇ ହାଦେ ଲୁହା
ଚଆର ପଟେକ ମୁଂ ଗଢାଇବ ଯେହା । ୧୧୮ ।
ଯେଣୁଂ ଭବିଷ୍ୟ ଅଛଇ ପୂର୍ବର ଯେ ବାଣୀ
କେହୁ ଅନ୍ୟଥା ଯେ କରିବ ତାହା ହାଦେ ପୁଣି । ୧୧୯ ।
ସେ ଲୁହା ଖଣ୍ଡିକ ଘେନି କମାରଶାଳକୁ ଯେ ଗଲା
ଧନ ଦେଇ ତାହା ନାରାଚେକ ଗଢ଼ାଇଲା । ୧୨୦ ।
ବେନି କାଣ୍ଡକଡ ତାର ନବନିଶି ହୋଏ
ବାଡ଼ା ଦେଖି ଶବରର ଉଲ୍ଲସଇ କାଏ । ୧୨୧ ।
ନିଜ ମନ୍ଦରେ ଯାଇଂ ମିଳିଲାକ ଶବରଇ
ସର୍ବଦା ସେ ନାଚ୍ଛେ ମୃଗୟେ ବିନୋଦ କରଇ । ୧୨୨ ।
କୋଦଣ୍ଡ ଦୁର୍ଦ୍ଦଣ୍ଡ କାଣ୍ଡ କରେ ଥାଇ ମୋହ
ସେ କାଣ୍ଡଗୋଟି ଶବର ସ୍କନ୍ଧରେ ଘେନି ଥାଇ । ୧୨୩ ।
ଅଷ୍ଟବକ୍ର ଋଷି ଦିଲେ ଯେବଣ ଶାପ
କେ ତାହା ଅନ୍ୟଥା ଯେ କରିବାକ ଲୋପ୍ୟ । ୧୨୪ ।
ଯଦ୍ୟପି ହରି ତ୍ରିଭୁବନ ଆଧିପତି
ଅଷ୍ଟବକ୍ରଂକର ଶାପ ମୋକ୍ଷିଲାକ ନିବର୍ତ୍ତି । ୧୨୫ ।
ସହଦେବ ବୋଇଲା ଦେବ ସେ ଚଆର ଘେନିଣ କରିତ
ତାହା ଘେନି ବିନ୍ଧିବ ଯେ ଦେବ ଜଗନ୍ନାଥ । ୧୨୬ ।
ଅଷ୍ଟବକ୍ର ଶାପ ନ ଯିବ ଦେବ ଗଣ
ତେଣେ ସେ ପ୍ରାଚୀଙ୍କ ହୋଇବେ ଦେବହରି । ୧୨୭ ।

ଯୁଧିଷ୍ଠି ଦେବେ ବୋଇଲେ ସେ କରିଛ ଗୁରୁ ମାନ
ଶ୍ରୀକୃଷ୍ଣ ନାଶ ଯିବେ କି ତାହାର ଶରୁଧାତ । ୧୨୮ ।
ସ୍ୱାମୀଂକର ଅଗ୍ରତେ ଯେ କହଇ ସହଦେବ
ସେ ଶ୍ରୀଗ୍ର ଶବର ଅଙ୍ଗଦା ଅଟଇ ହାଦେ ପୂର୍ବ । ୧୨୯ ।
ଶ୍ରୀରାମ ଶ୍ରୀମୁଖ ଘେନି ସେ ଲଂକାଗଡକଇଂ ଗଲା
ରାବଣ ଶିରମୁକୁଟ ସେ ହୁଂକୃତ ଆଣିଲା । ୧୩୦ ।
ସୁବର୍ଣ୍ଣର ରତ୍ନ ଜଡିତ ମେଡ ମଣ୍ଡୋପ ସହିତେ
ଆଣିଣ ସମର୍ପିଲା ସେ ଶ୍ରୀରାମ ଅଗ୍ରତେ । ୧୩୧ ।

ହେଲେଣ ବୋଇଲେ ଦେବ ରଘୁକୁଳ ପତି
ବର ମାଗ ଅଙ୍ଗଦ ରେ ଦିବାର ମୋର ମତି । ୧୩୨ ।
ଅଙ୍ଗଦ ବୋଇଲା ତୁ ମୋ ପିତାର ବଇରୀ ଅଟୁ ଦେବରାଜ
ମୋହୋର ଯେ ସ୍ୱାର୍ଥ ପ୍ରଭୁ ହୋଇବୁ ପ୍ରାଣତ୍ୟାଜ । ୧୩୩ ।
ଦାଶରଥି ବୋଇଲେ ହୋଇଲା ସେ ମୋହୋର ସତ୍ୟ ସତ୍ୟ
ଦ୍ୱାପରେ କଳ୍ପା ଅବତାରେ ମୋତେ କରିବୁ ଶରଘାତ । ୧୩୪ ।
ଯୁଧିଷ୍ଠିରଙ୍କ ଅଗ୍ରତେ କହଇଂ ସହଦେବ
ସ୍ୱାମୀ ସେବେ ଆସେ ଘଟିଲା ସେସନେକ ପୂର୍ବର ପ୍ରସ୍ତାବ । ୧୩୫ ।
ଶୁଣିଣ ଯୁଧିଷ୍ଠିର ଦେବ ବସଇନ୍ତ ମନେ
ଆମ୍ଭନ୍ତ ଛାଡ଼ି ଶ୍ରୀକୃଷ୍ଣ ଯିବେଟି କେସନେ । ୧୩୬ ।
ସହଦେବ ବୋଇଲେ ଆଗେ ଯିବେଟି ଶ୍ରୀବତ୍ସ
ଆମ୍ଭେମାନେ ଯିବାଟି ସ୍ୱାମୀ ତାହାଂକ ପଛ ପଛ । ୧୩୭ ।
ଜୟତୁ ଶ୍ରୀହରି ଦେବ ଜୟ ତୁ ଶ୍ରୀବତ୍ସ
କଉତୁକେ ଜାତ ଅନ୍ତ କରୁ ତୁ ପ୍ରତକ୍ଷ । ୧୩୮ ।
ଆପଣେ ମରଣ ଦେଖାଇବାର ବାଟ
ତେଣୁକରି ସମୂଳକୁ ଦେଖାଉ ଯମଥାଟ । ୧୩୯ ।
ଯେଉଂ ଦେବ ମାୟାଧର ମାୟାମୋହ ଫାଶି
ସେ ମାୟାବନ୍ଧନୁ ମୋତେ କରବା ଉଦାସୀ । ୧୪୦ ।
ଜନ୍ମେ ଜନ୍ମେ ସୁଗ୍ୟଂଜନେ ଭାବ ଯେ ଶ୍ରୀବତ୍ସି
ତବ ଲୟେ ଭାବ ମୋତେ ମୁକତ ଗତ ଇଛି । ୧୪୧ ।
ଶ୍ରୀକୃଷ୍ଣ ଚନ୍ଦ୍ରପାଦେ ମୋହୋର ବିନୟେ ଦଇନା
ମୁକତ ଗତ ଇଛଇ ସାରଳ ଦାସ ମୁନା । ୧୪୨ ।



## ଧୃତରାଷ୍ଟ୍ରଙ୍କର ବନ ଗମନୋଦ୍‌ଯୋଗ

ସେଥୁ ଅନନ୍ତରେ ସେ ବଇବସ୍ଵତ ମନୁ
ବଡ଼ାଇ ସାନନ୍ଦ ହୋଇଲ ଭୂମ୍ନର ବଚନ । ୧ ।
ପାଣ୍ଡବଂକର ଅନ୍ନ ସେ ଧୃତରାଷ୍ଟ୍ର ଭୁଞ୍ଜି
ନିର୍ଲଜ ଆତ୍ମା କର୍ମେ ରଖିଲା ମନ ରଞ୍ଜି । ୨ ।
ଯୁଧିଷ୍ଠିରଂକର ସମ୍ମୁଧି ଦେଖିଣ ଦୁର୍ବୁଦ୍ଧି
ଧୃତରାଷ୍ଟ୍ରଂକ ମନ କି ନୋହିଲା ବିରୋଧି । ୩ ।
ସୁବିନ୍ତ ଭୀମସେନ ମାଇଲା ଯନ୍ତ୍ରଂ ଯୁଦ୍ଧେ
ରହିବା ନ ମିଳଇ ଧୃତରାଷ୍ଟ୍ର ପୁତ୍ର ଶୋକେ ତାହାଂକ ସନ୍ନିଧେ ।୪।
ଅପାର ଦୁଃଖ ସେ ଆପଣେ ସୁମରଇ
କେସନେକେ ଚାଟଶାରେ ତାହାର କାୟା ସେ ଅଛଇ । ୫ ।

---

୧।୧ ପାଠ ଆରମ୍ଭରୁ 'କ' ପୋଥିରେ ଏକ ପାଠାନ୍ତର :—

ସେଥୁ ଅନନ୍ତରେ ସେ ବଳଂକ ଦେଶ ରାଜା
ଅଗସ୍ତିଂକ ଚରଣେ କଲା ଦିବ୍ୟପୂଜା ।
କୃତକୃତ୍ୟ ହୋଇଣ ପୁଚ୍ଛଇ ନୃପତି
ଭୂମ୍ନର ପ୍ରସାଦେ ଶୁଣିଲ ସର୍ବସ୍ଥିତି ।
ଭୋ ମୁନି ହସ୍ତିନାପୁରେ ଯୁଧିଷ୍ଠିର ସେ ହୋଇଲେ ଦଣ୍ଡଧାରୀ
ତାହାଂକ ଆଶ୍ରେ ରହିଲେ ଧୃତରାଷ୍ଟ୍ର ଗାନ୍ଧାରୀ ।
ବଡ଼ାଇ ଅସମ୍ଭବ ସେ ଅଟଇ ସେହୁ କଥା
ଧୃତରାଷ୍ଟ୍ରର ମନେ ନୋହିଲା କି ବ୍ୟଥା ।
ଶତେକ ପୁତ୍ର ଭୀମା ତାର ମାଇଲା ରଣ ମଧ୍ୟେ
ତାହାଂକର ଆଶ୍ରେ ଥାଇଂ ପ୍ରାଣ ଧଇଲା କେଉଂ ସଧେ ।
ଯୁଧିଷ୍ଠିରଂକ ରାଜପଦ ଦେଖିଣ ସମ୍ମୁଖେ
ଧୃତରାଷ୍ଟ୍ର ମନେ କି ନୋହୋଇ ବିରୋଧ ।
ପାଣ୍ଡବଂକ ଅନ୍ନ ତାକୁ ରୁଚଇ କେସନେ
ସେହା ଶୁଣି ବିସ୍ମୟେ ଭାଳଇ ମୋର ମନେ.

ପୁତ୍ରଂକର ହେତୁ ଯେ ଦେଖଇ ଅନଦନେ
କେହୁଣସି ଦିନ ସେ ସୁଖ ନୋହିଲା ତାର ମନେ । ୬ ।
ରଜା ବୋଇଲ ମୁନି ହେ ଶୁଣିମା ତଦନ୍ତ
ବ୍ୟାସେ କହିଲେ ଧୃତରାଷ୍ଟ୍ରଂକୁ ପରମାର୍ଥ । ୭ ।
ପିତାଙ୍କଂ ଦଶଗୁଣେ ଅଧିକ ଅଟଇ ମାତା
ମାତାଙ୍କଂ ଦଶଗୁଣେ ଯେ ଅଟଇ ବନିତା । ୮ ।
ବାରୁ ଶତେପୁତ୍ର ତୋହୋର ବଧକଲେ ଯେ ପାଣ୍ଡବେ
ଆପଣେ ବାନପ୍ରସ୍ଥ କର ଯା ଯେଉଁଥେ ନ ରହ ରାଜଦେବେ । ୯ ।
ଶତେପୁତ୍ର ହରାଇ ଜୀବନେ କସ କାର୍ଯ୍ୟ
ମହାଦୁଖ ପାଇବୁଟି କହିଲୁ ମତେ ଆଜ । ୧୦ ।
ତାହାଂକର ବଚନେ ମୋ ନ ଗଲ ପରିବୋଧ
ଯେତେ ଜ୍ଞାନମାନେ ଜୀବନକୁ କମ୍ପେ କଲ ସଧ । ୧୧ ।
ପାଣ୍ଡବଂକ ଅନ୍ନ ତାକୁ ରୁଚଇ କେମନ୍ତେ
ତାହା ଶୁଣିଣ ରୋମାଞ୍ଚଇ ମୋହୋର ଯେ ଗତେ । ୧୨ ।
ଶୁଣ ହେ ମହାରାଜା ବଦପ୍ୟନ୍ତ ଅଗସ୍ତି
ଶୁଣିମା ଅନରୂପ ତୁ ଅଟୁ ମହାପଣ୍ଡ । ୧୩ ।
ଅନେକ ବନପ୍ରେ ସେ ଧୃତରାଷ୍ଟ୍ରେ ଦୃଅନ୍ତ ଯୁଝେଷ୍ଟି
ପଣ୍ଡୁହ୍ନଂ ଅଧିକ ସେବଇ ଧୃତରାଷ୍ଟ୍ରି । ୧୪ ।
ସେ ଵଧରେ ଗଲ ଯେ ପଞ୍ଚଦଶ ବରଷ
ଆକାଶଂ ଗମନ ଯେ କରିଲେ ବେଦବ୍ୟାସ । ୧୫ ।
ଧୃତରାଷ୍ଟ୍ର କରିଲେ ତୁମ୍ଭେ ନ ରହ ଅମ୍ବିକାର ସୁତ
ପୁନ ବଇର ଦେଖୁତୁ ଯେ କେବଣ ଚରିତ । ୧୬ ।
ପ୍ରୟାଗେ ଖାଣ୍ଡ ଯାଅ କୁରୁ ନୃପନାଥ
ଆବର କମାଇ ତୁ ଅଛୁ ପୁଣ ହେଥ । ୧୭ ।

---

୮।୨ ମାତାଙ୍କଂ ଦଶଗୁଣେ ଅଟଇ ଯେ ସୁତା । (ଣ)
୯।୨ ପ୍ରୟାଗେ ଖାସଦଅ ଯା ଯେଉଁଥେ ନ ରହ ରାଜଦେବ । (ଣ)

ସକଳ ହରାଇଲୁ ଆବର ତୋହୋର କଷ ଯେ ଅଛଇ
ସେଥି ଥିଲେ ତୋତେ ଅପାର ଦୁଖଇ । ୧୮ ।
ପୁତ୍ର ପଉତ୍ର ଧରିତ ନାହିଂ ନାମ ଗ୍ରାମ
ଚତୁର୍ଥ ବୟସେ ତୁମ୍ଭର ଅନ୍ତର କଷ କାମ । ୧୯ ।
ସେତେ ବୋଲଣ ତହୁଂ ଗଲେକ ମହାମୁନି
ସେ କଥା ଧୃତରାଷ୍ଟ୍ର ମନେ ମନେ ଗୁଣି । ୨୦ ।
ଧୃତରାଷ୍ଟ୍ରଙ୍କୁ ନିତ୍ୟେତ୍ୱେଂ ଶଂଖୁଳନ୍ତି ଯୁଧିଷ୍ଠି
ନିଜ ରାଜ୍ୟ ଭୋଗ ସମର୍ପିଲେ ଧୃତରାଷ୍ଟ୍ରି । ୨୧ ।
ଦେବର୍ଛନେ ଧୃତରାଷ୍ଟ୍ର ଗାନ୍ଧାରୀ ମାତ କୋନ୍ତୀ
ବଚନେ ଭୋଜନେ ସେ କରନ୍ତି ନିବୃତ୍ତି । ୨୨ ।
ଧୃତରାଷ୍ଟ୍ରଙ୍କ ତୁଲେ ଯେ ଗାନ୍ଧାରୀ ମହାସତୀ
ଦୁର୍ଯୋଧନହୁଂ ଅଧିକ ରଞ୍ଜିଲେକ ମତି । ୨୩ ।
ପୁନନ୍ତି ପାଶୋରିଲ ଯୁଧିଷ୍ଠି ଭଗତେ
ସେକା ଯୁଧିଷ୍ଠି ହୋଇଲେ ତାହାଂକୁ ଶତେ ଧୃନେ । ୨୪ ।
ସେସନେକ ଜାଣି ଭୀମସେନ ଯେ କୋପଇ
ପୁଣିହିଂ ଅନ୍ଧକଇଂ ଯୁଧିଷ୍ଠି ରାଜ୍ୟ ସମର୍ପଇ । ୨୫ ।
ବନ୍ଧୁ ସହୋଦ୍ର ମରାଇ ଅମ୍ଭେ ପାଇଲୁ ଯେ କାର୍ଯ୍ୟ
ଯୁଧିଷ୍ଠି ଦୟାଯେଣ ନିଜ ସମର୍ପଇ ପୁଣ ରାଜ୍ୟ । ୨୬ ।
କେତେ କେତେ ଦୁଖ ଆମ୍ଭେ ପାଇଲୁ ଭ୍ରମି ବନେ
ତେବେହେଂ ଧୃତରାଷ୍ଟ୍ରର ଦୟା ନ ବସିଲ ମନେ । ୨୭ ।
ରାଜାର ଆଗ୍ୟାଂ ଭ୍ରଷ୍ଟ କରିତ ନୁଆର
ଆପଣାର ଶିର ଦେଇ ପୋଷଇ ବାଇର । ୨୮ ।
ସେକା ଧୃତରାଷ୍ଟ୍ରକୁ କେମନ୍ତେ ଦେଖିବ
ଯେମନ୍ତ ରାଜ୍ୟ ଛାଡିବ ତେମନ୍ତ ଉପାୟେ କରିବ । ୨୯ ।
ସେମନ୍ତେ ବସ୍ତରନ୍ତେ ଗଲେକ କେତେ ଦିନ
ସେକଦିନେ ଆସ୍ଥାନେ ବିଜୟେ ଧୃତରାଷ୍ଟ୍ର ରାଜନ । ୩୦ ।
ସଞ୍ଜୟେ ବିଦୁରେ ଯେ ପାରୁଶେ ଅଛନ୍ତି
ସେସନେକ ସମୟେ ଯାଇ ବିଜୟେ ମାରୁତି । ୩୧ ।
ବାହା ମରନ୍ଧଣ ବାର ପ୍ରତଗ୍ୟାଂ କରଇ
ସେହିଭୂକେ ମାଇଲ ମୁଂ କାଞ୍ଚିକ ଶତେଭାର । ୩୨ ।

ଧୃଶାସନ ଭୁଜ ଉପାଡିଲ ଯେଉଁ ବାହେ
ଦୁଯୋଧନ ମୁକୁଟ ମର୍ଦ୍ଦିଲି ଯେଉଁପାଦେ । ୩୩ ।
ଯେଉଁ ଭୁଜେ ଦୁଯୋଧନ ଜାନୁଭଗ୍ନ କଲା
କଳଙ୍ଗସେନର ଶତେକ ଯେଉଁଭୁଜେ ମାଇଲା । ୩୪ ।
ପୁଣ ପୁଣ ପ୍ରତଗ୍ୟାଂ ଯେ କରଇ ମହାରୋଷ
ଶୁଣିଣ ଧୃତରଷ୍ଟ୍ର ପାଇଲା ମନେ ତ୍ରାସ । ୩୫ ।
ଭୀମ ନିଂଘାସ ବଚନ ଅଗ୍ନି ହୃଦୟେ ପଶନ୍ତେ
ଶରୀର ଧଇର୍ଯ୍ୟ ନୁଅରଇ ଧୃତରାଷ୍ଟ୍ର ଅମ୍ଭାର ଦହନ୍ତେ । ୩୬ ।

---

୩୪।୨—"କଳିଙ୍ଗସେନର ଶତେକ୍ହଇ ଯେଉଁଭୁଜେ ମାଇଲ"
ପରେ "କ, ଠ" ପୋଥିରେ ପାଠ :—

ଯେମନ୍ତେ ଅନେକ ପ୍ରତଗ୍ୟାଂ କରଇ ଭୀମସେନ
ଉଠିଣ ବାହାସ୍ଫୋଟ ମାରଇ ଘନ ଘନ ।
ଶୁଣିଣ ଧୃତରାଷ୍ଟ୍ର ନୟନୁଂ ଲୁହ ଗଳ
ବାଧାବା ସୁମରିଣ ନୃପଇ ବିକଳ ।
ଅନେକ କ୍ରୋଧ ଯେ କରିଣ ଧୃତରାଷ୍ଟ୍ରି
ସଞ୍ଜୟେ ହାତ ଧରି ସଭାରୁ ଗଲ ଉଠି ।
ଗାନ୍ଧାରୀ ଆଗେ ରାଜା ମିଳିଲେକ ଯାଇଂ
କ୍ରୋଧଭର ହୋଇଣ କହିତ ନୁଆରଇ ।
ବଇବର ଭବିଷ୍ୟ ଶୁଣ ଗୋ ଗାନ୍ଧାରୀ
ସଞ୍ଜୟର ସଙ୍ଗତେଣୁ ମୁଂ ଅସ୍ଥାନେ ବସିଥିଲି ।
ସଭରେ ପ୍ରତଗ୍ୟାଂ ଭୀମ କରଇ ଉତକଟ
ଯେଉଁ ଭୁଜେ ମାଇଲ ମୁଂ ଗାନ୍ଧାରୀ ଶତେପୁଟ ।
ଧୃଶାସନ ଭୁଜ ଉପା ଲି ଯେଉଁ ବାହେ
ଦୁଯୋଧନ ଜାନୁଭଗ୍ନ କଲି ଗଦାଘାୟେ ।
ତାହାର ବଚନ ସଖୀ ହୃଦରେ ମୋର ଭେଦ
କହ ପ୍ରିୟେ କସ କରିବ ବୋଲି ଧୃତରାଷ୍ଟ୍ର କାନ୍ଦ ।

ଦେହ ଧରି ନୁଆରି ଆସ୍ଥାନୁ ଗଲା ଉଠି
ଗାନ୍ଧାରୀର ସଙ୍ଗତେ ଯେବୁକାନ୍ତେଶ ଗୋଷ୍ଠି । ୩୭ ।
କଦମ୍ବାନ୍ତ ଧୃତରାଷ୍ଟ୍ର ଶୁଣ ଗୋ ଗାନ୍ଧାରୀ
ଯେତେକ ପ୍ରତ୍ୟାଗ୍ୟାଂ ଭୀମସେନ ସଭାରେ ଆଦକରି । ୩୮ ।
ସଭାରେ ଭୀମସେନ ଆଜ ବୋଇଲା ଉତକଣ୍ଠ
ଯେଶ୍ରୁ ଭୁଜେଣ ମାଇଲ ଗାନ୍ଧାରୀ ଶତେଶ୍ରେଷ୍ଠ । ୩୯ ।
ଭୀମସେନ କୁଷ୍ଠ ବଚନ ହୃଦେ ମୋର ଭେଦ
ହେ ପ୍ରିୟେ ଯେବେ କସ କରିବାକ କହ ମୋତେ ବୁଦ୍ଧି । ୪୦ ।
ପ୍ରାଣ ଗୁଡିବାକୁ ମୁଂ ଖାଇତେ ଲୋଡଇ ବିଷ
ଆହ୍ମଙ୍କୁଂ ଯେ କଥା କହିଲେ ମୁନିବ୍ୟାସ । ୪୧ ।
ପୁତ୍ରକ ମାଇଲା ଯେ ଯେଣ୍ଣଲକ ମହୀ
ନିଲଜ ଆମ୍ଭ ଧେନି ତାହାଂକ ମୁଖ ଗୃହ୍ନିଂ । ୪୨ ।
ଶତ୍ରୁକୁ ନୁଆରି କରି ରହିଲୁ ଯେ ଦମ୍ଭେ
ପଶୁବଧ ନ ଜାଣି ହେଉଲୁ ଆହାର ଲୋଭେ । ୪୩ ।
ଯେବେ ଗୃହ ଯିବା ନାଥ ବାନପ୍ରଶସ୍ତେ
ନାନା ତୀର୍ଥ କରିବା ଆମ୍ଭ ଥାଇ ଯେତେକାଳ ପରଯନ୍ତେ । ୪୪
ଶତ୍ରୁ ଅନ୍ନ ଖାଇ ଯାହା ଧରିଥାଇ ପ୍ରାଣ
ଯେହାଠାରୁ ବଳ ଆଉ ଅଛି କ କଷଣ । ୪୫ ।
ଯେବେ ଗୃହ ଦୁହେଂ ଯାକ ବନସ୍ଥକୁ ଯିବା
ତୀର୍ଥ ଦେଖିକରି ନିଜ ଶରୀର ଦାହିବା । ୪୬ ।
ବୋଲଇ ଧୃତରାଷ୍ଟ୍ର ଯୁଧିଷ୍ଠିରଂକ ମୁହିଂ ବଶ
କ ବୋଲି ବୋଲିବ ମୁଂ ଯିବଇଂ ବନବାସ । ୪୭ ।
ବିନୟଭାବେ ଶତ ରଞ୍ଜିଲକ ମୋତେ
କହିତ ନୁଆରଇ ସେ ଯିବଇଂ କେମନ୍ତେ । ୪୮ ।
ତେଣୁ ଯୁଧିଷ୍ଠିରଂକ ମୋହୋର ବହୁତ ଚିନ୍ତା
ଶତେ ପୁତ୍ରହୁଂ ମୋତେ ସେ ବଡାଇ ଭଗତ । ୪୯ ।

---

୪୦।୨ ହେ ଶତ୍ରୁ ଯେବେ କରିବା କସ ବୁଦ୍ଧି । (ଚ,ଝ)
୪୪।୨ ନାନା ତୀର୍ଥ କରି ବହିବା ଆମ୍ଭାହୁଂ ଥାଇ ଯେତେ । (ଘ,ଝ, ଣଭ)

ବୋଲଇ ଗାନ୍ଧାରୀ ଯୁଧିଷ୍ଠିରଙ୍କ ଉଦ୍ଦେଶ ଯେବେ ଯେତେ
ଆନ ଉପାୟେକ କର ହୋ କୁରୁନାଥେ । ୫୦ ।
ପୁତ୍ର ବନ୍ଧୁମାନେ ମୋର ମଲେ ସେ ସମସ୍ତେ
ଗୟାରେ ଶ୍ରାଦ୍ଧକଲେ ସେ ହୋଇବେ ମୁକତେ । ୫୧ ।
ଶ୍ରାଦ୍ଧ କରିବା ଧନ ମାଗ ହୋ କୁନ୍ତୀସୁତ
ଯେହ୍ନ ପ୍ରକାରେ ଅମ୍ଭେ ଯିବାକ ସନମତ । ୫୨ ।
ଭାରିଙ୍କା ବଚନ ଶୁଣିଣ ମହୀପତି
ବିଦୁର ମହାତମାକୁ ସେ ହକାରିଲେ ଉତି । ୫୩ ।
ଯାଅସି ମହାତମା ହୋ ଯୁଧିଷ୍ଠିରଙ୍କ ବୋଲ
ବନ୍ଧୁ ମଇତ୍ର ରଣେ ପଡିଲେ ସକଳ । ୫୪ ।
ବାହ୍ଲିକ ଭୂରିଶ୍ରବା ଯେ ଅଟନ୍ତି ଆମ୍ଭ ଅଜା
ଭୀଷ୍ମେ ଜେ୍ୟଷ୍ଠପିତା ଶାନ୍ତନୁର ଅନୁଜା । ୫୫ ।
ହିଡମ୍ବୀ ତନୟ ଅଭିମନ୍ୟୁ ଦ୍ରୋପଦୀର ପଞ୍ଚ ପୋଏ
ବିଶେଷେ ମୋହୋର ପୁତ୍ର ଦୁର୍ଯୋଧନ ଭାଇ ଶଏ । ୫୬ ।
ଯେହାକଇଂ ଶ୍ରାଦ୍ଧ ଦେବାକୁ ମୋହୋର ଇଚ୍ଛା
ଧନେଣ କାର୍ଯ୍ୟ ଯେ ହୋଇବାକ ମନବାଞ୍ଛା । ୫୭ ।
କୋଇନ୍ତା ଦେବୀଙ୍କର ପଞ୍ଚପୁତ୍ରନ୍ତ ବସାଇ
ଶ୍ରାଦ୍ଧକଇଂ ବିଦୁର ଧନ କିଛୁ ମାଗ ହୋ ଯାଇଂ । ୫୮ ।
ଶ୍ରାଦ୍ଧର ଉତ୍ତରେ ଯିବଇଂ ପ୍ରୟାଗ ତୀର୍ଥେ
ନଯିବା ଯାଇଂ କହିବ ଯୁଧିଷ୍ଠିରଙ୍କର ଅଗ୍ରତେ । ୫୯ ।
ଯେ କଥା ମିଳଇ ବୋଲ, ବିଦୁର କହଇ ବ୍ୟବସ୍ଥା
ଯେଥେଂ ରହିବା ଆମ୍ଭର ନୁହଁଇ ସର୍ବଥା । ୬୦ ।
ମୋହୋର ବଚନ କଲ କୃତଯୋଗ
କୃଷି ଉପୁଜାଇ କର ନୁଆରଇ ଫଳଭୋଗ । ୬୧ ।

---

୫୦ । ଗାନ୍ଧାରୀ ବୋଲେ ମୁଁ ଯୁଧିଷ୍ଠିର କରେ ଯେବେ ସ୍ନେହ
ଅନ୍ୟ ଉପାୟରେ ତାଙ୍କୁ ଭଣ୍ଡାଇଣ କହ । (ଖ,ଠ,ନ)
୫୧।୧ ଶ୍ରାଦ୍ଧର ଅନ୍ତରେ ଦେବଇଂ ଦାନ, ପଣ୍ଡେ । (ଠ,ଝ)
୬୦।୨ ଯେଥେ ରହିବା ଆମ୍ଭର ନୁହଁଇ ସର୍ବଥା । (ଠ,ଝ)

ଯେ ରାଜନ ଧୃତରାଷ୍ଟ୍ରଙ୍କ ବଚନେ ସୁମନ୍ତ
ଯାଇଣ ଭେଟିଲ ସେ ଯୁଧିଷ୍ଠିରଙ୍କ କତ । ୬୨ ।
ପାଣ୍ଡବେ ବିଦୁରଙ୍କୁ ପ୍ରଣମିତ କଲେ
କୋଳେ ଧରି ବିଦୁର ଯୁଧିଷ୍ଠିରଙ୍କ ମୁଖେ ଚୁମ୍ବ ଦେଲେ । ୬୩ ।
ବିଦୁର ବୋଇଲେ ତୁମ୍ଭେ ଶୁଣ ପଞ୍ଚ ଭ୍ରାତ
ଧୃତରାଷ୍ଟ୍ର ଆଜ୍ଞାଂ ତୁମ୍ଭେ ଶୁଣିବା ଉଚିତ । ୬୪ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶକୁନି ଶଲ୍ୟ ସମାପତ ହୋଇଲେ
ଭୂରିଶ୍ରବା ବାହ୍ଲିକ ସୋମଦତ୍ତ ନାଶଗଲେ । ୬୫ ।
ଗାନ୍ଧାରୀ ଶତେ ପୁତ୍ର ସହିତେ ତୁମ୍ଭର ପୁତ୍ରମାନେ
ଯେତେକ ପଡିଲେ ଯେ ରଣଯଜ୍ଞଂ ଥାନେ । ୬୬ ।
ସେମାନଙ୍କର ନିମନ୍ତେ କରି ଅମ୍ବିକାର ସୁତ
ଶ୍ରାଦ୍ଧ କର୍ମେଣ ସେ ଦିବେ ପଞ୍ଚ ତୀର୍ଥ । ୬୭ ।
ସେ କାରଣେ ଧନ କିଛି ମାଗେ କୁରୁପତି
ନ ଦେଲେ ତୁମ୍ଭର କି ଅଛଇ ସଦଗତି । ୬୮ ।
କାର୍ତ୍ତିକ ମାସ ଶୁକ୍ଳପକ୍ଷ ଗୁରୁବାର
କୃତ୍ତିକା ଅନ୍ତେ ରୋହିଣୀ ଭୋଗ ଦଣ୍ଡ ତେର । ୬୯ ।
ବାଳବ ନାମେ କରଣ ଶିବ ନାମେ ଯୋଗ
ତକ୍ଷଣ ଦିନ ଯେ ତୁଳା ସଂକ୍ରାନ୍ତିକ ଭୋଗ । ୭୦ ।
ବେଳ ବୃଦ୍ଧଦଣ୍ଡ ଯାଏ ବୃହସ୍ପତି ବେଳା
ବାନପ୍ରସ୍ଥକୁ ଗମିଲ ଅମ୍ବିକାର ବଳା । ୭୧ ।
ତୁ ବାରୁ ଧନବନ୍ତ ଅଟୁ ଧର୍ମ ଶିଷି
ପିତୃଲୋକ କାରଣେ ତୁ ଧନ କିଛୁ ଦେସି । ୭୨ ।
ଧୃତରାଷ୍ଟ୍ର ରାଜା ମୋତେ ପେଷିଲେ ତୁମ୍ଭ ପାଶ
ବୋଇଲେ ଯୁଧିଷ୍ଠିରଙ୍କ କହି କିଛୁ ଧନ ମାଗି ଦେନିଆସ । ୭୩ ।
ଏ ଶୁଣିକରି ମୁଦ୍ଧିଂ ଯେ ଟଇଲଇଂ ଯେଥେ
ତୁମ୍ଭର ବଚନକୁ ଯେହ୍ଵା ଯୋଗାଇ କେମନ୍ତେ । ୭୪ ।
ଯୁଧିଷ୍ଠିର ବୋଇଲେ ଯେବେ କରିବେ ନାନା ତୀର୍ଥ
ସେ ଅମ୍ଭର ପିତା ଆମ୍ଭେ ତାହାଙ୍କର ପୁତ୍ର । ୭୫ ।

ମ୍ଲେଚ୍ଛ ପଞ୍ଚ କଟକ ନାଇଁ ସେ ଅତ୍ୟନ୍ତ କାତରଣୀ
ଯେତେ ଧନ ଭଣ୍ଡାରେ ଅଛଇ ସେ ତାହାଙ୍କର ସବୁ ପୁଞ୍ଜି ।୭୬।
ଶ୍ରାଦ୍ଧ ଯେବେ କରିବେ ମୃତ୍ୟୁ ଲୋକମାନଙ୍କୁ
ନାଅନୁ ଧନ ଭଣ୍ଡାର ବନ୍ଧ ସମର୍ପିଲି ତାଙ୍କୁ । ୭୭ ।
ଯୁଧିଷ୍ଠିରଙ୍କ ବଚନ ଶୁଣି ବୀର ଭୀମସେନ
କୋପଭର ହୋଇଣ ସେ ବୋଲଇ ବଚନ । ୭୮ ।
ଭୀମସେନ ବୋଇଲା ପ୍ରେ କେବଣ ବେଭାର
ଶତ୍ରୁକୁ ଧନ ଦେବାର ନ ମିଳଇ ବିସ୍ତର । ୭୯ ।
ଜୀବନ୍ତେ ବନ୍ଧୁ ସୋଦର ବୋଲି ଯେ ନ ବୋଇଲେ ଆମ୍ଭଙ୍କୁ
ମରି କାଙ୍କେ ସହୋଦର ହୋଇଲେ ତୁମ୍ଭଙ୍କୁ । ୮୦ ।
କେବଣହିଁ କୃତ ସେ ନ କଲେ ପଶାଖେଳେ
ରାଜ୍ୟଭାର ଧନ ଭଣ୍ଡାର ସେ ନେଇଗଲେ ସଂପୋତେ । ୮୧ ।
ପାଞ୍ଚ ଭାଇନ୍ତ ବସାଇଲେ ଭୃତ୍ୟପଣେ ସଭାତଳେ
କାହିଁ ତୁମ୍ଭ ତାହାର ପ୍ରୀତି ଥିଲାଟି ସେକାଳେ । ୮୨ ।
ଯେମନ୍ତେ କଉରବେ ହୋଅନ୍ତୁ ଅମୋକ୍ଷ
ତେବେ ସିନା ଯାଶୋର ସିକନା ଆମ୍ଭର ଦୁଃଖ । ୮୩ ।
ଯେମନ୍ତେ ଦୁର୍ଯୋଧନ ପଡ଼ଇ ନର୍କଗତ
ତାହା ଚିନ୍ତିବାର ସେ ମିଳଇ ମୋର ମତ । ୮୪ ।

ମଲେଣ କେହୁ ଯେ କାହାର ନୁହନ୍ତି
କିଂପାଇଂ ଧନ ଭଣ୍ଡାର କରିବାକ କ୍ଷତ । ୮୫ ।
ଭୀଷ୍ମ ଦ୍ରୋଣେ ଯେ ଆମ୍ଭର ଅତ୍ୟନ୍ତ କୁଳଶ୍ରେଷ୍ଠ
କିମ୍ପାଇଂ ସାଂଗ୍ରାମେ ପଡ଼ି ହୋଇଲେ ପ୍ରାଣେ ହତ । ୮୬ ।
ଆମ୍ଭନ୍ତ ମାରିବେ ବୋଲି କଲେକ ସମର
ମନ୍ଦ ଉତ୍ତରେ କିସ ଉପ୍ରୋଧ ଆମ୍ଭର । ୮୭ ।
ଯୁଗତେ ଶ୍ରାଦ୍ଧ ଯେବେ ହୋଇବ ମୃତ୍ୟୁଲୋକଙ୍କୁ
ଆମ୍ଭେ କିଂକେ ଶ୍ରାଦ୍ଧ ନ ଦେବାଟି ତାହାଙ୍କୁ । ୮୮

ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆବର ସୋମଦତ୍ତ
ବିରାଟ ଦ୍ରୋପଦ ଆମ୍ଭର ଯେତେ ପୁତ୍ର । ୮୯ ।

କୋନ୍ତେୟଙ୍କ ଶ୍ରେଷ୍ଠ ଉତ୍ତର ସହିତେ
ଆବର ଅମନ୍ତ ଯେତେକ ଅଶ୍ରିତେ । ୯୦ ।
ସେହିମାନଙ୍କ ଶ୍ରାଦ୍ଧ ନ ମିଳଇ ଅମ୍ଭର ପୁଣ ଦେବା
ଦ୍ରୋଣଙ୍କର ଶ୍ରାଦ୍ଧ ଅଶ୍ୱତ୍ଥମା ହାଥେ କରାଇବା । ୯୧ ।
କର୍ଣ୍ଣଙ୍କଇଂ ଶ୍ରାଦ୍ଧ ଦେଉ ତାହାର ଯେ ମାତା
ଧୃତରାଷ୍ଟ୍ରେ କରନ୍ତୁ ସେ ନିଜ ପୁତ୍ର ଶନ୍ତା । ୯୨ ।
ଆମ୍ଭର ଧନେଣ ସେ କରୁ ଯେ ସୁଭାଗୀ
ଆମ୍ଭ ହେତୁ ଯୁଝିଲେ ତାହାଙ୍କଇଂ ଶ୍ରାଦ୍ଧ ଲାଗି । ୯୩ ।
ଯୁଧିଷ୍ଠିର ବୋଇଲେ ଭୀମ ନ ବୋଲନି ତୁହେଂ ଡ ଯେହ୍ନା
ପଣ୍ଡୁର ଜ୍ୟେଷ୍ଠଭ୍ରାଥ ସେ ଅଟନ୍ତି କୁରୁନାହା । ୯୪ ।
ତାହାଂକର ଥାଆନ୍ତେ ଯେ ଆମ୍ଭର କରିବା ନୁହଇ ଧର୍ମ
କୁଳର ଶ୍ରେଷ୍ଠ ସେ କରନ୍ତୁ ନିଜକର୍ମ । ୯୫ ।
ଭୀ ଯାହା ବୋଇଲୁ ଯେଷ୍ଟେ ଧୃତରାଷ୍ଟ୍ରର ନାହିଂ ଦୋଷ
ଦଇବର କୁଚେଷ୍ଟେ ସେ ହୋଇଲୁ ଭବିଷ । ୯୬ ।
ବାବୁ ଯେତେକ ଯୋଗନେ ଯେ ଆମିଷ ଦେଖଇ ପକ୍ଷୀ
ଫାଶି ବନ୍ଧନ ଅଛୁ ଯେ ତାହାକଇଂ ନ ଦେଖି । ୯୭ ।
ପ୍ରେତ କର୍ମଣ ନ କଲେ ପୁତ୍ରନ୍ତ ହୋଅଇ ଲଜ୍ଜା
ବାହୁଡ଼ ଦୁର୍ଯୋଧନ କ ଯେଷ୍ଟେ ହୋଇବାକ ରାଜା । ୯୮ ।
କାଠ ପାଷାଣ ଜାଣି ଭୀମ ତୋହୋର ଯେ କାହ୍ନା
ମନୁଷ୍ୟ ଶରୀର ବହି ଭୁ ଭୃପେଷ୍ଟୁ କମ୍ପେ ଦୟା । ୯୯ ।
ପିତୃ ଅଭଗତେ ବନ୍ଧୁଜନ ଯେ ନ ପୋଷଇ
ଧର୍ମ କୀର୍ତ୍ତି ତାହାର ସକଳ ନାଶଯାଇଂ । ୧୦୦ ।
ସୋଦର ଜନନ୍ତ ଯେ ଭଲେଣ ପାଳଇ
ସେ ସେ ମହାତ୍ମା ହୋ ଅଟଇ ଗୁଣଗ୍ରାହୀ । ୧୦୧ ।

---

୯୫। ଅଗ୍ୟାନ ପ୍ରାଣ୍ୟେକ ତ କହୁ ବୀର ଭୀମ
ତହାନ୍ତ ନିର୍ଗଣ କଲେରେ ନ ସହିବ ଅମନ୍ତ ଧର୍ମ । (କ)
୧୦୧। ଦୋଷ ଉପେକ୍ଷି ଯେବେ ଗୁଣଗ୍ରାହୀ
ତାହା ସେ ମହାତ୍ମା ଧଇର୍ଯ୍ୟ ବୋଲି କହି । (ଝ,ଟ)

ଦ୍ରୋଣଙ୍କର କଳାର କେବଣ ଗୁଣ ନାହିଁ
ବିଦ୍ୟାପାଠରେ ଯେ ହୋଇଲୁ ତୁ କାହିଁ । ୧୦୨ ।
ଯେବଣ ବ୍ରାହ୍ମଣ ଶହସ୍ରେ ଝଇଲେ କ୍ୟ ପାରଇ ଦହି
ପୁତ୍ରଙ୍କଇଁ ଟେଛନ୍ତର ଅର୍ଜୁନେ ଶିଖାଇ । ୧୦୩ ।
ଆଚମ୍ବିତ ବିଦ୍ୟା ଯେ ଅଦୃଷ୍ଟି ଅଶ୍ରୁତ
ଦୃଷ୍ଟିଭେଦୀ ଶୂନ୍ୟଭେଦୀ ଶବଦ ଭେଦଗତ । ୧୦୪ ।

ପିତା ଅଭାବ ବୋଲି ନ ଜାଣିଲୁ ବାଳକାଳେ
ପ୍ରାଣହୁଁ ଅଧିକ ବଢ଼ିଲୁ ଭୀଷ୍ମଙ୍କର କୋଳେ । ୧୦୫ ।

ଆମ୍ଭର ଅର୍ଥେ ଭୀଷ୍ମେ କଲେକ ଶରଶେଯ୍ୟା
ମୃତ୍ୟୁଭେଦ କହି ସେ କଲେକ ପ୍ରାଣତେଜ୍ୟା । ୧୦୬ ।
ଗୁରୁଲୁଣ୍ଠୀର ପ୍ରାୟେ ତୁ ହୋଇଲୁ ରେ ଭୀମସେନ
ଗୁଣ ପକାଇଣ ସେ ଅବଗୁଣ ଘେନ । ୧୦୭ ।

ଅନେକ ବନ୍ଧୁଜନ ମଲେ ଆମ୍ଭ କାର୍ଯ୍ୟଅର୍ଥେ
ସବୁଙ୍କୁହିଁ ଶ୍ରାଦ୍ଧର ଆମ୍ଭ ଲାଗଇ ଯୁଗତେ । ୧୦୮ ।
ଅଳପ ଅଳପ କରି ଧନ ଆମ୍ଭେ ଦେବା
ଇହଲୋକ ଜିଣିମା ପରଲୋକନ୍ତ ତାରିବା । ୧୦୯ ।
ଧୃତରାଷ୍ଟ୍ର ଶତେପୁତ୍ର ସମରେ ତୁ ମାରି
ତେବେ ସେ ଶାନ୍ତିଚିତ୍ତ ନୋହିଲା ତୋହୋର ।୧୧୦।
ଭୀମସେନ ବୋଇଲା ଯେମନ୍ତେ କାମ କହ
ମୋହୋର ସନମତ ନ କଲେ ତାକୁ ଧନ ଦେବ କେହୁ ।୧୧୧।
ଅର୍ଜୁନ ବୋଇଲା ଦେବ ଶୁଣିମା ଯୁଧିଷ୍ଠି
ନ ଦେଉ ଭୀମା ଧନ ନ କରୁ ଅରିଷ୍ଟି ।୧୧୨।
ଭଣ୍ଡାର ଧନ ଯେବେ ଦେବାର ହୋଇଲା ବାଧୀ
ଆମ୍ଭର ପ୍ରିୟ ଅଙ୍ଗଧନ ଅଛି ଦେବାର ମିଳଇ ପ୍ରେ ବିଧି ।୧୧୩।
ଜାଅପି ବିଦୁର ପିତାର ଯେତେହେନେକ ଧନ ଇଚ୍ଛା
ଯେତେ ପିତୃକାର୍ଯ୍ୟ ହେବ ମନୋବାଞ୍ଛା । ୧୧୪ ।

---

୧୦୯।୧ ଅନ୍ୟ ନ ଦିଗୃହ ଧନ ଆମ୍ଭେ ଦେବା । (ଢ଼)

ସୁବର୍ଣ୍ଣର ତଣ୍ଡୁଳ ଅଜା ମେଷ ମୃଗ
ବସ୍ତ୍ର ଅଳଂକାର ଦାନେ ନାନା ରତ୍ନେଯୋଗ ।୧୧୫।
ଧୃତରାଷ୍ଟ୍ରଙ୍କଇଂ ବିଦୁର କହି ଦ'ନେ ସ୍ନେହା ନେଇ
ମୂଳ୍ହିଂ ଯାହା ବୋଇଲ କହିବ ସବୁ ପାଇଂ ।୧୧୬।

କାର୍ତ୍ତିକ ପୂର୍ଣ୍ଣମୀ ଆଜକୁ ଆବର ଦିନାଦଶ
ଦଶଗୁଣେ ଶ୍ରାଦ୍ଧକର ପିତୃଲୋକେ ତୋଷ ।୧୧୭।
ଯୁଧିଷ୍ଠି ଦେବେ ବୋଇଲେ ବିଦୁରର ଆଗେ
ଭୀମର ଦୁର୍ବୁଦ୍ଧି ନ କହୁବଟି ପିତା ଆଗେ ।୧୧୮।

ଶୁଣିଣ ବ୍ୟଥା ଯେ ପାଇବ ଧୃତରାଷ୍ଟ୍ର
ଦ୍ୱିଗୁଣ ପିତାର ମୋର ହୋଇବ ପୁତ୍ରକଷ୍ଟ ।୧୧୯।
ଧନ ଘେନି ବିଦୁର ତକ୍ଷଣେ ଚଳିଗଲା
ଧୃତରାଷ୍ଟ୍ର ଅଗ୍ରତେ ବେଗେଣ ମିଳିଲା ।୧୨୦।
ତୁମ୍ଭର ଆଜ୍ଞ୍ୟାଂଏ୍ୱ ଆଣିଲିଇଂ ଧନ
ଦେବାକଇଂ ସନମତ ନ ବୋଲଇ ଭୀମସେନ ।୧୨୧।
ବହୁତ ନିଂଶ୍ୱାସ ସେ କହିଲକା ବତି
ପୂର୍ବର ହିଂସା ଯେ ନ ଗଲା ତାହାର ଚିତ୍ତ ।୧୨୨।

ଯୁଧିଷ୍ଠି ଅର୍ଜୁନର ଯେତେକ ଅଙ୍ଗଧନ
ତହା ଆଣିଦିଲେ ତୁ ଏ୍ୱବେ ବେଗେ ଘେନ ।୧୨୩।
ପୁଣି ପୁଣି ଯୁଧିଷ୍ଠି ଯେ ବୋଇଲେ ଗୋଡାଇ
ଭୀମର ଦୁର୍ବୁଦ୍ଧିପଣ ତୁ ନ କହିବୁ ପିତାକଇଂ ।୧୨୪।
ଶୁଣିଲେ ବ୍ୟଥା ଯେ ପାଇବ ଜ୍ୟେଷ୍ଠପିତା
ମୂଳ୍ହିଂ ସର୍ବଦା ତାହାଙ୍କଇଂ ବନ୍ଦଏ୍ୱ ଭଗତା ।୧୨୫।

ଏ୍ୱସନେକ ବୋଲ ବୋଇଲେ ଯୁଧିଷ୍ଠି ରାଜନ
ଭୀମସେନ ବୋଲକଇଂ ନ କର ଖେଦମନ ।୧୨୬।
ପୃଥୀରେ ଯେତେକ କ୍ଷତ୍ରୀ ହୋଇଲେକ ଶ୍ରେଷ୍ଠ
ସକଳ କ୍ଷେତ୍ରୀଂକରେ ଭୀମସେନ ଜ୍ୟେଷ୍ଠ ।୧୨୭।

କ୍ଷତ୍ରୀବୃତ୍ତି ଦୂଷଣ ଯେ ଅଛଇ ତାର ତହିଁ
ଭୀମସେନେ ଯତ୍ନପଣ ପାଇବୁ କି କାହିଁ ।୧୨୮।
ବିଦୁର ବୋଇଲେ ନଦୀ ବଢିଲେ ଥିରହୋଇ ନ ରହଇ
ବ୍ରାହ୍ମଣର ଆତ୍ମା ଯେ କ୍ଷଣକେ କୋପହୋଇ ।୧୨୯।
କ୍ଷେତ୍ରୀଂକର ତେଜ ଯେ ଶସ୍ତ୍ରରେ ପ୍ରାଣ ଥାନ୍ତେ
ଶସ୍ତ୍ରୁ କୋପ ଯେ ନ ଯାଇଂ କଦାଚିତେ ।୧୩୦।
ଅଗ୍ନି ଯେସନେକେ ଲଭିଲେ ତା ତେଜ ସରଇ
ତେଜ ଥାଆନ୍ତେ ସେ ସକଳ ଦ୍ରବ୍ୟଂନ୍ତ ଦହଇ ।୧୩୧।
କ୍ଷେତ୍ରୀବୃତ୍ତି ଯେବେ ବୋଲିବ ସଂସାରେ
ଭୀମସେନଙ୍କ ଆନ ନାହିଁଂନା ବିଶ୍ବରେ ।୧୩୨।
ବିଦୁରେ ବୋଇଲେ ହୋ ଭୀମସେନର କସ ଦୋଷ
ଆପଣାର ମନ୍ଦପଣ ତାହାକୁ ବୋଲିବାଟି କସ ।୧୩୩।
କେବଣ ଛଳ ତୁମେ ନ କଲ ଭୀମାକୁ
ବିଷଲଡୁ ଖୁଆଇ ବାନ୍ଧି ମେଲିଲ ଜଳକୁ ।୧୩୪।
ନାଗୁଣୀ ଖାଉ ବୋଲି ଘିବିଲ ତୁମ୍ଭ ହୃଦେ
ବିଦୁର ଘରେ ନ କଲ କେବଣ ପଦ ମାଦେ ।୧୩୫।
କପଟ ପାଶକରି ହରିଲ ସମ୍ପଧି
ପାଞ୍ଚାଳୀ କେଶ ଧରି ବିବସନ କଲ ମନ୍ଦବୁଦ୍ଧି ।୧୩୬।
କୁଟେଣେ ବେଢି ଯେ ମାଇଲ କୁମାର ଅଭିମନ୍ୟୁ
କିଂପାଇଂ ପାସୋରିବେ ସେ ତୁମର ଗୁଣ ମନୁ ।୧୩୭।
ବିଦୁରେ ବୋଲନ୍ତି ଯାହା ଅର୍ଜି ତାହା ସିନା ଭୁଞ୍ଜି
ମୁଖ ନ ଦିଶଇ ଦର୍ପଣ କିଂପେ ଘଞ୍ଜି ।୧୩୮।
ବିଦୁର ମୁଖରୁ ଯେସନେକ ବାକ୍ୟ ଶୁଣି
ଆପଣାର ଲଲାଟେ ଚାଡଇ ବେନିପାଣି ।୧୩୯।
ଶ୍ରାଦ୍ଧ ସଂକଳ୍ପ ଯେ କଲେ ଏକାଦଶ ଦିନଇ
ପ୍ରୋହିତ ମୁଖେ ଯଥାବାକ୍ୟ ବିଧି ଅଭ୍ୟାସଇ ।୧୪୦।

---

୧୨୮। କ୍ଷତ୍ରୀବୃତ୍ତି ଦୂଷଣ ଯେ ଅଛଇ ଯାର ତହିଁ
ତାହାଙ୍କଇଂ ବିସମାନ ବିଶ୍ବରକରୁ କୁରୁସାଇଂ । (ଖ, ଚ,)
୧୩୮। ଆପଣାର ମୁଖ ମଳିଣ ଦର୍ପଣେ କିମ୍ପେ ଗଞ୍ଜି । (କ)

ଯୁଝେଷ୍ଟି ସବୁ ଆସ୍ଥାନେ ବଜସ୍ୱେ କ୍ଲୁସାଇଂ
ମନ୍ତ୍ରୀ ଅମନାତ୍ୟ ସର୍ବ ବ୍ରାହ୍ମଣ ବସାଇ ।୧୪୧।
ବୋଲନ୍ତି ଧୃତରାଷ୍ଟ୍ର ତୁମ୍ଭେ ଶୁଣିମା ସମସ୍ତେ
ମନ ଉଦବେଗ ମୁଂ ଯିବଇଂ ବାନପ୍ରସ୍ଥେ ।୧୪୨।
ଯେ ଯାହାର ସଦଭାବେ କର ସେବା
ସ୍ୱାମୀର ବଇଗୁଣ କେହ୍ନ ମନେ ନ ଧରିବା ।୧୪୩।
ଶୀତ ବାତ ଖର ବୃଷ୍ଟି ଯେ ସହଇ
ତାହାକଇଂ ରଜା ସଦସ୍ନ ରତ୍ତ ହୋଇ ।୧୪୪।
ଭୋଗର ଭଜନ ସେ ହୋଅନ୍ତି ରଜା
ମନ୍ତ୍ରୀ ସେ ସକଳ ପାଳଇ ଜନପ୍ରଜା ।୧୪୫।
ରାଜକାର୍ଯ୍ୟ ଯତ୍ନଂ ହୋଇବାକ ନଷ୍ଟ
ତାହାକଇଂ ଜାଣିମା ସେ ମନ୍ତ୍ରୀ ବୁଦ୍ଧିଭ୍ରଷ୍ଟ ।୧୪୬।
ପ୍ରଶୁଧାର ପ୍ରାପ୍ୟେକ ରାଜାର ଯେ ଆଗ୍ୟାଂ
ଯାହା ସେ ବୋଲିବେ ତାହା ନ କରିବ ଅବଗ୍ୟାଂ ।୧୪୭।
ସ୍ତ୍ରିୟଂକ ଭ୍ରଥା ଯେ ପୁତ୍ରନ୍ତ ମାତାପିତା
ଭୃତ୍ୟକଇଂ ସ୍ୱାମୀ ସ୍ୱେ ତିନହେଂ ସେ ଦେବତା ।୧୪୮।
ଇନ୍ଦ୍ର ଯେଉଂପରି ପାଳେ କରିଣ ସୁବୃଷ୍ଟି
ରାଜା ସେହ୍ନପରି ଯେ ପାଳଇ ନିଜ ସୃଷ୍ଟି ।୧୪୯।
ଅଗ୍ୟାନେ ନୃପତି ଯେବେ ଦଣ୍ଡହିଂ ବହିବ
ମନେ ନ ରଖି ତାହା ଉପେକ୍ଷା କରିବ ।୧୫୦।
ସତ୍ୟ ଆଚରଣ ଯେ ଟେଇଜାନ୍ତି ପାଳି
ମୃଗସ୍ନା ବନୋଦେ ରାଜା ନିତ୍ୟାପ୍ରତି ଯିବ ।୧୫୧।
ଶତ୍ରୁ ଉପଟରେ କଟକାଇ କରିବ ନିଜବୃତ୍ତି
ଧାରିତ୍ରୀର୍ଥୁଂ ଆନ ନାହ୍ନଂନା ସଦଗତି ।୧୫୨।

---

୧୪୬।୨ ତାହାକଇଂ ରାଜା ସୁକୃତହିଂ କହି । (ଘ,ଢ଼,ଝ)

୧୫୦। ଅଗ୍ୟାନେ ନୃପତି ଯେବେ ଦିଅଇଟି ଶିକ୍ଷା
ପ୍ରଜାରେ ସେ ତାହା କରିବେ ଉପେକ୍ଷା । (ଠ,ଝ)

ନୀତ ଅଭ୍ୟାସ କରିବ ବ୍ରହ୍ମଜ୍ଞାନ ପୋଥି । ୧୫୩ ।
ଯେସନେକେ ଇନ୍ଦ୍ର ପାଳଇ ନବସୃଷ୍ଟି
ଜନ ଜନ୍ତୁକଇଂ କରଇ ସୁଖାର୍ଥୀ । ୧୫୪ ।
ଯେବେ ସେ ରାଜ୍ୟର ରାଜାପ୍ରଜା ପାଳିତେ ଇଚ୍ଛା
ସେହା ଜାଣି ଉଚିତ କରିବାନା ପଣ୍ଡିତ ଜନେ ପୃଛା । ୧୫୫ ।
ତୁହେ। ସୁଶ୍ରେଷ୍ଠି ପାଳିବୁନା ରାଜଧର୍ମେ
ଯେଣେଠି ଭୃତ୍ୟେ ସେବନ୍ତି ସଦାକର୍ମେ । ୧୫୬ ।

ଧୃତରାଷ୍ଟ୍ର ବୋଇଲେ ବାବୁ ସବୁତ କୁଶଳ
ଆଉମାନଂକୁ ଯେକତ କର ପ୍ରଜା ପ୍ରତିପାଳ । ୧୫୭ ।
ରାଜପଦକୁ ବାବୁ ମୂଳ ଅଟଇଟି ପ୍ରଜା
ତାହାନ୍ତୁ ପାଳିଲେ ଧନ ସମ୍ପଦ ଚିର ଆଖ୍ୟ ହୋଇରାଜା ।୧୫୮
ପ୍ରଜାର ମୁଖେ ଯେବେ ଶୁଭଇ ସାଧୁଧ୍ୱନି
ସେ ରାଜା ସ୍ୱର୍ଗେ ବସଇ ନିଜ ଦେହ ଘେନି । ୧୫୯ ।
ପୁରୁରବା ଜାହ୍ନୁସଣ୍ଟ ପ୍ରଶୁରାମ ବଳୀବେଣୁ ମାନଧାତା
ପରଜାର ଯଶ ବୋଲନ୍ତେ କଲ୍ପେ କଲ୍ପେ ଜୀବନ୍ତା । ୧୬୦ ।
ବାବୁ ପ୍ରଜାହ୍ୱଂ ପାଳିଲେ ଭୋଗ୍ୟ କରଇ ରାଜ୍ୟ
ପ୍ରଜାଂକ କଲ୍ୟାଣେ ରାଜାର ହୋଅଇ ଅଇଶ୍ୱର୍ଯ୍ୟ । ୧୬୧ ।
ତଣ୍ଡୁଳ ଗୁଡ଼ାସ୍ୱେ ଢେନିକର ଦା ପିତୃଶ୍ରାଦ୍ଧ ପିଣ୍ଡଦାନ
ଦେବତା ବ୍ରାହ୍ମଣ ଅତିଥି ଅଗ୍ନି ପରଜାରେ ଅନ୍ନ । ୧୬୨ ।
କୃଷି କର୍ମଣ ଲାଗି ଯେ ପରଜାନ୍ତେ ବଡ଼ ଦୁଖୀ
ରାଜାର ପାଳନ୍ତେ ସେ ପ୍ରଜା ହୋନ୍ତି ସୁଖି । ୧୬୩ ।

---

୧୬୧।୨ "ପ୍ରଜାଂକ କଲ୍ୟାଣେ ରାଜାର ହୋଅଇ ଅଇଶ୍ୱର୍ଯ୍ୟ" ପରେ 'କ' ପୋଥିରେ ପାଠ :—

କାବୁ ଅନ୍ନବସ୍ତ୍ର ଛତ୍ର ତୁ ନନ୍ତ୍ୟେହେଂ ଦେବୁ ଦାନ
ଦେବତା ବ୍ରାହ୍ମଣେ ନିତ୍ୟ ତୁ ହୋଇଥିବୁ ମାନ୍ୟ ।
ନିଯୋଗୀ ଲୋକଂକୁ ତୁ ବିଶ୍ୱାସ ହୋଇଥିବୁ ।
ଦୁର୍ବୁଦ୍ଧି ଲୋକନ୍ତ ତୁ ବିଶ୍ୱାସ ନ ଯିବୁ ।

ଧୃତରାଷ୍ଟ୍ର ବୋଇଲେ ତୁ ସୁବୁଦ୍ଧି ପୁତ୍ରଗୋଟି
ମୂର୍ଦ୍ଧଂ କର ତୋତେ ଅବା ତଆରବ ଯୁଧିଷ୍ଠି ।୧୬୪।
ଶୁଣିଣ ହରଷ ସେ ଧର୍ମ ନୃପମଣି
ଭୀମସେନ କୋପକଲ ଧୃତରାଷ୍ଟ୍ର ବଚନ ଶୁଣି ।୧୬୫।
ଭୀମସେନ ବୋଇଲ ତାତଭୁକ୍ତ ସମସ୍ତ ବୁଦ୍ଧି ଜାଣୁ
ତୋହୋର ପୁତ୍ରଂକ ଆଗେ କିଂପେ ନ ବଖାଣୁ । ୧୬୬ ।
ପରକଇଂ ବନ୍ଦ୍ୟ ଆଦଣେହୋଇ ଭୋଗୀ
ଦାରୁଣ୍ୟ ପ୍ରମତ୍ତ ହୋଇ କର ବୋଲନ୍ତୁ ଯୋଗୀ ।୧୬୭।
ଯୁଧିଷ୍ଠି ଦେବେ ନ ସକଳରାଜବନ୍ଧରେ ଗଣନା
କେଉଂଣ ଠାବରେ ତୁ ଦେଖିଲୁସି ଊଣା ।୧୬୮।
ମନ୍ତ୍ରୀ ସହଦେବତ କହଇ ସମସ୍ତ
ଭୂତ ବର୍ତ୍ତମାନ ଭବିଷ ଗତ ସେ ଅଗତ ।୧୬୯।
ବୃହସ୍ପତି ସମାନେଣ ଯାହାର ମହିମାଂ
ଧରଣୀ ସମାନେ ଯାହାର ହାଦେ ଗୁଣକ୍ଷମା ।୧୭୦।
ଭୀମ ଅର୍ଜୁନ ସେ ଅନନ୍ତ ଯାହାର ହୁଇ
ତେଣୁ ସମାନ କାହାକଇଂ କରିବାକ ମହି । ୧୭୧।
ତୋହୋର ବନ ଗବନ ସେ ନାତବଦ
ରଜାଂକ ବଧି କସ ତଆରଣସିଧ ।୧୭୨।
ଏମନ୍ତ ଶୁଣି ଧୃତରାଷ୍ଟ୍ର ହୋଇଲକ ତୁନି
ହୃଦୟ ବ୍ୟାକୁଳ ସେ କ ଦହଇ ବହନି ।୧୭୩।
ଶୁଣ ହେ ରାଜନ ଧୃତରାଷ୍ଟ୍ର କଇଲଣ ସୁଶ୍ରେଷ୍ଠି
ତରଆକ୍ଷ୍ୟ ହୋଇଥାଅ ବୋଲ ସେ ଉଠି ।୧୭୪।
କରେ ରୁଦ୍ରାକ୍ଷ ମାଳା କାଖେ ମୃଗଚର୍ମ ଛନ୍ଦାଂ
କର୍ଣ୍ଣେ ତମ୍ବା କୁଣ୍ଡଳ ଅଙ୍ଗ ଭସ୍ମ ଲେପନ କରି ।୧୭୫।
ହାଥେ କମଣ୍ଡଳ କଷା ବସନ ପୀତାସେ ଶୋହଇ
ତପୋଧନ ବେଶ ହୋଇଣ ଜଗୁଜନ ମୋହଇ ।୧୭୬।
ଭୀମସେନ ବୋଳଇ ତାତ ବୃଦ୍ଧହଂସ ପ୍ରାୟେ
କଂଶବର୍ଗ ଭକ୍ଷିଣ ତପୋଧନ ବେଶ ହୋମ୍ୟେ ।୧୭୭।

ଧୃତରାଷ୍ଟ୍ର ଗାନ୍ଧାରୀ ତପୋଧନ ବେଶେ ଦେଖି
ଯୁଧିଷ୍ଠିରଙ୍କ କୋଇନ୍ତାସ୍ତେ ବଚନ ଉପେକ୍ଷି ।୧୭୮।
ବାବୁ କୋଇନ୍ତା ଗାନ୍ଧାରୀ ମାଦ୍ରୀ ଆମ୍ଭେ ତିନି
ମାଦ୍ରୀ ସ୍ୱାମୀ କାର୍ଯ୍ୟକଲା ସେ ପୁଣ୍ୟମାନୀ ।୧୭୯।
ଗାନ୍ଧାରୀ ସ୍ୱେଚ୍ଛେ ବାନପ୍ରସ୍ଥ ଯାଉଅଛି ତଥା ସେବ
ମୁହିଂ ସେଠି ଥାଇଂ ଆଜ୍ଞା କରି ଯେ କରିବ ।୧୮୦।
ବାଳ କାଳରୁଂ ଆମ୍ଭେ ଦୁହେଂ ଅଟୁ ପ୍ରାଣସଖୀ
ସେ ଯେବେ ବନେ ଦୁଃଖୀ ମୁହିଂ କିସ ସୁଖୀ ।୧୮୧।
ମୋତେ ନ ବାର ବାବୁ ମୁଂ ଯିବଇଂ ଅବଶ୍ୟ
ଗାନ୍ଧାରୀର ତୁଲେ ଯେ ମୋହୋର ବନବାସ ।୧୮୨।
ତୁମ୍ଭେ ମୋର ବିଚକ୍ଷଣ ସୁନ୍ଦର ସମସ୍ତେ ସାମରଥ
ତୁମ୍ଭଂକୁ ଛାଡ଼ିବାକୁ ମୁଂ କିସ କ୍ଷମାପନ୍ନ ।୧୮୩।

ତେଂହୋର ଶରୀରେ ଯେତେକାଳ ଜୀବ ଥାଏ
ସହଦେବ ଗୋଟିକ ମୋର କରିଥିବୁ ସଦୟେ ।୧୮୪।

ବ୍ୟାକୁଳ ପାଣ୍ଡବେ ଯେ କୋଇନ୍ତାଂକ ସଜ ଦେଖି
ପଞ୍ଚ ପାଣ୍ଡବଂକ ଅଶ୍ରୁ ଜଳ ବହଇ ଯେ ଆଖି ।୧୮୫।

ଆମ୍ଭନ୍ତ ଯେତେଣ ଯେ ବନରେ ବୁଲିଲୁ
କନ୍ଦମୂଳ ଫଳ ଖାଇ ଦୁଃଖେ ଦିନ ନେଲୁ ।୧୮୬।

ସେ କାଳେ ଗାନ୍ଧାରୀ କଲେ ଅନେକ ସୁଖଭୋଗ
ତୁମ୍ଭର ଦୁଃଖ ଦେଖିତ ସେ ନ କଲା ଶୋଗ ।୧୮୭।
କୋଇନ୍ତାସ୍ତେ ବୋଇଲେ ବାବୁ ନିର୍ଦ୍ଦୟା ହୋଇଲେ
ଶତେପୁତ୍ର ଉପୁଜାଇ ଅପୁତ୍ରିକା ହୋଇଲେ ।୧୮୮।
ବନସ୍ତେ ଯୁଗତି ଯେ ବୋଲନ୍ତି କୁନ୍ତୀସୁତ
ଆମ୍ଭନ୍ତ ଛାଡ଼ି କେଣେ ଯିବସି ଗୋ ମାତ ।୧୮୯।

---

୧୭୮।୧ ଯୁଧିଷ୍ଠିରଙ୍କ କହନ୍ତି କୋଇନ୍ତା ଶଶୀମୁଖୀ । (ଗ)
୧୮୪।୨ ନକୁଳ ସହଦେବଙ୍କୁ କରିଥିବୁ ସଦୟେ । (କ,ଠ)

ବୃଦ୍ଧି କାଳେ ମାଗୋ ଆମ୍ଭନ୍ତ ଯେ ଦେଖୁ
ଭୋଗକାଳେ କମ୍ଭେ ମାତା ଗୋ ଆମ୍ଭନ୍ତ ଉପେଖୁ ।୧୯୦।
ତୋହୋର ସେ ଗୁଣ ନ ସୁଝାଇଲୁ ଋଣ
ପୁତ୍ରରେ ଲେଖାଉ ଆମ୍ଭନ୍ତ କଲୁ ମନ୍ଦପଣ ।୧୯୧।
ଭିକ୍ଷା ଅନ୍ନେଣ ଆମ୍ଭନ୍ତ ପୋଷିଲୁସେ ମାତା ଯାହା
ସମ୍ପଦ ଧି କାଳେ ଗୋ ତ୍ୟାଗ କଲୁ ତାହା ।୧୯୨।
ବାଲକାଳେ ଆମ୍ଭର ତାତ ହୋଇଲେକ ଭ୍ରଷ୍ଟ
ତୋହୋର ପ୍ରସାଦେ ଗୋ ଆମ୍ଭେ ନ ପାଇଲୁ କଛୁ କଷ୍ଟ ।୧୯୩।
କେ ଆମ୍ଭନ୍ତ ନିରେପି କରବ ପୁନ ଚନ୍ତା
କାହାର ଆଗେ ଦୁଖ ଗୋ ପ୍ରକଶିବୁ ମାତା ।୧୯୪।
କାହୁଂ ତୋର ଆନ ମନ ନେଲୁ କାଡ଼ି
ଆମ୍ଭା କେସନେକେ ଧରବୁ ସହଦେବଂକୁ ଛାଡ଼ି ।୧୯୫।
କୋଇନ୍ତାଦେୟ୍ଯ ବୋଇଲେ ଶୁଣ ହୋ ଯୁଧିଷ୍ଠି ମୁଂ ତୋତେ
କହଇ ଯେ୍ଯକାନ୍ତେ
ଅନ୍ଧ ଅନ୍ଧୁଣୀ ଦୁହେଂ ରହିବେ କେମନ୍ତେ ।୧୯୬।
କଷ୍ଟ ପାଇଂଣ ତୋତେ ଦେଉଥିବେ ଶାପ୍ୟ
କେତେ ବଞ୍ଚାଇବୁ ତୁ ଗୁରୁଜନଂକର କୋପ ।୧୯୭।
ମୁ ଯେ୍ଯହାଂକର ଛୁଂଣ ବାବୁ ଥିଲେ
ପଥ କଟାଇଣ ମୁଂ ନେଉଥିବି ଭଲେ ।୧୯୮।
ଯେତେବେଳେ ଯେ୍ଯମାନେ ଲୋଡବେ ଅନ୍ନପାଣି
ମୁହିଂ ଲୋଡ ଆଣିକର ଅନ୍ନ ଦେଉଥିବି ମନ ଜାଣି ।୧୯୯।
କୋଇନ୍ତାଦେୟ୍ଯ ମଣାଇଲେ ଯହୁଂ ବାଦେୟ୍ଯ ଯୁଧିଷ୍ଠି
ଛାଡିଲେ ମନବ୍ୟଥା ହୋଇଲେ ସବେ ତୁଷ୍ଟି ।୨୦୦।
କଷା ବସନ ତେଜ୍ୟାର କୁଣ୍ଡଳ ଉତ୍ତରୀ
ମାଥେଣ ଜଟା ପରିହରଣ ମୃଗ ଚର୍ମ ଛାଉଂଣି ।୨୦୧।
ଧୃତରାଷ୍ଟ୍ର ଗାନ୍ଧାରୀ ତୁଲେ କୋଇନ୍ତା ବନଗାମୀ
କଲ୍ୟାଣ କର ଚାଲନ୍ତି କୁରୁବଂଶ ସ୍ୱାମୀ ।୨୦୨।

---

୧୯୧।୨ ସୁତେ ଲେଖା ନୋହିଲୁ କରିଣ ମନ୍ଦପଣ । (ଗ,ନ)

ଗାନ୍ଧାରୀ କେ ଳ କରଣ ଧଇଲେ କୋଇନ୍ତୀଂକୁ
ସୁଖର କାଳେ କମେ ଗ୍ଧନ୍ତସିବୁ ପୁଅଂକୁ ।୨୦୩।
କୋଇନ୍ତାଏ ବୋଇଲେ ମୁହିଂ ଅଟଇ ବଡ ଦୁଖୀ
ପୁଅଂକର କଷ୍ଟ ଟୋ ମୁଂ ନୁଆଇଇ ଦେଖି ।୨୦୪।
କୁମାରୀ କାଳେ ମୁଂ ଟୋ କର୍ଣ୍ଣକୁ ଜାତକଲି
ଲଜ୍ଜା ନିମନ୍ତେଣ ମୁଂ ଜଳରେ ମେଲିଦଲି ।୨୦୫।
ଧନ୍ୟ ହୋଇଲି ମାଗୋ ରାଧାର ପ୍ରସାଦେ
ମୋହୋର ପୁତ୍ରକୁ ସେ ପାଳଲା ଅନୁରାଗେ ।୨୦୬।
ପ୍ରଶୁରାମ ସ ରକ୍ଷେ ସେ ନିର୍ଜିତ ଶତ୍ରସେ
ବଜେତଲେ ଧନ୍ୟ ଧନ୍ୟ ରାଧେବ କରନ୍ତି ଜଗତେ ।୨୦୭।
ଅର୍ଜୁନ କଇଂ କର୍ଣ୍ଣ ସମ ନେଣ ଲେଖି
ହୃଦଦ୍ଦେ ମୋହୋର ବଡ଼ାଶଇ ଦେଖି ସଖି ।୨୦୮।
ବଜ୍ର ଛଡ଼ଂଗ୍ରୀ ଅଭେଦ କଚଛ ଅମୃତ କୁଣ୍ଡଳ
ଛତକ୍ଷେ ମାଗିନେଲେ ଆସି ଦେବ ଆଖଣ୍ଡଳ ।୨୦୯।
ଯେଉଁତେ ସତ୍ୟବନ୍ତ ମୋର ଅଟଇ ସେବଣ ବଳା
ଅଗାଧ ସମୁଦ୍ରେ ସେ ବୁଡାଇଲା ମୋର ଭେଳା ।୨୧୦।
ପୃଥୀଗତେ ବସିଲା ସେ ତାହାର ରଥଗୋଟି
ତାହାକଇଂ ସଂଗ୍ରାମେ ମାଇଲା ପାପିଷ୍ଟ କରଟୀ ।୨୧୧।
ପୁତ୍ର ଅପମାନେ ମୁଂ ଶୁଣିଲି ଯେତେତକ
ସୁମରଣ ଶୋକ ମୁଂ ସମ୍ଭାଳିବି କେତେକ ।୨୧୨।
ଯେ ଦୁଖଭାବ ମୁଂ କେସନେକେ ଉପେକ୍ଷଇ
ଅହନିଶି କର୍ଣ୍ଣକଇଂ ମୁଂ ସପନ ଦେଖଇ ।୨୧୩।
ପୂର୍ଣ୍ଣିମୀ ଚନ୍ଦ୍ରମା ଜାଣି ଦିଶଇ ପୁତ୍ର ମୁଖଗୋଟି
ଦନ୍ତେ ଯେନ୍ହେ ଅଭ୍ୟାସେ ପୁରାଇବ ଅଞ୍ଜଳି ।୨୧୪।
ହିଡମ୍ବିକାର ନନ୍ଦନ ଘଟୋତ୍କଚ ମୋ ହୋଇ ମଲା
ପାଞ୍ଚାଳ କୁମାର ଅଭିମନ୍ୟୁ ମୋହୋର ନାଶଗଲା ।୨୧୫।

---

୨୧୪।୨ ସେ କର୍ଣ୍ଣ ମଲାହିନୁ ମୋର ଆତ୍ମା ବଡ କଷ୍ଟି । (ଢ଼)
୨୧୫।୨ ସେ ପୁତ୍ର ବହନେ ମୁହିଂ ହେବ କେଉଁଠେ ଭୁଷ୍ଟି । (ଖ,ନ)

ଭୋଜ କୋନ୍ତ ନନ୍ଦନ ପଡ଼ିଲେ ମୋହୋର ପିତାଭାଇ
ସେହାଂକ ପାଇଂ ତୀର୍ଥେ ସ୍ନାନ କରିବଇଂ ମୁହିଂ ।୨୧୬।
ଯୁଧିଷ୍ଠି ବୋଇଲେ ମାତା ଗୋ ସେହାଂକ ପାଇଂ କଲୁ ବ୍ୟଥା ।
ବେଳହୁଂ ଅମାତ ଗୋ ହେଉଛୁ ତୋହୋର କଥା ।୨୧୭।
କୃଷ୍ଣ ମଧୁପାନପଣେ ଆସିବାର ବେଳେ
ବିଦୁର ଘରେ ଯେ ସେ ରହିଲେ ନିଶାକାଳେ ।୨୧୮।
କୃଷ୍ଣକଇଂ ଆପଣେ ତୁ ଛୁଆଂଇଲୁ ଦେହ
ସନ୍ଧିକଲେ ବାସୁଦେବ ତୁ ମୋତେ କରୁ ଦ୍ରୋହ ।୨୧୯।
ଆପଣେ ଭିଆଇ ମାଗୋ ପରକଇଂ ଦେଉ ଦୋଷ
ଶେଷକାଳେ ମାତା ଗୋ ବୋଲିବା ତୋତେ କିସ ।୨୨୦।
କୋଇନ୍ତ୍ରାସେ ବୋଇଲେ ବାବୁ ଶୁଣ ତୁ ସେମାନ
ଗତକଥା ଶୋଚନା କଲେ ଶରୀର ହୋଇସେ କ୍ଷୀଣ ।୨୨୧।
ବାବୁ ମାତାପିତା ଙ୍କ ସର୍ବଦା ଢନେ ଥାଇ
କଦଳୀ ବୃକ୍ଷନ୍ତି ସେ ମନୁଷ୍ୟର ଦେହୀ ।୨୨୨।
ମୁହିଂ ତୁମ୍ଭର ଜନନୀ ପୋଷନ୍ତ ଅବା ଯାହା
ବଚନେଣ ମାଗିବ ତୁ ପାଳିବୁନା ତାହା ।୨୨୩।
ବାବୁ ସେ ଯେ ଦ୍ରୋପଦୀ ଅଟଇ ତୁମ୍ଭର ଯୁବତୀ ।
ଗୁଣ ପ୍ରାୟେ ଜାଣି ସେ ଖଟଇ ଢବାବ୍ରତ ।୨୨୪।
ଅନେକ ଦୁଃଖ ସେ ଯେ ଷଡ଼ିଲକ ବନ
ପାଞ୍ଚଗୋଟି ପୁତ୍ର ସେହାର ହୋଇଲା ନିଧନ ।୨୨୫।
ଯେମନ୍ତେ ପୁତ୍ର କଥାସେ ନ ଧରଇ ମନେ
ତେସନେ କରି ସେହା ପାଳିବ ପଞ୍ଚୁଜନେ ।୨୨୬।
ପିତା ପୁତ୍ର ଭ୍ରାତ ସେହାର ପଡ଼ିଲେ ସମସ୍ତ
ଦୋଷକଲେ ସେହାରେ କୋପ ନ କରିବ କଦାଚିତ ।୨୨୭।
ପୁତ୍ରନ୍ତ ତଆରି ସେ କୋନ୍ତଭୋଜର ନନ୍ଦନୀ
ଦ୍ରୋପଦୀଂକ ତଆରନ୍ତ ଅନେକ ସନମାନ ଘେନି ।୨୨୮।

---

୨୧୭।୧ ବେଳେ ବେଳେ ଅଜାଣ ସେହା କଲୁ କଥା । (ଠ,ଝ)

ତୁ ଗୋ ମାତା ମୋହୋର ମନେ ନ କରିବୁ ଚିନ୍ତା
ପୁତ୍ରକାଙ୍କ ରାଣୀ ତୁ ଗୋ କେଉଁ ନାହିଂ ଅହନ୍ତା ।୧୨୯।
ପଞ୍ଚ ଭୁଥା ତୋହୋର ଦିଗପାଳ ସମାନ୍ତ
ସଂପୂର୍ଣ୍ଣ ଶିରି ଭୁଞ୍ଜି ତୁମ୍ଭଂକୁ କିସ ଦୁଃଖ ।୧୩୦।
ପୃଥ୍ୱୀକି ରାଜ୍ୟଭୋଗ ଯୁଧିଷ୍ଠିର ରାଜର୍ଷି
ତାହାର ପାଟରାଣୀ ତୁ ଅଟୁ ଗୁରୁହଂସୀ ।୧୩୧।
ଯେତେକ ଅପସ୍ତୁତ ତୁ କହିଲୁ ସ୍ତ୍ରୀ ରାଜେନ୍ଦ୍ର
ଯେତେକ ମନ୍ତ୍ରମାଂ କେ ପାରୁ ନାରୀଧର୍ମେ ।୧୩୨।
ପୁତ୍ର ଅର୍ଥେ କ୍ରୋଧ ଗୋ ନ କରିବୁ କୁଳବଧୂ
ଦଇବର ଭୋଗ୍ୟ କେ ପାରୁ ପୁତ୍ରା ଛେଦୁ ।୧୩୩।
ଭୁଥାଂକର ମନୁ ଯେ ହାରିବୁ ବିଷାଦ
କେସନେକେ ନ ମଣିବୁ ସ୍ତ୍ରୀତ ଦୁଖପଦ ।୧୩୪।
ଆରେକ ବଚନ ମାଗୋ ପ୍ରକାଶଇ ତୋତେ
ନ ପୁଣ ସହଦେବ ସୁମରଇ ମୋତେ ।୧୩୫।
ଏଥେ ରାଜନ ପୁତ୍ରଙ୍କଇଂ ଚମ୍ବନ ଦେଇଣ ପଣ୍ଡୁରାଣୀ
ଦ୍ରୋପଦୀଙ୍କ ଅଲିଙ୍ଗନ କରିଇ ପୁଣପୁଣି । ୧୩୬ ।
ଧୃତରାଷ୍ଟ୍ର ଗାନ୍ଧାରୀ କୋଇନ୍ତୀ ବିଦୁର ସଞ୍ଜୟେ
ରାଜ୍ୟ ଛାଡି ପାଞ୍ଚୈହେଂ ବନକୁ ଗମନ କଲ୍ୟେ । ୧୩୭ ।
ସଞ୍ଜୟେ ବିଦୁର ଆଗେ ପଛେ କୋଇନ୍ତୀ ଯେ ମାତ
କୋଇନ୍ତୀ କାନ୍ଧେ ଯେ ଗାନ୍ଧାରୀଂକ ହାଥ । ୧୩୮ ।
ରାଜ୍ୟଭାର ତେଜିଣ ସେ ପଶିଲେ ବନମାର୍ଗେ
ପୁର ଜନମାନେ ଦେଖିତେ ଅଇଲେ ଅତି ବେଗେ ।୧୩୯।
ହା ହା କାର କରନ୍ତି ଥୋକେ ଅଶ୍ରୁଜଳ ଆଖି
ଧଇର୍ଯ୍ୟ ଧରି ତନୁ ନୁଅରନ୍ତି ଦେଖି ।୧୪୦।
ଗାନ୍ଧାରୀର ମୁ,   ଅଛଇ ଅନ୍ଧ ଯେ ପଟଳ
ସର୍ବଦା ଚକ୍ଷୁ   ଦିଶଇ ଧୃତରାଷ୍ଟ୍ର ମହୀପାଳ ।୧୪୧।

---

୧୩୦ ପଞ୍ଚ ଭ୍ରାଆ ତୋହୋର ଦିଗପାଳ ପ୍ରାୟେ ବଳନ୍ତି
ସଂପଦରେ ଶ୍ରୀକୃଷ୍ଣ ତୁମ୍ଭଂକୁ ସାହାଇ ଅଛନ୍ତି । (ଣ)
୧୩୪।୨ କେସନେକେ ନ ମଣିବୁ ମନେ ଦୁଃଖଖେଦ । (ଣ)

ଫଳ ମୂଳ ଜଳ ସେ ବନେ ପାଇବେଟି କାହିଂ
କୋଇନ୍ଦ୍ରା ବୃଦ୍ଧଆତ୍ମା ସେହାଂକର ବଳ ନାହିଂ । ୨୪୨ ।
ଯେଉଁ ସେ ଥିଲେ ଦିବ୍ୟ ପଲଂକର ଯୋଗେ
ଭୂମିରେ ଶଯ୍ୟା କେମନେକେ କରିବେ ସେ ସେବେ । ୨୪୩ ।
ଖଣା ଖାଲ ଉଚ୍ଚର ସେ ନ ଜାଣନ୍ତି କିଛି
ପୁଣ ସେ ବିଦୁର ନୁଆରଇ ମନ ମୂର୍ଚ୍ଛି । ୨୪୪ ।
କେମନେକେ ଧୃତରାଷ୍ଟ୍ର ବନେ ଦୁଖ ସହୁ
ଦୁଶୀଳା କନ୍ୟାର ଯେଥେ କେମନେକେ ଦିନଯାଉ । ୨୪୫ ।
ସେତେକ କହିଣ ଚହ୍ନିଂ ବାନ୍ଧୁଭଲେ ଲେକେ
ପୁରୁଂ ଅଦୃଶ୍ୟ ସେ ହୋଇଗଲେ ସେକେ ସେକେ । ୨୪୬ ।
ଜୟତୁ କେଶବ ରୂପୀ ଜୟ ନାରାୟଣ
ସର୍ବଭୂତ ନାଥ ତୁମ୍ଭେ କରସି କାରଣ । ୨୪୭ ।
ସତତ ପ୍ରଣମିତ ମୋହୋର ଶ୍ରୀହରିର ପାଦତଳେ
ଯେବଣ ସ୍ୱାମୀ ବଳୀକି ସ୍ଥାପିଲେ ପାତାଳେ । ୨୪୮ ।
ବିକଚ ନୀଳ କମଳ ରୁଚିର ଯାହାର ତନୁବର୍ଣ୍ଣ
ତହିଂ ମଧ୍ୟେ ମନ ମୋର ହେଉ ସଦା ଲୀନ । ୨୪୯ ।
ଅକଳିତ ସାଗରେ ପଶିଲିଇଂ ନ ଜାଣି
ସେ ମହା ଦୁସ୍ତରୁ ମୋତେ ଉଦ୍ଧାର ଚକ୍ରପାଣି । ୨୫୦ ।
ସ୍ନାହାନ ଭୋଜନ ସେ ଶୟନ ଅନୁବ୍ରତେ
ହରି ବିନୁଂ ଅନ୍ୟ ନ ଭାବୁଂ ହୃଦଗତେ । ୨୫୧ ।
ବୁଝିଲି ସେ ସଂସାର ଚିଦପଟ ପ୍ରାୟେ
ଜଳବିମ୍ବ ଜାଣିଣ ସେ ମନୁଷ୍ୟର କାୟେ । ୨୫୨ ।
କୃଷ୍ଣର ପାଦପଦ୍ମେ ଲୟେ ରହୁ ନିରବଧି
ଶୂଦ୍ରମୁନି ସାରଳା ଦାସ ବଦସ୍ୟନ୍ତି ଗୁଣନିଧି । ୨୫୩ ।

---

୨୦୩।୨—ଅତି ଦୁସହ ବହିଲେ ନେସର ଉଦକେ । (ଙ,ଠ)
୨୪୬।୨—ପାଞ୍ଚଜଣଯାକ ମହା ବନସ୍ତେ ପଶିଲେ । (ଖ,ଠ,ନ)
୨୪୬।୨—ପୁରୁଷହ୍ନ ଦୃଶ୍ୟ ହେ ଇଲାଇ ଦେଖିଲ ସମାପେ । (ଝ,ଣ)
୨୫୨।୨—କୃଷ୍ଣର ଲୟେ ଭାବୁ ମନ ରଖି ସିଝି । (ଝ,ଠ)

## କୁନ୍ତୀ ଗାନ୍ଧାରୀ ସହ ଧୃତରାଷ୍ଟ୍ର ଓ ସଞ୍ଜୟ ବିଦୁରର ବାନପ୍ରସ୍ଥାଶ୍ରମେ ଗମନ ଓ ତୀର୍ଥଯାତ୍ରା ବର୍ଣ୍ଣନା

ଅଗସ୍ତିଙ୍କ ପୃଚ୍ଛାକଲେ ବଇବସ୍ୱତ ମନୁ
ଧୃତରାଷ୍ଟ୍ର ଗାନ୍ଧାରୀ ମିଳଲେ କେବଣ ବନୁଂ । ୧ ।
କଥପ୍ରବନ୍ତ ମୁନି ପଣ୍ଡିତ ବାଳଖିଲା
ଶୁଣ ମହାରଜା ଧର୍ମିକ ମତଭେଳା । ୨ ।

କାର୍ତ୍ତିକ ମାସ ଶୁକଳ ପକ୍ଷ ଗୁରୁବାର
କୃତ୍ତିକା ଅନ୍ତେ ରୋହିଣୀ ଭୋଗ ଦଣ୍ଡ ତେର । ୩ ।
ବାଳବ ନାମେ କରଣ ଶିବ ନାମେ ଯୋଗ
ତରଣି ଦିନ ଯେ ତୁଳା ସଂକ୍ରାନ୍ତିକ ଭୋଗ । ୪ ।

ବେଳ ଗୃହଦଣ୍ଡ ଯାଏ୍ଟେ ବୃହସ୍ପତ ବେଳା
ବାନପ୍ରସ୍ଥକୁ ଗମିଲ ଅମ୍ବିକାର ବଳା । ୫ ।
ଶୁଣ ହୋ ରଜନ, ଅନ୍ଧ ଅନ୍ଧୁଣୀ ଯେ ନ ଚହ୍ନନ୍ତ କିଛୁ
ଯେବଣ ବୃକ୍ଷ ଶଗ୍ୱରେ ଲଗଇ ତାହାର ପଦ ଭଷି । ୬ ।

ଆହୋ ଚଇତନ ଯେବଣ ଫଳ ଲାଗି ତକ୍ଷେଂ ଫଳ ଭୋଗି
ଦାରକ୍ଷ ଫଳ ଭୋଗିହୋଇ କୋଚଲ-ଫଳଟି ନ ଲାଗି । ୭ ।
ଆଦଣେ ଯାହା ଅରଜ ଭୁଞ୍ଜିବ ଅବଶ୍ୟ
କଲ କୃତ୍ୟ ଭୁଞ୍ଜିସିନା ଆନର କସ ଦୋଷ । ୮ ।

ଧୃତରାଷ୍ଟ୍ରର ଗ୍ୟାନୁ କର ଯୁଦ୍ଧେଷ୍ଠି ଯାନ୍ତି ବନ
ଅନ୍ତକାଳକୁ ନ ଗଲଟି ଯେ ଯାହା ଅର୍ଜନ । ୯ ।
ତପସ୍ୱୀ ଶରୀର ଧଣ ରଜଂରୁ ବାହାର ହୋଇଲେ
ତମସା ନଦୀ ଉତ୍ତର କୂଳେ କୂଳେ ଗଲେ
ଅନେକ ଦେଶ ଗିରି କନ୍ଦରେ ବୁଲିଲେ । ୧୦ ।

---

୯।୨ ଅନ୍ତକାଳେହେଂ ନ ଗଲ୍ଲ ପରେ କଲ୍ଲ ଲେଖନ । (ଝ,ଠ)
୮।୨ ଅନ୍ତକାଳେହେଂ ନ ଗଲ୍ଲ ପରକୁ କଲ୍ଲ କୃତମାନ । (ଛ)

କନ୍ଦମୂଳ କୋମଳ ଦଳ ଭକ୍ଷି ନିଅନ୍ତି ଯେ ଦିନ
ଦିବସେ ପବନ କରନ୍ତି ବସେ କୋମଳ ପଣେ
କରନ୍ତି ଶୟନ । ୧୧ ।
ଏମନ୍ତେ ପାଞ୍ଚମାସ ପାଞ୍ଚ ଦିବସ ଗଲେ ଚଳି
ପ୍ରବେଶ ହୋଇଲେ ଯାଇଂ ଗୟାତୀର୍ଥ ବୋଲି । ୧୨ ।
ବହଇ ଶୋଣଭଦ୍ରା ପାତାଳ ବାହିଣୀ
ତହିଂ ସ୍ନାହାନ ସାରି ଫଲ୍ଗୁଣୀ ବିଜୟେ ଘେନି । ୧୩ ।
ବ୍ରହ୍ମାରି ନନ୍ଦିମା ଫଲ୍ଗୁଣୀ ତହିଂ ସାକ୍ଷୀ
ବନ୍ଧୁ ସହୋଦ୍ର କୁଟୁମ୍ବ ଯାଇ ତହିଂ ଦେଖି । ୧୪ ।
ସେ ତୀର୍ଥର ଦେବତାଂକୁ କଲେ ଦରଶନ
ବ୍ରାହ୍ମଣଂକ ହାଥରେ ଥୋଇଲେ ଦିଲେ ଦାନ । ୧୫ ।
ଏ ମହାତୀର୍ଥେ ସେ ଗୟଘାଟ କୁଣ୍ଡ
ସୋମଗୋତ୍ର ନିମନ୍ତେ ଦିଲେକ ବାଲିପିଣ୍ଡ । ୧୬ ।
ଭୀଷ୍ମ ଭୂରିସବା ବାଲହୀଂକ ସୋମଦତ୍ତେ
ଦୁର୍ଯ୍ୟୋ କର୍ଣ୍ଣ ଶକୁନି ମମ ଶତପୁତ୍ର ସହିତେ । ୧୭ ।
ବିରାଟ ଦ୍ରୋଣେ ଅଭିମନ୍ୟୁ କୋନ୍ତଭୋଜ
ଏମାନଂକ ମୂଳେ ଯେତେ ସୋଦର ବନ୍ଧୁ ଯେ ଆତ୍ମଜ । ୧୮ ।
ଉଭୟ ବଳେ ପଡିଲେ ଯେତେକ ସଇନ
ସବୁକୁହିଂ ଧୃତରାଷ୍ଟ୍ର ଦିଲେ ବାଲିପିଣ୍ଡ ଘେନି । ୧୯ ।
ଧୃତରାଷ୍ଟ୍ର ଦିଅନ୍ତେଣ ପାତଲେ କରସ୍ଥଳ
ବାଲିପିଣ୍ଡ ଭକ୍ଷି ମୋକ୍ଷ ହୋଇଲେ ସକଳ । ୨୦ ।
ଗୟାରେ ଶ୍ରାଦ୍ଧକଲେ ଉପର ବଂଶେ ଯେତେ ଲୋକ
ସମସ୍ତେ ମୋକ୍ଷଗତି ପାଇ ମୁକତି ହୋଇଲେକ । ୨୧ ।

---

୧୬।୨ ମମ ଗୋତ୍ର ନିମନ୍ତେ ଦିଲେକ ବାଲିପିଣ୍ଡ । (ଠ,ଣ,ଝ,ଛ)

୨୧ { ସାଂଗ୍ରାମ ସାଧିକଲେ ଉପର ବଂଶ ଯେତେକ
ସମସ୍ତେ ମୋକ୍ଷ ହୋଇଲେ ପାଇ ଶ୍ରାଦ୍ଧ ଉଦକ । (ଛ)

୨୧ { ମହାଭାରତ ଯୁଦ୍ଧେ ପଡ଼ିଲେ ସନ୍ୟ ଯେତେ
ଅମୃତ ଅଦ୍ୟୋନ କରି ସ୍ୱର୍ଗେ ବସିଲେ ସମସ୍ତେ । (ଜ)

କଲେ ପିତୃକାର୍ଯ୍ୟ ତହିଁ ବଦୁର ସଞ୍ଜୟେ
ଗାନ୍ଧାରୀ ସହିତେ ଶ୍ରାଦ୍ଧ କରନ୍ତି କୌରନ୍ତାରେ ୍ । ୨୨ ।
ସତ୍ୟବାକ୍ୟ ଉଚ୍ଚାରି ଗଦାଧର ପରସନେ
ତର୍ପଣ ରହିଲେ ଫଲ୍ଗୁ ତୀର୍ଥସ୍ଥାନେ । ୨୩ ।
ଶସ୍ତ୍ର ଧନୁ ବେନିମାତ୍ର ପୁଣି ତହିଁ ଥାନ୍ତି
ପ୍ରାଗଣ୍ଡାର୍ଥେ ପ୍ରବେଶ ହୋଇଲେ ଗମନ୍ତେ । ୨୪ ।
ଗଙ୍ଗା ଯମୁନା ସରସ୍ୱତୀ ବହଇ ତିନିଧାର
ସ୍ନାହାନ କଲେ ଯାଇଂ ସେ ସଙ୍ଗମ ତୀର୍ଥର । ୨୫ ।
ତହିଁରେ ଯଥାବିଧି ପିଣ୍ଡଦାନ ଦେଲେ
ମାଧବ ଦର୍ଶନେ ମକର ମାସକ ବଞ୍ଚିଲେ । ୨୬ ।
କଳପି ରଜାସ୍ତେ ତହିଁ ବୋଇଲେକ ଆସି
ଆହେ ଧୃତରାଷ୍ଟ୍ର ରଜା ତୁ ଅଟ ପୁଣ୍ୟରାଶି । ୨୭ ।
ଯେ କାମ୍ନା ମୃତ୍ତପିଣ୍ଡ ହେ ଅଟଇ ନକର ଯେହ୍ୱା ଇଚ୍ଛା
ତୀର୍ଥ ସେବା ଯେବେ ତୁମ୍ଭେ କର ମନବାଞ୍ଛା । ୨୮ ।
ପୂର୍ବେ ବଇବସ୍ୱତ ମନୁ ରଜାସ୍ତେ ହୋଇଥିଲ
ରଜଭୋଗ ଛାଡ଼ି ତୀର୍ଥସେବା କଲ । ୨୯ ।
ଭଗୀରଥ ଭଗୀରଥୀ ପୁରୂରବା ଯଯାତି ନୃପତି
ତୀର୍ଥସେବା କରଣ ଆସି ସଂସେନ୍ତେ ହୋଇଲେ ବିପୁତି । ୩୦ ।
ରଜଭୋଗ କଲେ ନାନା ପାତକ ଆବଦ ଅଛଇ
ଅଚର୍ଯ୍ୟାରଣେ ବାରୁ ଧର୍ମ ନ ଗଛଇ । ୩୧ ।
ତୀର୍ଥଯାତ୍ରା ବିନା ସେ ପାପକୁ ଆନ ଧର୍ମ ନାହିଂ
ତୀର୍ଥଦର୍ଶନେ କୃତାର୍ଥ କର ନିଜ ଦେହୀ । ୩୨ ।
ତହୁଂ ଧୃତରାଷ୍ଟ୍ର ଯେ ଆନ ବନେ ଗଲେ
ନାରଦ ମୁନିଂକ ନାରଦ ପର୍ବତେ ଦେଖିଲେ । ୩୩ ।

୨୩।୨ —(ପୂରକ ତୀର୍ଥ ସ୍ଥାନେ = ଫଲ୍ଗୁ ତୀର୍ଥ ସ୍ଥାନେ)
୨୮।୧ ଯେ ମୃତ୍ତ ମଣ୍ଡଳେ ପିଣ୍ଡକୋଟି କର ରକ୍ଷା
୩ ତୀର୍ଥସେବା ଯେଥିରେ ତୁମ୍ଭେ କର ମନବାଞ୍ଛା । (ଘ)
୩୨।୨ ଜନ୍ମକ କଳହଣ କୃତାର୍ଥ କର ଦେହ । (ଣ,ଟ)

ଧୃତରାଷ୍ଟ୍ର ଗାନ୍ଧାରୀ ଯେ ପାଣ୍ଡବ ଜନନୀ
ସଞ୍ଜୟ ବିଦୁର କଲେ ନାରଦ ଚରଣେ ଦଇନି । ୩୪ ।
ଅନେକ କଲ୍ୟାଣ କଲେକ ମହର୍ଷି
ଧୃତରାଷ୍ଟ୍ର ରାଜାଂକୁ ବହୁତ ପ୍ରଶଂସି । ୩୫ ।
ନାରଦେ ବୋଇଲେ ଭଲ କୃତ୍ୟଙ୍କ ସେ କଲୁ
ତୁ ଯେ ଧୃତରାଷ୍ଟ୍ର ତପେଣ ବନକୁ ଅଇଲୁ । ୩୬ ।
ସ୍ୱର୍ଗେ ପଣ୍ଡୁଙ୍କୁ ଦେଖିଲୁ ତୋହୋର ଭାଇ
ତୋହୋର ଯିବାକୁ ସେ ଅଛୁ ବାଟ ଚାହିଁ । ୩୭ ।
ଅଶଉଚ କର୍ମେ ସ୍ୱର୍ଗେ ଠାବ ନାହିଂ
ହଳ ଅଛଇ ଅର୍ଗଳ ସ୍ୱର୍ଗେ ପଶିତେ କ୍ଷମ ନାହିଂ । ୩୮ ।
ପୁତ୍ର ପଉତ୍ର ଭରଜା ନୋହଇଟି କାହାର
ଦେଖିଂ ଦେଖୁଂ ତୋହୋର ସମସ୍ତ ଅପହର । ୩୯ ।
ଯେ ମୃତ୍ୟୁ ମଣ୍ଡଳେ ତୁ କସ ଭୋଗ କଲୁ
ଲୋଭ ମୋହ ଶୋକେଣ ପଡି ବୁଡିମଲୁ । ୪୦ ।
ପଞ୍ଚଇନ୍ଦ୍ରିୟ ଅଟଇ ଭୋଗକାରୀ
ଯେଣେ ସେ ସଂସାରେ ଅଗ୍ୟାନେ ଅପହାର । ୪୧ ।
ମନେକରି ଯେବେ ହାଦେ ଯେମ୍ନା ନିବାର
ତେବେ ସେ ମୋହଜନ୍ତୁଂ ହୋଇବାକ ପାର । ୪୨ ।
ଅନେକ ଗ୍ୟାନ ଯେ କହିଲେ ହାଦେ ଦେବରିଷି
ଯେମନ୍ତେଣ ବ୍ୟାସେ ପ୍ରବେଶ ହୋଇଲେକ ଆସି । ୪୩ ।
ବ୍ୟାସଂକୁ ଦେଖିଣ ପ୍ରଣପତ୍ୟ ଧୃତରାଷ୍ଟ୍ର
ହେ ପିତା ତୋହୋର ଥାଆନ୍ତେ ମୋତେହାର ଯେତେ କଷ୍ଟ ।୪୪
ବ୍ୟାସେ ବୋଇଲେ ବାବୁ ତୁ ଭଲ କୃତ୍ୟ କଲୁ
ଗ୍ରହବାସ ତେଜ ବନବାସକୁ ଅଇଲୁ । ୪୫ ।
ହସ୍ତୀଂକର ସାଂଗ୍ରମେ ମୃତ୍ୟୁହିଂ ସେ ତେଣ
ଅନ୍ୟେ ମୃତ୍ୟୁ ଲଭିଲେ ପାଆନ୍ତି ନର୍କେତେଣ । ୪୬ ।

---

୪୧।୨ ତେଣୁ ସଦଗ୍ୟାନ ବାବୁ ରହେ ଅପସର । (ଖ,ନ,ଠ)

ଜନ୍ମନ୍ତୁଂ ପେଣୁଠି ନୋହୋଇ ଚକ୍ଷୁ ନାହିଂ
ତୁମ୍ଭେ ବୈରାଗ୍ୟଂ ପାଇବୁ ଆର କାହିଂ । ୪୭ ।
ଚିନ୍ତା ଉପେକ୍ଷି ହେବେ ଥାଅ ବନବାସେ
ଏହେତେ କହିଂଣ ତହିଂ ଯେ ଗଲେ ବେଦବ୍ୟାସେ । ୪୮ ।
ନାରଦ ପର୍ବତୁଂ ଯେ ଗଲେ ପଞ୍ଚୁଜଣେ
ଗଙ୍ଗାକୂଳେ ଯାଇଂ ରହିଲେ ଗହନ ବପୁନେ । ୪୯ ।
ନାନା ବିପିନେ ତହିଂ ଅଛି ତରୁମାଳ
ହାନ୍ଦୋଳନ୍ତି ପବନେ ଲତା ପଂକ୍ତିଫଳ । ୫୦ ।
ବକୁଳ ମାଧବୀ ନାଗେଶ୍ୱର ଯୋଗ
ରଜମଣ୍ଡେ ଭ୍ରସଲେ ଚମ୍ବନ୍ତ ପରାଗ । ୫୧ ।
ରବନ୍ତି କୋକିଳେ ଯେ ବସନ୍ତର ବାଣୀ
ଶୁଣନ୍ତେ ଶୋକ ଯେ ଉପେକ୍ଷିଲେ ପଞ୍ଚୁପ୍ରାଣୀ । ୫୨ ।
ବହୁତ ବନଜୀବ କ୍ରୀଡନ୍ତି ସେ ବନେ
କଟିବର ମୃଗ ହସ୍ତେ ବାଉଁଠିଆ ଜୀବମାନେ । ୫୩ ।
‘ଦ୍ୱୈଧ କାନନୁଂ ପାଇଣ ସେ ବନପୂଜା
ଆଶ୍ରମ ସୁଲଭେ ରହିଲେ କୁରୁରାଜା । ୫୪ ।
ଗଙ୍ଗାର ପନ୍ତାରେ ସେ ପର୍ଣ୍ଣକୁଟୀ କଲେ
ଫଳମୂଳ କନ୍ଦ ଆହାରେ ଦିନ ନେଲେ । ୫୫ ।
ସ୍ନାହାନ ତର୍ପଣ ନିତ୍ୟକର୍ମ ପୂଜା ସରି
ତହୁଂ ଉତ୍ତାରେ ଯେ ଆହାର ପଞ୍ଚାକର । ୫୬ ।
ନାରଦ ପର୍ବତୁଂ ଯେ ଗଲେ ବ୍ୟାସଋଷି
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୋଇଲେକ ଆସି । ୫୭ ।
ଆସ୍ଥାନେ ଦେଖିଲେ ଯୁଧିଷ୍ଠି ପୂରିତ ଗହଳ
ବ୍ୟାସଂକୁ ଦେଖିଣ ଯେ ଉଠିଲେ ସକଳ । ୫୮ ।
ସମସ୍ତ କୁଟୁମ୍ବ ଘେନିଣ ଯୁଧିଷ୍ଠି ଦେବରାଜା
ବ୍ୟାସଂକର ପଦେ ପାଦେ କଲେ ଦିବ୍ୟପୂଜା । ୫୯ ।

---

*୫୬।୧ ତହିଂ ଉତ୍ତରେ ଆହର ଧର୍ମକର୍ମ କର । (କ)

ବ୍ୟାସେ ବୋଇଲେ ବାବୁ ଶୁଣ ସତ୍ୟେ ଯୁଧିଷ୍ଠି
ଗଙ୍ଗାକୂଳେ ଦେଖିଲୁ ତୋହୋର ଦେଢ଼ ବୁଢ଼ା ଧୃତରାଷ୍ଟ୍ରି । ୭୦ ।
ଗାନ୍ଧାରୀ କୋଇନ୍ତା ବିଦୁର ଗାଲବ୍ୟର ସୁତ
ଯୁଧିଷ୍ଠି ବୋଇଲେ ମୋତେ ତାଂକୁ ଦେଖାଅ
ନେଇ ତାତ । ୭୧ । ୩୧୪

---

## ଯୁଧିଷ୍ଠିଙ୍କର ସସୈନ୍ୟେ ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ ଓ ବିଧବା ନାରୀମାନଙ୍କ ସ୍ୱର୍ଗପ୍ରାପ୍ତି

ବ୍ୟାସେ ବୋଇଲେ ହୋ ଗୃହ ଯିବା ବନେ
ଅନେକ ସଇନ୍ୟ ଭୁଲେ ପାଣ୍ଡବ ପଞ୍ଚ ଜଣେ । ୧ ।
ଶତେଭାଇଂକର ଯେତେକ ଯୁବତୀ
ସମସ୍ତ ନାରୀମାନେ ଗୋଡ଼ାଇଲେ ପଛକତ । ୨ ।
ଚଳନ୍ତେ ପ୍ରବେଶ ଯେ ହୋଇଲେ ଗଙ୍ଗାକୂଳେ
ବିଦୁରେ ବୋଇଲେ ଧୃତରାଷ୍ଟ୍ରଂକ ଆଗେ ଅଇଲେ ସକଳେ । ୩ ।
ଧୃତରାଷ୍ଟ୍ର ବୋଇଲେ ଯେବେ ଅଇଲେ ଯୁଧିଷ୍ଠି ସହିତେ
ଆହୋ ବିଦୁର ଆସୁଛନ୍ତି ଆମ୍ଭନ୍ତ ନେମାର ନିମନ୍ତେ । ୪ ।
ଗଙ୍ଗାକୂଳେ ଆସି ଦେଖିଲେ ପଣ୍ଡୁକୁନ୍ତୀ
ହା ହା ନାଥ ବୋଲି ପଡ଼ିଲେ ଭୂମିରେଣ ଲୋଟି । ୫ ।
ଦୃଶିଲ ଗାନ୍ଧାରୀର ପାଦ ଦୁଇ ଧରି
ଉଚ୍ଚସ୍ୱରେ କାନ୍ଦନ୍ତି ଯେ ସଦ୍ୟରଥ ସୁନ୍ଦରୀ । ୬ ।
ଭାନୁମତୀ ସହିତେଣ ଯେତେକ ଯୁବତୀ
ଶାଶୁକୁ ଦେଖିଣ ଶୋକ କରନ୍ତି ଅପ୍ରମିତ । ୭ ।
କରେ ଶିର ତାଡ଼ି ପଷ୍ଠ ପୁତ୍ର ସୁମରଣ ମନେ
କ ଜାଣି ସମସ୍ତେହେଂ ମଲେ ସେହି ଦିନେ । ୮ ।
ଅଶ୍ରୁଜଳେ ସମସ୍ତଂକ ବକ୍ଷ ହୋଇଲାକ ଧୋଇ
ଧଉପଁବନ୍ତ ହୋଇ କେହୁ ପୁତ୍ର ସ୍ତ୍ରୀ ନାହିଂ । ୯

କେବଣ ନାଶକ ଅବା ହୋଇନାହିଁ ବ୍ୟଥା
ତାହାକଇଂ ଦୁର୍ବୋଧ କର କେ କହିବାକ କଥା । ୧୦ ।
ଷୋଳ ବରଷ ହେଲ ଯେ ଥିଲେକ ଉପେକ୍ଷି
କ୍ରୋଧ ବଢିଲ ଧୃତରଷ୍ଟ୍ର ଗାନ୍ଧାରୀଙ୍କ ଦେଖି । ୧୧ ।
ଅଧର କମ୍ପାଇଣ ଯେ କହନ୍ତି ବଚନ
ବ୍ୟାସଂକର ମୁଖ ଗ୍ରହିଂ ସୁନ୍ଦରସ୍ୱେ କାନ୍ଦନ୍ତି ଘନ ଘନ । ୧୨ ।
ବୋଲନ୍ତି ଭୋ ବ୍ୟାସେ ଯେବେ କରବା ଦ୍ରୁତକାରେ
ତୁମ୍ଭେ ଆସି ମିଳିଲ ସୁଫଳ ହୋଇଲ ଆମ୍ଭରେ । ୧୩ ।
ବ୍ୟାସେ ବୋଇଲେ ଜଗତା ଦେଖି ଅଇଲୁଂ ଧୃତ ଷ୍ଟ୍ର
ମୁଖ କୋହଳତ ହୋଇଲ ବଡ କଷ୍ଟ । ୧୪ ।
ବ୍ୟାସେ ବୋଇଲେ ଧ ତରଷ୍ଟ୍ର ତୋତେ ଦେଖି ଶୋଚନ୍ତି ସକଳେ
ତୁ ସେ ସମ୍ବୋଧିବୁନା ବଧୂଙ୍କ ସକଳେ । ୧୫ ।
ଧୃତରଷ୍ଟ୍ରକଇଂ ବ୍ୟାସେ ସମ୍ବୋଧନା କର ଆସି
ବଧୂଜନମାନନ୍ତ ଯେ ବୋଲନ୍ତି ଆଶ୍ୱାସି । ୧୬ ।
ବ୍ୟାସେ ବୋଇଲେ ଆଈ ଗୋ କ୍ରୋଧ ଶାନ୍ତିକର
ଭୁଥାସ୍ୱେ ମୃତ୍ୟୁପଥେ ନାହାନ୍ତି ନା ତୁମ୍ଭର । ୧୭ ।
ତୁମ୍ଭେ ଯେ ଅପ୍ରତେ ଅବା ଗଲ ସର୍ବ ନାଶ
ସ୍ୱେହ୍ୱଲକ୍ଷଣି ଦେଖାଇବା କ ଭୁଥାନ୍ତି ତୁମ୍ଭର । ୧୮ ।
ମୁଖେଣ ଅଙ୍ଗୁଷ୍ଠି କେ ଦନ୍ତେଣ ତରଣ ଧର
କେ କରେ କାର୍ପଣ୍ୟ କେ ପାଦ ତଳେ ପଡ଼ । ୧୯ ।
କେଶବାସ ଅସମ୍ଭାଳ କାନ୍ଦନ୍ତି ଭୂମି ଲୋଟି
କେ ବୋଲନ୍ତି ଜନ୍ମେ ଜନ୍ମେ ହୋଇଥିବୁ ତୁମ୍ଭର କନ୍ୟା ଯେ
ଆମ୍ଭେଟି । ୨୦ ।
ତୁମ୍ଭର ଅନୁଗ୍ରହେ ସ୍ୱାମୀଙ୍କ ଯେବେ ପାଉ
ଦୁଖ ମହାଶୋକର ତାପ ଯେ ମନୁ ଯାଉ । ୨୧ ।
ଷୋଳ ବରଷ ହେଇଲ ସ୍ୱାମୀଙ୍କ ନ ଦେଖିଲୁ ନୟନେ
ସ୍ୱେ କଷ୍ଟ ତାରଯିବ ବ୍ୟାସଦେବଙ୍କ ପଦସନେ । ୨୨ ।

---

୧୦ { କେବଣ ନାଶକ ହୋଇନାହିଁ ବ୍ୟଥା
{ ତାହାକଇଂ ଦୁର୍ବୋଧ କହିବାକ କଥା । (୪,୯)

ସପନ ଫଳ ପ୍ରାପ୍ତେ ତ କହିଲ ନ ଜାଣି
ଆମ୍ଭା ତହିଙ୍କ ହୋଇଲୁ ତୁମ୍ଭର ବୋଲ ଶୁଣି । ୨୩ ।
ଆଶା ଦେଖାଇ ଯେ ମୁନି କରନ୍ତି ନବଶ
ଆପଣଙ୍କ ଜାଣନ୍ତି ଯେ ପ୍ରେଥିରେ କେତେ ଦୋଷ । ୨୪ ।
ଦେଖିଣ ରୋମାଞ୍ଚଇ ଶରୀର ଉଚସନ୍ତ୍ୟ
ଆରେକ ବେଳେକ ପ୍ରେତ୍ତ କଥା ବୋଲ । ୨୫ ।
କାକୁସ୍ଥ ବଚନ ଶୁଣିକର ସତ୍ୟବତୀର ନନ୍ଦନ
ଗଙ୍ଗାଜଳେ ପଶି ମୁନି କଲେକ ସ୍ନାହାନ । ୨୬ ।
ମନ୍ତ୍ର ଅଭ୍ୟାସିଣ ସେ ଚନ୍ତିଲେକ ଋଷେ
ଦିବ୍ୟ ଅବତାର ହୋଇ ମିଳଲେ ଖଟ୍ରେ ଆସି । ୨୭ ।
ପୁଣି ହିଂ ଚନ୍ଦ୍ରାକଲେ ମିଳଲେକ ଦ୍ରୋଣେ
ଭୂରିସବା ବାଲ୍‌ହିକ ଯେ ସୋମଦତ୍ତ ସଣେ । ୨୮ ।
ପୁଣି ଧ୍ୟାନେ ଚନ୍ତନ୍ତି ସତ୍ୟବତୀର ସନ୍ତତ
କର୍ଣ୍ଣ ମିଳନ୍ତି ଆସି କୋଇନ୍ତ୍ରୟଙ୍କର କତ । ୨୯ ।
ଦୁର୍ଯୋଧନ ଅଇଲ ଶତେ ଭାଇର ତୁଲେ
ଲକ୍ଷ୍ମଣ କୁମାର ଅଇଲ ତୁଠଲ ଶକୁନି ଶଇଲ୍ୟ । ୩୦ ।
ବରାଟ ଦ୍ରୁପଦ ଶ୍ରୀଖଣ୍ଡୀ ଧୃଷ୍ଟ ଯେ ଦ୍ୟୁମନ
ଅଭିମନ୍ୟୁର ତୁଲେ ବରାଟ ପୁତ୍ରମାନ । ୩୧ ।
ଅଇଲେ ଜଦ୍ୟରଥ ପାଞ୍ଚାଳ କୁମରେ
ଅଳମ୍ବୁଷ ଘଟଉତ୍କଚ ଯେ ଅଇଲେ ସର୍ବ ବୀରେ । ୩୨ ।
ଅଷ୍ଟାଦଶ ଦିବସେ ପଡ଼ିଥିଲେ ଯେତେକ
ସଞ୍ଜପି କହନ୍ତେଣ ଲେଖିବା କେତେକ । ୩୩ ।
ସେହି କାଳେ ଯେତ୍ଲେକ ଥିଲେ ଯଥା ରୂପ
ଅନେକ ଅଳଂକାର ଯେ ଆଭରଣ ସହୁରେ । ୩୪ ।
ବେଦବ୍ୟାସେ ବୋଲେଲେ ଗୋ କ୍ଷେତ୍ରସି ସର୍ବ ବାମା
ଯେ ଯାହାର ସ୍ୱାମୀକି ଗୋ ଚାହିଁଣ ପ୍ରେଥୁ ନେମା । ୩୫ ।
ସହେକ ଦିବସେକ ଆଜ ତୁମ୍ଭଙ୍କୁ ଷଦେକ ଅଟଇ
କର ଲଡ଼ଭୋଗ ତୁମ୍ଭର ଯେତେକ ମନ ଶାନ୍ତିହୋଇ । ୩୬ ।

ଉଜାଗରେ ଆଜ ତୁମ୍ଭେ କିଣି ପୁହାଇବ
ପ୍ରଭାତେ ନୋହିବ ସିନା ରତିରସ ଭାବ । ୩୭ ।
ଏମନ୍ତେକ ଶୁଣନ୍ତେ ସେ ଧାମନ୍ତ ସବନାରୀ
ସଭାରୁ ଭ୍ରୁଥାନ୍ତ ସେ ଯେ ଆଣନ୍ତ କୋଳକରି । ୩୮ ।
ପୁଣ ଆରୋପଣ ଯେ କଲେକ ମହାଋଷି
ସୁବର୍ଣ୍ଣର ଶତେପୁର ମାୟାରେ ମିଳିଲେକ ଆସି । ୩୯ ।
ଦିନକର ଅନ୍ତେ ସେ ହୋଇଲେକ ନିଶି
ଯେ ଯାହାର ଠାବେଣ ବଜେକଲେ ଆସି । ୪୦ ।
ନବକୋଟି ଯୋଦ୍ଧାନ୍ତ ଯେ ନବକୋଟି ଘର
ସୁଖେ ପଦ୍ମୁଣ୍ଡଲେ ଯାଇ ସୁଗନ୍ଧ ଶେଯ୍ୟାର । ୪୧ ।
ହଂସୁଳ ଭୁଲ ଗାଡ଼ ଜାଳନ୍ତି ମାଣିକ୍ୟର ଦୀପ
ଲମ୍ବନ୍ତ ଚନ୍ଦ୍ରସରୀ ସେ ଉପରେ ଚନ୍ଦ୍ରାତପ । ୪୨ ।
ଜଳଧାରା ପାଇଲେ କ ଚାତକ ନାମେ ପକ୍ଷୀ
ସ୍ୱାମୀ ପାଇ ସବ କଷ୍ଟ ପାଶୋରିଲେ ମୃଗାକ୍ଷୀ । ୪୩ ।
ଗାଢେଣ ଆଲିଙ୍ଗନ କରନ୍ତି ବନିତା,
ଅଧର ଚୁମ୍ବିଣ ସେ ଉପେକ୍ଷିଲେ ଚନ୍ତା । ୪୪ ।
କେବଣ ନାରୀ କାନ୍ଦି କହଇ ସ୍ୱାମୀ ଆଗେ
ଏମନ୍ତେ ଅବସ୍ଥା ମୁଂ ହୋଇଲି ତୁମ୍ଭର ଅଭାବେ । ୪୫ ।
କେ ନେଇ ସ୍ୱାମୀର ହୃଦେ କୁଚ ଲଗାଇ ପେଲି
ପ୍ରେମ କୁଢୋହୋଲେ ଗୃହ ପନ୍ଟଲକ ବୋଲି । ୪୬ ।
କେବଣ ନାରୀ ରଷନ୍ତି ବୋଉଷନ୍ତି ପୁରୁଷେ
କେ ପ୍ରେମ ରସେଣ ସେ ପିଟିଦେଇ ବସେ । ୪୭ ।
କେ ବୋଲଇ ତୋହୋର ଅପ୍ରାଦ ପଡ଼ ମୋହୋର ମାଥା
ଭୁଥାର ଅଭାବେ ଆବର କଷ୍ଟ କେବଣ କଥା । ୪୮ ।
କେବଣ ବାମା ଶୃଙ୍ଗାରେ ନାହିଂଟ ବିଶ୍ରାମ
କେ ସ୍ତନ ଜାନୁ ଛୁଆଇ ଉଲୁଟାଇ କାମ । ୪୯ ।

---

୩୮।୨—ଯେ ଯାହାର ଭୁଥାନ୍ତ ସେ ଆଣନ୍ତ କୋଳକରି । (କ,ଠ,ନ,ଘ)
୪୭।୧—କେବଣ ନାରୀ ରଷନ୍ତି ପ୍ରବୋଧନ୍ତି ପୁରୁଷେ । (ଚ,ଝ)

କେବଣ ନାରୀ ଭୂଥାକୁ ହୃଦରେ ଶୁଆଇ
କେବଣ ନାରୀ ଭୂଥାର ଚରଣ ଘଷଇ । ୫୦ ।
କେ ଭୁଜେ ଭିଡ ମୁଖେ ଦଅନ୍ତି ଚୁମ୍ବନେକ
ବଦନ ନିରେଖି କେ ପ୍ରେମେ କରନ୍ତି ଶୋକ
ହା ହା ସ୍ୱାମୀ ମୋହୋର ଗଳାର ମାଣିକ । ୫୧ ।
କେ ରୁଷଇ କେ ହସଇ କେ ବସଇ ଯାଇଂ ଦୂରେ
କେବଣ ନାରୀ ବିଳପଇ କାନ୍ଦଇ ଉଚ୍ଚସ୍ୱରେ । ୫୨ ।
ବିବିଧ ସମ୍ଭବେ ବନ୍ଧେଶ ସର୍ବରତି
ଲୋଚନ ଉନ୍ନିଦ୍ରେ ଯେ ବଞ୍ଚିଲେ ନିଶାରାତି । ୫୩ ।
ମଦନ ପଞ୍ଚ ଶର ହୃଦେଶ ଗଲା ଫୁଟି
ପ୍ରକୃତି ନ ସରଇ ନ ପୂରଇ ଅଭୀଷ୍ଟି । ୫୪ ।
ପ୍ରେମସନେକେ ଯୁବାସ୍ତ୍ରୀ ଯୁବାଜ ପୁରୁଷ
କ୍ଷଣେକ ପ୍ରାପ୍ତେ ମଣିଲେ ଗ୍ରହ ତାଙ୍କୁ କଷ । ୫୫ ।
ଅରୁଣ ପ୍ରକାଶେଣ ପାଇଲକ ନିଶି
ସମସ୍ତ ପୁରୁଷେ ଯେ ହେଲେ ଶୂନ୍ୟବାସୀ । ୫୬ ।
ଅଗ୍ନି ଅଶାନ୍ତ ଯେହ୍ନେ ତୃଣ କାଠଘୃତ ପାଇ
ପୁରୁଷ ଯୋଗ ସ୍ତ୍ରୀମାନଙ୍କର କେବେହେଂ ଶାନ୍ତ ନାହିଂ । ୫୭ ।
ମଦନ ଜ୍ୱରେ ଜଳଇ ତାହାଙ୍କର ଅଙ୍ଗ
ତେବେ ସେ ରମଣୀପ୍ରେ ନ ଛାଡନ୍ତି ଅଙ୍ଗସଙ୍ଗ । ୫୮ ।
ଭୂଜେଣ ଆବେଷ୍ଟି ଧରି ଲୋଡନ୍ତି ଯୁବତୀ
କୋଳହିଂ ସେ ଅଛି ପୁରୁଷେ ନାହାନ୍ତି କତି । ୫୯ ।
ଦ୍ୱିଗୁଣ ବଇକୁଲ୍ୟ ହୋଇଲେ ସର୍ବ ବାଳୀ
ଆକାଶକଇଂ ଦୃଷ୍ଟି କରି ପାଡଲେ ବୋବାଳି । ୬୦ ।
ହା ହା ନାଥ ଆମ୍ଭନ୍ତ ଛାଡ଼ିଣ କେଣେ ଗଲ
ଶରୀର ଥୋଇ ଆମ୍ଭର ଜୀବନ କାଢ଼ିନେଲ । ୬୧ ।

---

୫୦।୨—କେବଣ ନାରୀ ଭୂଥାକୁ କ୍ରୋଡ଼ରେ ଘଷଇ । (ଠ)
୫୮—ନାନା ବନ୍ଧେ ଛନ୍ଦେ କେ କରଇ ଗାଢ଼େ ରତ
କାହାକୁ ଯେ ନିଦ୍ରା ନାହିଂ ଉଜାଗର ରାତ । (ଖ,ନ)

ଅଧର ଅମୃତ ମୁଖେ ପାନ ଦେଇ
ଆମ୍ଭନ୍ତ ଗୁଣ କେଣେ ଗଲେ ହୋ ଛାଡ଼ି । ୭୨ ।
ପୂର୍ବ ଅନରୂପେ କସ ଦେଖିଲ ଅନ୍ତର
ତେଣେ ସ୍ୱାମୀର ନୋହିଲୁ ମନର ଭିତର । ୭୩ ।
ଗୁଣ ଯେବେ ଯିବ ସ୍ୱର୍ଗଂ କର୍ମେ ଆସ
ଦୁଃଖେ ଅମ୍ଭର ଧର୍ମପଣେ ନାଶ । ୭୪ ।
ସ୍ୱାମୀ ଆଶା ତେଜିଥିଲୁ ଯେବେ କଲ ଯେ କୃତାର୍ଥ
ଯେବେ ତୁମ୍ଭ ଯୋଗୁଂ ପ୍ରାଣ ତେଜିବୁଂ ଯଥାର୍ଥ । ୭୫ ।
ନଖ ଦନ୍ତ ମୁଖଘାତ କଲ କୁଚେ ତହିଁ
ଯେତେକ କର୍ମାଇଂ ଯେ କଲ ବଡ଼ମ୍ଭନ । ୭୬ ।
ଗଲର କଥା ହୋ କର୍ମେ ଦାଲ ହେତୁ
ଯେତେନେକ ପ୍ରତେଞ୍ଚେ ନାଥ କେବଣ ନାଗି ବ୍ରତୁଂ । ୭୭ ।
ବଥାପ୍ରିତ ତେଣ ନାଥ କଲତ ନ ଜାଣି
ତନୁର ପ୍ରାଣ ମୋର ଘେନିଗଲ ପୁଣି । ୭୮ ।
ନାନା ଆଲିଙ୍ଗନ ଯେ ଭଲ କଲ ନିଶାକାଳେ
ବିଶ୍ୱାସଘାତକତା କଲ ଯିବାବେଳେ । ୭୯ ।
ବିଳାପ ଶବଦ ଯନ୍ତୁଂ ଶୁଣିଲେକ ବାଣୀ
ପାଣ୍ଡବେ ମଉନବ୍ରତ ଅପମାନ ଶୁଣି । ୮୦ ।
ସ୍ୱାମୀ ସ୍ୱାମୀ ବୋଲି ଯେ ବୋବନ୍ତି ସର୍ବନାରୀ
ହାଥ ବଢ଼ାବନ୍ତି ଯେ ଗଗନକୁ ପ୍ରସାରି । ୮୧ ।
ହେ ନାଥ ଆମ୍ଭନ୍ତ ନିଅ ବୋଲି ବୋଲନ୍ତି କେବଣ ନାରୀ
କସ ଅବା ଅରଜବ ଘରଣୀକି ମାରି । ୮୨ ।
ଯେସନେକେ ତଂକଣ ବଢଂସଇ କେହି ଅର୍କ
ଅନ୍ତରୀକ୍ଷେ ଥାଇ ନାଥ ଆମ୍ଭନ୍ତ ଦିଅ ବାକ୍ୟ । ୮୩ ।
ଅନେକ ଲୋକଙ୍କର ହସ୍ତିନାପୁର ସର୍ବ ନାରୀ
ବ୍ୟାସ ମହର୍ଷିଂକ ଚରଣେ ଯାଇଂ ପଡ଼ି । ୮୪ ।

---

୭୩ —ପୂର୍ବର ଅଜାତ କସ ଦେଖିଲ ଅନ୍ତର
ତେବେ ସେ ସ୍ୱାମୀର ନୋହିଲି ମନର ଭିତର । (ବ,ଣ)

ଦାରୁଣରେ ଭରଣ ଧର ଯେ ସଜଳ ସୁରେଖ
ବ୍ୟାସ ମହର୍ଷିଙ୍କଇଂ କଲେ ବହୁତ ତୁଷ୍ଟ । ୭୫ ।
ଆମୃତ୍ୟୁ ସ୍ୱାମୀଦାନ ବଞ୍ଚି ମହର୍ଷି
ଶୁଣିଣ ବ୍ୟାସଦେବ ବୋଇଲେକ ହସି । ୭୬ ।
ସ୍ୱାମୀଙ୍କର ଭୁଲେ ଯାଇଛେ କ କେଉ
ପତିଂ ଦେହ୍ନ ପତିଂ ଦେହ୍ନ ବୋଲି ଯେ କଲେକ
ସଂରୋଡ଼ । ୭୭ ।
ବୋଇଲେ ତୋହୋର ଦାନ୍ଦ କଲେହେଂ ସିନା ତ ରେ
ମର୍ତ୍ତ୍ୟପୁରୀ ତେଜ ଭେଟିବୁ ଯେ ସ୍ୱର୍ଗପୁରୀ । ୭୮ ।
ଷୋଳବରଷ ହୋଇଲା ନ ଦେଖିଲୁ ନନ୍ଦନେ
ପ୍ରେ କଷ୍ଟ ପାସେରୁଂ ବ୍ୟସଂଙ୍କ ପରଦଳେ । ୭୯ ।
କୃଷ୍ଣଙ୍କର ଦୁଷ୍ଟଆତ୍ମା ରଷିକୁଳେ ଜାତ
ଆଷ୍ୟ ଅଇଶ୍ୱର୍ଯ୍ୟ ଯେ ଗ୍ୟାନ ବୁଦ୍ଧିବନ୍ତ । ୮୦ ।
ପାର୍ଥନାଶାସ୍ତ୍ରୀ ନାଥ ସଦାସ୍ୱେ ଭବ କ୍ଷମା
ସକଳ ବ୍ରହ୍ମାଣ୍ଡ ମଧ୍ୟେ ଯେବଣ ଋଷିର ମହିମାଂ । ୮୧ ।
କାର୍ପଣ୍ୟ କାରଣ କରନ୍ତା ଯେବଣ ମୁନି ବ୍ୟାସ
ମୁହିଂ ତାହାର ସୁବୃଦ୍ଧିଦେଣକୁ କଲଇଂ ଆଶ । ୮୨ ।
ନିର୍ଭୀତ ଜାବପଦ କିର୍ଭିନ୍ନ ନମାମି
ମହାମନ୍ତ୍ର ବଳେ ଯେହ୍ନ ସେ ଶନ୍ୟଗାମୀ । ୮୩ ।
ଅଗାଦ ସାଟରେ ମୁହିଂ ଅଛଇ ଯେ ପଶି
ଜାଣିତ ଅପରାଧେ ମୁଂ ହୋଇଲି ମହାଦୋଷୀ । ୮୪ ।
ବେଳ ମୃତ୍ତି ନିମନ୍ତେ ଯେ ମୁହିଂ ଶାପ ଘେନି
ଜନ୍ମିଲି ମୃତ୍ତୁ ମଣ୍ଡଳେ ମନୁଷ୍ୟର ଯୋନି । ୮୫ ।
ଯଦ୍ୟପି ମନୁଷ୍ୟେ ମୁହିଂ ହୋଇଲିଟି ଜାସ୍ୱେ
ସଦଜନ୍ମ ମୋହୋର ହରରେ ବନସ୍ୱେ । ୮୬ ।
ଆଷ୍ୟ ବୁଦ୍ଧି ଆରୋଗ୍ୟ ଯେବଣ ରୂପ ଦ୍ୟନ୍ତା
ମୁଷ୍ଟି କରତା ପ୍ରତ୍ୟକ୍ଷେ କଲବା ଯେବେ ଚନ୍ତା । ୮୭ ।

। ୭—ପଧ ମନୁଷ୍ୟ ମଣ୍ଡଳେ ଜାତକଲି ମୋତେ
ତେବେ ପାବ ଦଣ୍ଡ ମୋତେ ସଜ୍ଜନ ସହିତେ । (ଖ,ଗ,ଠ)

କଇବର୍ତ୍ତର ନନ୍ଦନ ପାରେଶ୍ବର ରୋହୀ
ଷାଠିଏ ଲକ୍ଷ ପୁଣି ଗ୍ରନ୍ଥ ଯାହାରେ ନିର୍ଭ୍ରାନ୍ତ ।୮୮।
ଶତେ ସହସ୍ର ଦଣ୍ଡ ପ୍ରଣମ୍ଯ ବ୍ୟାସଙ୍କ ପଦ୍ମପାଦେ
ହେମୁନି ସାରଳା ଦାସ ଭାବନ୍ତି ସଦା ହୃଦେ ।୮୯।
ଏହି ବଚନ କନ୍ୟାଙ୍କର ବଇକ୍ଲ୍ୟେ ଚିନ୍ତିଲେ ମହର୍ଷି
ସେହି ମୁହୂର୍ତ୍ତେ ତହିଁ ବଟକକଲେ ଆସି ।୯୦।
ବ୍ୟାସେ ବୋଇଲେ ଶୁଅ ଏ ଯାହାର ଭାରିଜା
ମତ୍ରବେ କହିଣ ଯେ ଉପେକ୍ଷିଲେ ହେବେ ଲଜ୍ଜା ।୯୧।
ଶୁଣିଣ ପୁତ୍ରେ କନ୍ୟାଙ୍କର ହାତ ଧରି
ପିତୃଲୋକେ ବସିଲେ ଯାଇଁ ନୁଆଇଲେ
ସ୍ବର୍ଗପୁରୀ ।୯୨। ୪୦୭



## ବିଦୁରଙ୍କର ଯୁଧିଷ୍ଠିରଙ୍କ ଦେହେ ପ୍ରବେଶ ଓ ଦେହ ସଂସ୍କାର

ବଦସ୍ବନ୍ତି ଅଗସ୍ତି ଶୁଣ ମନୁ ନରନାଥ
ବଇକୁଣ୍ଠେ ବସନ୍ତେ ଯେବେ ନ ନିଅନ୍ତେ ଭାରଜାନ୍ତ । ୧ ।
କାଞ୍ଚିତ କୃଷ୍ଣଂକୁ ଯେଣୁ ଚନ୍ଦ୍ରଲେକ ଦ୍ରୋହ
କୃତାନ୍ତକ ବୋଇଲେ ତୁମ୍ଭେ ପିତୃଲୋକେ ରହ । ୨ ।
ଦେଖିଣ ପରମ ସନ୍ତୋଷ ଅଂଧ ବିଦୁର ସଞ୍ଚୟେ
ପାଣ୍ଡବ ସହିତେ ଯେ ଆଶ୍ରିତ ସଭୟେଂ । ୩ ।
ଉଦବେଗ ଚକିତେ କେହି ନ କହନ୍ତି କଥା
ମନୁଷ୍ୟେ ଅସମ୍ଭବ ଦେଖିବାକୁ ଯେ ଅବସ୍ଥା । ୪ ।
ବ୍ୟାସଂକ ପଦ୍ମପାଦେ ପ୍ରଣପତ୍ୟ ଭୂଷ୍ଟମନେ
ମୃତ୍ତୁ ପାତକ ଡେକିଲେ ବ୍ୟାସଂକ ପରସନ୍ନେ । ୫ ।
ଯୁଦ୍ଧେଷ୍ଟି ବୋଇଲେ ଯେବଣ କର୍ମ ଶାହାସ୍ତ୍ରେ ନ ଶୁଣିଲି
ତୋହୋର ମହିମାଂରେ ଯେବେ ଚକ୍ଷୁରେ ଦେଖିଲି । ୬ ।
ଦୁଃଖର ଅଶେଷ ଜାଣିଲିଉଂ ଯେବେ
ଯେ ସଂସାର ସାଗରୁ ତରିବାକ ତୋହୋର ଭାବେ । ୭ ।
ଧୃତରାଷ୍ଟ୍ର ବୋଇଲେ ଯୁଦ୍ଧେଷ୍ଟିଂକ ଆଗ
ତୋହୋର ବିଳମ୍ବ ନ ସହଇ ଯୋଜନ ଦରଜା ଉଦବେଗ ।୮।
ବାବୁ ସୁଚତ୍ତେ ପରଙ୍କାନ୍ତ ପାଳ ଥାଅସି ଭଲେ
ସମସ୍ତେ ଅନ୍ଧ ପଟଳଟି ତୋହୋର ନଗଲେ । ୯ ।
ଧୃତରାଷ୍ଟ୍ରଂକ ଭୁଆରନ୍ତେ ଚଳନ୍ତି ପାଣ୍ଡବେ
ପ୍ରବେଶ ହୋଇଲେ ଯାଇଂ ଜଇନ୍ତା ନିଜ ଠାବେ । ୧୦ ।
ଅନୁଦିନେ ଯାଇ ହସ୍ତିନାସ୍ୟେ ପରବେଶ
ଯେ ଯାହାର ଭୁବନେ ଯାଇଂ ପଶିଲେ ନିଜ ବାସ । ୧୧ ।

---

୨।୧—କାଞ୍ଚିତ କଷ୍ଣକୁ ଚନ୍ଦ୍ରଲେକ ଦ୍ରୋହ । (ଝ,ଠ)
୧୧।୧—ନଉଦିନେ ଯାଇଂଣ ହସ୍ତିନାସ୍ୟେ ପରବେଶ । (ଝ)
୧୧।୧—ନବଦିନେ ଯାଇଂଣ ହସ୍ତିନାସ୍ୟେ ପରବେଶ । (ଠ)

ଅଗସ୍ତିଂକ ପାଶେ ବଇବସ୍ୱତ ମନୁ ବୋଇଲା
ବନସ୍ତେ ଧୃତବଷ୍ଟ୍ର କେତେଂଣ କୃତ୍ୟ କଲା । ୧୨ ।
ସଭାବେଣ ପୃଥ୍ୱୀରେ ଅଟନ୍ତି ସତ୍ୟବାଦୀ
ମିଛବାକ୍ୟ କହିଲେ ହୁଅନ୍ତି ଅପରାଧୀ । ୧୩ ।
ଠାବେ ଠାବେ କରଣ ଯେ ବରଗିଲେ ଗୃହ
କାହା ତୁଣ୍ଡେ ମିଥ୍ୟାବାକ୍ୟ ନୋହିବ ବାହାର । ୧୪ ।
ପରନାରୀ ଅଟନ୍ତି ନ ଧରିବାକ ମନ
କୃଷି ଉପୁଜାଇ ହରଷେ ଦ୍ୟନ୍ତି ଦାନ । ୧୫ ।
ପରଜାଂକର ଭୂବନ କବାଣ କଣଯୁ ତାଂକୁଣୀ
ସୁବର୍ଣ୍ଣର କଳସ ଘରେ ଘରେ ମଣ୍ଡଣି । ୧୬ ।
ପୁତ୍ରେ ମାତା ପିତାଙ୍କଇଂ ହୋଇଥିକେ ବଶ
ଇନ୍ଦ୍ର ଜାଣିଣ ବୃଷ୍ଟି କରବ ଯେ ଉପୁଜବ ଶସ୍ୟ । ୧୭ ।
ବସ୍ତ୍ରର ଆହୁତ ଯେ ପିବନ୍ତି ବହ୍ନି
ସକଳ ବ୍ରାହ୍ମଣଂଙ୍କ ମୁଖେ ଶୁଭଇ ବେଦଧ୍ୱନି । ୧୮ ।
ଜରା ଅବସ୍ଥା ନାହିଂ ସବେ ଦିଶନ୍ତି କନ୍ଦର୍ପ ପରି
ଫଳ ପତ୍ର ବୃକ୍ଷାଳ ପାଦପେ ଶୋଭିତ ଯେ ଧରା । ୧୯ ।
ଆବର ବିହଙ୍ଗଣ କୋଳାହଳ ସଙ୍ଗ
ପବନ ଗତି ଜାଣି ଚଳନ୍ତି ବାଜୀ ଯେ ମାତଙ୍ଗ । ୨୦ ।
ବିବିଧ ପଦ୍ମାକରେ ବିବିଧ ମଞ୍ଜୁଳ ଚହଟେକଳ
ସବୋଜ ଉପୃଠେଲ ଯେ ଚମ୍ବନ୍ତି ଭୃଙ୍ଗମାଳ । ୨୧ ।
ପିକଜନ୍ତୁ ଭଷନ୍ତି ଶୁକସାରୀ ନାଦେ
ଡେଙ୍ଗନ୍ତି ସଦ୍ଭେଦେଂ ଯେ ପବନ ଉନ୍ମାଦେ । ୨୨ ।
ବ୍ରତ ଉପବାସ କରନ୍ତି ଦେବସେବା
ମୃଦୁ ବଚନ ଭାଷେ ସ୍ତ୍ରୀସାବନ୍ତୀ ପିବା (ପୃଥୁକା) । ୨୩ ।
ଆରୋଗ୍ୟ ଶୋଦେ କଅନ୍ତି ନେ ଜନ
ସବା ଘରେ ସଞ୍ଚିତ ରହନ୍ତି ଯେ ବସ୍ତୁ ପୂରଣ । ୨୪ ।

---

୨୦।୯—ସ୍ଥାବର ଛେଦନ ନାହିଂ ଆବର୍ ଅସତ ସ... (?)

କାମ ଅର୍ଥେ ବଶ ନୋହନ୍ତି ଯେ ମୋହ
ଅପାରଗ ଜନ ସେ ସ୍ଥାନେ ନାହିଁ କେହି । ୨୫ ।
ଯେ ଯାହାର ଅଧିକାରେ ବଞ୍ଚନ୍ତି ପ୍ରତ୍ୟକ୍ଷେ
ଚଣ୍ଡ ଅପଚଣ୍ଡ ନାହିଁ ଧନ ଲୋଭ ଆଶେ । ୨୬ ।
ଗୁରୁଜନେ ଭଗତ ସର୍ବେ ନାହିଁ ପରଦାର
ଦୁଃଖୀ ଚଉରକ ନାହିଁ ପରଧନ ହର । ୨୭ ।
ଗ୍ରାମେ ଅକାଳଣେ ବୃଷ୍ଟି ନ କରନ୍ତି ମେଘେ
କୃଷି ଉପୁଜାଇ ଭୂମି ପାଳୁଥାନ୍ତି ଇନ୍ଦ୍ରଦେବ । ୨୮ ।
ଇନ୍ଦ୍ରପ୍ରସ୍ଥରେ କେହି ଯେ ନୁହନ୍ତି ଜନମତା
ଶ୍ରବଣେ ନ ଶୁଣନ୍ତି ପରାପର କଥା । ୨୯ ।
ପାପକର୍ମ କଥାରେ ନ କରନ୍ତି ଲପ୍ତେ
ସମସ୍ତେ ବଶନ୍ତି ଯେ ରାଜକୁମାର ପରାପ୍ତେ । ୩୦ ।
ଯମର ଅନୀତ ଯେ ନ ଶୁଣନ୍ତି ଶ୍ରବଣେ
ମଙ୍ଗଳ ଧ୍ୱନି ଶୁଭଇ ସକଳ କାମିନୀ ଗଣେ । ୩୧ ।
ସ୍ତେ ବର୍ଷରେ ଯୁଧିଷ୍ଠିରଙ୍କର ରାଜ୍ୟ ଯେ ସମ୍ପଦ
ଧୃତରାଷ୍ଟ୍ର ତାହାଙ୍କ ପିତାଙ୍କଇଁ ମନ ଖେଦ । ୩୨ ।
ଘରେ ଅମାତ୍ୟ ସହିତ ସଂଗତ ଗଲେ ଶେଷ
ଧୃତରାଷ୍ଟ୍ର ସନ୍ନିଧେ ଯାଇଁ ମିଳିଲେ ନୃପମଣି । ୩୩ ।
କୋଇଲା ଗାନ୍ଧାରୀ ଧୃତରାଷ୍ଟ୍ର ଅନ୍ଧରାଜା
ସବୁଙ୍କୁଇଁ ଯୁଧିଷ୍ଠିର ଯେ କରନ୍ତି ପାଦପୂଜା । ୩୪ ।
ଯୁଧିଷ୍ଠିର ପୁଛିଲେ ତାତ ବଢୁରତ ନାହିଁ
ଧୃତରାଷ୍ଟ୍ର ବୋଇଲେ ସେ ଉତ୍ତରଙ୍କୁରେ ଅଛି ରହି । ୩୫
ପ୍ରାଣ ସୋଦର ସେ ବଢୁର ମୋତେ ସାହା
ସ୍ତେବେ ମାସ ଦୁଇ ହେଲା ମୁଁ ନ ଦେଖଇ ତାହା । ୩୬ ।

---

୨୬।୨ ଚଣ୍ଡ ମଣ୍ଡ ନାହିଁ ଧନଠଲଭ ଆଶେ । (ଢ଼)
୩୧।୧ ଜନମ ନେ ଅଙ୍ଗୀ ନ ଶୁଣନ୍ତି ଶ୍ରବଣେ । (ଘ)
୩୬।୧ ପ୍ରାଣର ସହୋଦେ ସେ ବଢୁର ମୋତେ ସାହା । (ଭ,ଙ,ଠ,ଢ଼,ପ)
୩୬।୧ ପ୍ରାଣର ସଙ୍ଖାତ ସେ ବନ୍ଧୁର ମୋତେ ହାହା । (ଢ଼,ଙ,ଘ,)

ଅନନ୍ତର ବନ୍ଧୁରକଲିଂ ଦେଖିତ ମୋର ନାହିଂ
ମରଣକାଳ ଜାଣି ମୋତେ କେହିତ ନ ଗଛଇ । ୩୭ ।
ପ୍ରାଣହୀନେ ମୁହିଂ ସେ ଅଟଇ ଅଶକତା
ତୋହୋର ଜନନୀ ସେ ମୋତେ କରନ୍ତି ଚିନ୍ତା । ୩୮ ।
ମୋହୋର ସଙ୍ଗେଣ ହେବେ ନ ଥାନ୍ତା ତୋହୋର ମାୟେ
କେତେଦିନୁ ଲେଟନ୍ତାନା ଆମ୍ଭର ପ୍ରେ କାୟେ । ୩୯ ।
ଯେତେକ କହନ୍ତେଣ ମିଳିଲ ବନ୍ଧୁର
କେହି ନ ଦେଖିଲେ ଯେବା ଦେଖନ୍ତି ଯୁଧିଷ୍ଠିର । ୪୦ ।
ନିକଟେଣ ଆସି ଯୁଧିଷ୍ଠିର ମୁଖ ଗୃହିଂ
ପୁଣ ବାହୁଡ଼ଣ ଗଲ ଚକ୍ଷୁଠାର ଦେଇ । ୪୧ ।
ଯୁଧିଷ୍ଠି ଉଠିଲେ ବଇଲ ପ୍ରାୟେ ବୁଝି
ଢେଙ୍କେ ଢେଙ୍କେ ଗୋଡାଇଲେ ଧର୍ମେ ବନ ମଝି । ୪୨ ।
ଅନ୍ତର ଅନ୍ତର ହୋଇଣ ବନ୍ଧୁର ଯାଉଅଛି
କେତେଦେହିଂ ଦୂରେ ଯାଇ ବିଶ୍ରାମ କରୁଅଛି । ୪୩ ।
ଜାମ୍ବୁ ବୃକ୍ଷ ତଳେ ଯାଇଂ ବସିଲ ଶୂଦ୍ରଯୋନି
ଯୁଧିଷ୍ଠିଙ୍କର ମୁଖ ନିରେଖଇ ବେନିନେତ୍ର ଘେନି । ୪୪ ।
କୃଷ୍ଣ କୃଷ୍ଣ ବୋଲିଣ ହୃଦୟେଣ ଚଡ
ଉର୍ଦ୍ଧ୍ୱ ମୁଖେ ତାହାର ପ୍ରାଣ ଗଲ ଛାଡ଼ି । ୪୫ ।
ଯୁଧିଷ୍ଠିଙ୍କ ଆତ୍ମା ପ୍ରେ ବେଗେ ପଶିଲ ତାର ପ୍ରାଣ
ରାଜା ହୋଇଲେ ମୋହାର ତେଜତ ଦ୍ୱିଗୁଣ । ୪୬ ।
ଜାଣିଲ ବନ୍ଧୁର ଯେ ପଶିଲେ ମୋହୋର ଗର୍ଭେ
ଜନ୍ମତ ଶରୀର ମୋହୋର ବଳମା ତୃଣ ପ୍ରେବେ । ୪୭ ।

---

୩୮ । ଅବସ୍ଥିର ମାତେନ୍ତ ମୋହୋର ନ ଚଳନ୍ତି
ତୋ ଜନନ ତୋମାର ଘଣ୍ଟୁ କାର୍ଯ୍ୟ ଯେ କରନ୍ତି । (ଘ,ଠ,ଜ)
୩୮ । ହୀନେହେବନ୍ତ ଅଟଇ ସେ ଦୁର୍ବଳନ୍ତା
ତୋହୋର ସେ ଜନନୀ ଅଟଇ ମୋତେ ଚିନ୍ତା । (ଘ,ଝ)
୪୨ । ଯୁଧିଷ୍ଠିରଙ୍କ ସମାର୍ଜିତ ଦେହେକ ଶୋଭ
ଜନ୍ମକ ଢେଙ୍କ ଢେଙ୍କ ଧର୍ମିଶ୍ରେଷ୍ଠ ଗୋଡାଇ । (ଛ)

ଏମନ୍ତେକ ଚିନ୍ତନ୍ତେ ସେ ସନ୍ନିଧେ ମନ୍ତ୍ରୀପାଳ
ବିଦୁର କାୟା ଯେ ଭୂଇଁକି ଟୋଳିଧରି କଲେ ଢୋକ । ୪୮ ।
ଦେଖିଲେ ଆତ୍ମା ଶରୀରେ ତାର ନାହିଁ
ମୋହିତ ଧର୍ମରାଜା ବିଦୁର କୋଳେ ନେଇ । ୪୯ ।
ଅଶ୍ରୁ ଜଳେ ବିଦୁରକଇଁ କରାଇଲେ ସ୍ନାହାନ
ଆଜ ସେ ପ୍ରାଣତ୍ୟାଗ ହୋଇଲେ ପଣ୍ଡୁ ଯେ ରାଜନ । ୫୦ ।
ହିତ ପ୍ରୀତି ଗୁଣ ବୋଲି ବୋଲିବାକ ଯାହା
ଆଜ ସେ ତୁଟିଲୁକ ମୋହୋର ଡାହାଣ ଯେ ବାହା । ୫୧ ।
ସଂକଟକାଳେ ସେ ମୋହୋର ସନ୍ନିଧେଣ ଥିଲା
ଯେତେଦିନେ ପିତାମାତା ପୁତ୍ରବନ୍ଧୁ ସମସ୍ତ ପଡିଲା । ୫୨ ।
ବିଦୁର ବେଳକର ଧରଣ ଯୁଧିଷ୍ଠିର ମହାରାଜା
ଆଲିଙ୍ଗନ ଯୁଗତେ କଲେକ ଭୂମିଶଯ୍ୟା । ୫୩ ।

ବନକୁ ଅଇଲି ତାତ ତୋତେ ଦେଖିବାର ପାଇଂ
କସ ବୋଲ କହିବଇଂ ପୁରେ ମୁହିଂ ଯାଇଂ । ୫୪ ।

କଉରେବ ମଧ୍ୟେ ମୋତେ ତୁମ୍ଭେ ସେ ସଦୟେ
କେ ମୁକୁ ପରମାଦୁଂ କରିବାକ ଜୟେ । ୫୫ ।

ଧୃତରାଷ୍ଟ୍ର ଶୁଣିଲେ ହୃଦୟ କେତେହେ ଧର
କୋଇନ୍ତା ଗାନ୍ଧାରୀ କେମନ୍ତେଣ ତଣ । ୫୬ ।

ଯେତେ ବୋଲି ଯୁଧିଷ୍ଠିର ମୃତୁପିଣ୍ଡ ଘୁଡଲେ
ସଂସ୍କାର କରିବାକୁ ଅଗ୍ନି ଆରୋପିଲେ । ୫୭ ।

ଅଗ୍ନିରେ ନେଇ ସଂଚାଳିଲେ ମୃତୁଶବ
ରୋମେକ ନ ପୋଡିଲା କାୟ ଅଛି ସବ । ୫୮ ।

ଆକାଶୁଂ ବାଣୀ ଯେ ପଡିଲା ଉର୍ଦ୍ଧ୍ୱଗତ
ବିଦୁରକଇଂ ଦହନ ନ କରାଅ ଭୂଅପତି । ୫୯ ।

---

୫୫।୨ କେ ମୋତେ ପ୍ରମାଦ ବେଳେ କହିବ ବୁଝି
ଯେ ଉପାୟେ । (ଖ,ଗ,ଘ)

ବ୍ରହ୍ମଜ୍ଞାନ ଉପଦେଶ ପଚାରେ ସେ ପାଇ
ଜ୍ଞାନବନ୍ତ କାହ୍ନୁ ତୁ ଦହନ୍ତୁ କସ ପାଇଁ । ୬୦ ।
ବ୍ରହ୍ମଜ୍ଞାନୀ ସେ ଅଟଇ ତପସି ମୃତ୍ତିକା
ତୁ ସେଥି ବିଳମ୍ବ ନ କରନ୍ତ ସେଥିକା । ୬୧ ।
ଆକାଶର ବାଣୀ ଶୁଣିଲେ ଧର୍ମ୍ମେ ଝଟକେ
ଭୂମି ଖୋଳିଲେ ଧର୍ମ୍ମେ ଘେନିଣ କାଠ ଖୋଞ୍ଚେ । ୬୨
ତହିଁ ଗର୍ତ୍ତରେ ବିଦୁରଙ୍କୁ ପୋତିଲେ ନଟିଅଇ
ତତକ୍ଷଣ ଅଇଲେ ଧର୍ମ୍ମେ ବିମୁଖ ମନ ହୋଇ । ୬୩ ।
ଧୃତରାଷ୍ଟ୍ର ଅଗ୍ରତେ ମିଳିଲେକ ଯାଇଁ ନୃପ
ବ୍ୟାସେ କହିଲେ ସେ ବିଦୁର ସରୂପ । ୬୪ ।
ଶୁଣି ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ବୋଲେ ଶିକ୍ଷା
ତୁ ଯାଅ ଯା ବାବୁ ଯୁଧିଷ୍ଠି ରାଜ୍ୟ କର ରକ୍ଷା । ୬୫ ।
ଆଜ ବାବୁ ଆମ୍ଭରେ ପିତବଜନ କସ
ଅନନ୍ତ ମହାତ୍ମା ଆଉ ନ କର ତୁ ଆଶ । ୬୬ ।
ମୋହୋର ଜୀବନ୍ତେ ଯେବେ ବିଦୁର ବଧ ଶୁଣିଲ
ଆମ୍ଭର କସ ଗଣିତା ବାବୁ ଆମ୍ଭେ ଅଜ କାଳ । ୬୭ ।
ବିମୋହ କରି ଯହିଁ ବୋଇଲେ ଧୃତରାଷ୍ଟ୍ର
ତହୁଁ ବାହୁଡିଲେ ଧର୍ମ୍ମେ ପାଇଣ ମହାକଷ୍ଟ । ୬୮ ।
ହସ୍ତିନା ପୁରେ ଯାଇ ହୋଇଲେ ପ୍ରବେଶ
ବିଦୁର ଅମଙ୍ଗଳ କହିଲେ ଭାଇଙ୍କର ପାଶ । ୬୯ ।
ଶୁଣିଣ ବିକଳ ଯେ ହୋଇଲେ ବୃକୋଦର
ଅନେକ ଶୋକ କଲେ ଗୁଣମାନ ଦେଖାଇ । ୭୦ ।
ସେଥୁ ଅନନ୍ତରେ ରାଜା ପାଳିଲେକ ମନ୍ତ୍ରୀ
ଦୁଃଖ-ସୁଖ-ଆତ୍ମା-ଗୁଣ ନାହିଁ କିଛି । ୭୧ । ୪୬୭ ।

---

୬୦।୧ ବ୍ରହ୍ମ ଉପଦେଶ ମନ୍ତ୍ର ପଚାରେ ସେ ପାଇ । (କ,ଢ଼,ଣ)
୬୫।୧ ଶୁଣିଣ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ବୋଲେ ପୁଚ୍ଛା । (ଚ,କ)
୬୮।୨ ବିମୋହ କରି ଯହିଁ ବୋଇଲେ ଧୃତରାଷ୍ଟ୍ର । (କ,ଗ,ଥ,ଢ଼)
୬୯।୨ ବିଦୁର ମରଣ କହିଲେ ଭାଇଙ୍କର ପାଶ । (କ,ଚ,ଚ,ଘ)
୭୧।୨ (ମହାତ୍ମା—ମହା ସ୍ୱଭାବ)

## ସଞ୍ଜୟଙ୍କ ପଳାୟନ ଧୃତରାଷ୍ଟ୍ର ଗାନ୍ଧାରୀ ଓ କୁନ୍ତୀ
## ବନଦାହେ ଦହନ ଓ ଅନ୍ତ୍ୟେଷ୍ଟି କ୍ରିୟା

ଶୁଣ ହେ। ବଇବସ୍ୱତ ମନୁ ବଦାନ୍ୟ ଅଗସ୍ତି
ବହୁର ମଳର ହୋଇଲ ବରଷକ ସଂଗତ । ୧ ।
ଜ୍ୟେଷ୍ଠ କୃଷ୍ଣପକ୍ଷ ଅମାବଇ ଅର୍କବାର
କୃତ୍ତିକା ନକ୍ଷତ୍ର ଯେ ଅଟଇ ସେ ଦିନର । ୨ ।
ନାଗ ନାମରେ କରଣ ଅତିଗଣ୍ଡ ଯୋଗ
ଗଂଗାକୂଳେ ପର୍ବତ ଯା ଅଟେ ମଧ୍ୟସ୍ୱର୍ଗ । ୩ ।
ସେ ପର୍ବତ ଉପର ବୃକ୍ଷେ ଡାଳେ ଡାଳେ ଘଷି
ଅଗ୍ନି ବାହାର ହୋଇଲା ତେଜ ପରକାଶି । ୪ ।
ଆକାଶେ ଝଙ୍କାଗିଲା ବନାନଳ ତେଜମୂର୍ତ୍ତି
ପୋଡ଼ିଲା ବନସ୍ତ ଯେ ଲାଗିଲା ଗଗନ ଗତି । ୫ ।
ଦେଖିଣ ସଂଜୟ ଯେ ଧାମଇ ଅତି ବେଗେ
ଧାଇଁଯାଇ କହିଲା ସେ ଧୃତରାଷ୍ଟ୍ର ଆଗେ । ୬ ।
ହେ ସ୍ୱାମୀ ଦହନ ଯେ ହୋଇଲାଙ୍କ ବନ
ପିଠିରେ ବସ ମୋହୋର ଚଳାଇବା ବହନ । ୭ ।
ସେବକେ ସୁଖେ ତୁମ୍ଭମାନ୍ତ ଥୋଇବି ନିର୍ଜଳ ବନେ
ନ କର ଆଉ ଭରସା ପଳାଇବା ବହନେ । ୮ ।
ଧୃତରାଷ୍ଟ୍ର ବୋଇଲା ହେ ବଳପ୍ରାଣ ନାହିଁ
ଶୀଘ୍ରଗତି ଯାଇ ଅବା ପାରିବଇଁ କାହିଁ । ୯ ।
ଅସ୍ଥି ଚର୍ମ ପିଣ୍ଡର ଯେ ମହାଘୋର ଦୁଃଖ
ଜୀବନ୍ତେ ଆଶା ନାହିଁ ଅଗ୍ନି କରୁ ଭକ୍ଷ । ୧୦ ।
ଅନାଥ ଶରୀର ସେ କିମ୍ପାଇ ଘେନିଥିବା
ଅବଶ୍ୟ ଜନ୍ମକଲେ ବେଳେ ମୃତ୍ୟୁ ଯେ ଲଭିବା । ୧୧ ।
ଧୃତରାଷ୍ଟ୍ର ବୋଇଲେ ଲଗିଲା ନି ତବତ
କେତେ ଦୂରେ ହୋ ଯେଣୁ ସିବୁସି ଆମ୍ଭନ୍ତ । ୧୨ ।
ଶରୀର ଅଶକତ ନୁଆରଇ ଚରଣ କାଢି
ଯାଅ ଯା ସଂଜୟ ତୁ ଆମ୍ଭନ୍ତ ସେଥେଂ ଛାଡ଼ି । ୧୩ ।

ଦେଖୁ ଦେଖୁ ବଢନ୍ତେ ଯେ ଘଣ୍ଡ ଅଗ୍ନି ଧାଇଁ
ଉତ୍ତରେଣ ସଜନଙ୍କେ ତହୁଂ ଗଲେକ ପଳାଇ । ୧୪ ।
ଧାଇଁଲାରେ ଅଗ୍ନି ଲାଗିଲା ପର୍ଣ୍ଣକୁଟୀ
ଦହନ ହୋଇଲେ ତହୁଂ ଗାନ୍ଧାରୀ ଧୃତରାଷ୍ଟ୍ର । ୧୫
ଦାଇବ ଦଇବ ବୋଲି ସୁମରଣ କୋନ୍ତୀ
ତାହାଂଙ୍କ ଉପରେ ଅଗ୍ନି ପଡିଲା ତତକ୍ଷ । ୧୬ ।
ଜ୍ୟେଷ୍ଠ କୃଷ୍ଣ ଅମାବଇ ଗାନ୍ଧାରୀର ଜନ୍ମ
ସେହୁ ଦିବସେଣ ସେହୁ ହୋଇଲେ ଦହନ । ୧୭ ।
ଶୁଣ ହୋ ରାଜନ ହସ୍ତିନାପୁରେ ନାରଦ କଲେକ ବିଜୟେ
ଦେଖିଣ ପୂଜା କଲେ ଧର୍ମର ତନୟେ । ୧୮ ।
ନାରଦ ବୋଇଲେ ତୁ କାହ୍ନାଂକ କରୁ ପୂଜା
ମୃତ୍ତିକା ଯୋଗତ ହୋଇଲ ମହାରାଜା । ୧୯ ।
ଜ୍ୟେଷ୍ଠ କୃଷ୍ଣ ଅମାବଇ ଅର୍କବାର ଦିନ
ଧୃତରାଷ୍ଟ୍ର ଗାନ୍ଧାରୀ କୋନ୍ତୀ ହୋଇଲେଣି ଦହନ । ୨୦ ।
ବନ ପୋଡନ୍ତେଣ ତହିଁର ହୋଇଲାକ କାୟେ
ଶୁଣିଣ ମୂର୍ଚ୍ଛାଗତ ହୋଇଲେ ଧର୍ମରାୟେ । ୨୧ ।
ଅପାର କ୍ରୋଧ ଯେ କଲେକ ପାଣ୍ଡବଇ
ଯୁଧିଷ୍ଠି କୋପ କଲେ ଅଗ୍ନି ଦେବତାକଇଂ । ୨୨ ।
ଯେ ସେ ଅଟଇ ମହାବୃଦ୍ଧ ବଦନି
ତ୍ରିକୁଳଙ୍କ କେମନ୍ତେ ଦହିଲା ମୋହୋର ଜନନୀ । ୨୩ ।
ନାରଦେ ବୋଇଲେ ତୁ ଶୁଣ ନୃପବର
କିଛି ଦୋଷ ନାହିଂ ଅଗ୍ନି ଦେବତାଂକର । ୨୪ ।
ଧୃତରାଷ୍ଟ୍ର ଗାନ୍ଧାରୀର ଯେତେବେଳେ ଦହିଲା ଶରୀର
ତହୁଂ ମାତା ତୋହୋର ଥିଲା ଅନ୍ତର ଦୂର । ୨୫ ।
ତରଣନ୍ତ ଆଣ୍ଡକର ପବନ ପଶାଇ
ତହୁଂ ସେ ଦୋହରା ଯେ ଅଗ୍ନି ତେଜ ହୋଇ । ୨୬ ।

---

୨୪।୨ କମେ ଦୋଷ ଧରୁଅଛୁ ଅଗ୍ନି ଦେବତାର । (ଡ,କ,ଚ)
୨୫।୨ ତହୁଂ ମାତା ତୋହୋର ହୋଇଲେକ ଅନ୍ତର । (ଙ)
୨୫।୨ ତୋହୋର ମାତା ଯାଇଥିଲେ ଅନ୍ତଃପୁର । (କ,ଭ,)

ତେଜନି ଅଗ୍ନି ଯୋଗେ ମଲ୍ଲ ଷଣ୍ଡୁ ଘଣୀ
ବସ୍ତ୍ରହରଣ ଶାପ ଦେବୁ ତୁ ନୃପମଣି । ୨୭ ।
ଅଗ୍ନିଙ୍କ ଭୃଗୁ ମହର୍ଷି ଅଛନ୍ତି ଶାପଦେଇ
ସର୍ବ ଭକ୍ଷନ୍ତେଣ ତାହାଙ୍କଇଂ କଷ୍ଟହିଂ ଦୋଷ ହାବେ ନାହିଁ । ୨୮ ।
ସ୍ୱେ ମୃତ୍ୟୁ ମଣ୍ଡଳେ ଅମର କାହିଁ ଦେଖୁ
ମୋହୋର ଜନନୀ ବୋଲି ମୋହଜଳ ରଖୁ । ୨୯ ।
ଯେବେତ ବୋଲି ଚରଣେଷ୍ଟି ପୂଜ ଗଲେ ଶୃନେୟ
ଧଉମ୍ୟ ପ୍ରୋହିତଂକୁ ଯୁଧିଷ୍ଠି ପଠିଆଇଲେ ବହନେ । ୩୦ ।
କ୍ରିୟା ପ୍ରେତକାର୍ଯ୍ୟ କରାଅ ଯାଇଂ ଯଥା
ଯେମନ୍ତେ ପରମଗତି ପାବନ୍ତି ପିତା ମାତା । ୩୧ ।
ଯେବେକା ବସ୍ତ୍ରେ ଯେ ଗଲେ ପାଣ୍ଡବମାନେ
ଦଶ ଦିବସେ ପ୍ରବେଶ ଧୃତରାଷ୍ଟ୍ର ମୃତ୍ୟୁସ୍ଥାନେ । ୩୨ ।
ଦେଖିଲେ ବହନ ସ୍ଥାନେ ନାହିଁ ଚର୍ମ ଅସ୍ଥି
ଗଙ୍ଗାକୂଳେ ରହି ପିତୃକାର୍ଯ୍ୟ ସେ କରନ୍ତି । ୩୩ ।
ଗଜ ତୁରଙ୍ଗମ ଗୋଧନ ପୃଥ୍ୱୀ ଦାନ
ଭୋଜନ ସମ୍ପୂର୍ବେ ଯେ କରନ୍ତି ଅବିଷଣେ ଅନ୍ନଦାନ । ୩୪ ।
ଗଙ୍ଗାକୂଳରେ ଯେ ସମସ୍ତ କାର୍ଯ୍ୟ ସାଧି
ବଳପେ ଧର୍ମ ନନ୍ଦନ ଭଇବ ସୁମତି । ୩୫ ।
ଅନୁଦିନେ ହସ୍ତିନା ପୁରେ ଗରବେଣ
ଯେଥୁ ଅନନ୍ତରେ ହୋଇଲ ଆଶ୍ରମବାସ ଶେଷ । ୩୬ ।
ଉତ୍ତମ ସନ୍ଦେହ ଯେ ନ ପାବନ୍ତି ଲୋକ
ଯେବା ଶୁଣନ୍ତେଣ ନରେ ସନ୍ତୋଷେ ହୁଅ । ୩୭ ।
ଶ୍ରୀକୃଷ୍ଣର ମହିମାଂ ଯେ ଶ୍ରବଣେଣ ଶୁଣି
ଯେ ସଂସାର ସାଗରୁ ଯେ ତରିବାର ପ୍ରାଣୀ । ୩୮ ।

---

୨୯।୨ ମୋହୋର ଜନନୀ ବୋଲି ମୋହ [illegible] । (କ)
୨୯।୨ ମୋ ଜନନୀ ବୋଲି [illegible] । (କ,ଗ,ନ)
୩୦।୨ ନଜ ପୁରେ [illegible]
୩୦।୨ ଶୁଣିବଣ [illegible] ଧର୍ମ [illegible] । (କ)

ଶ୍ରୀକୃଷ୍ଣର ପଞ୍ଚ ଆତ୍ମା ଅଟନ୍ତି ପଞ୍ଚୁ ଭ୍ରାତେ
ଯେହ୍ନେ କୃଷ୍ଣ ସେହ୍ନେ ପାଣ୍ଡବେ ଯଥାର୍ଥେ । ୩୯ ।
ଅନେକ କଉତୁକ ନ ସରନ୍ତି କହନ୍ତେ
ଶ୍ରୀକୃଷ୍ଣ ଅନୁଭବେ କିଛୁ ବାକ୍ୟ ମୋତେ । ୪୦ ।
ଶ୍ରୀ ବାସୁଦେବଙ୍କ ପାଦ ପଂକଜ ମୋହୋର ଶିରେ
କହନ୍ତି ସାରଳା ଦାସ ଶ୍ରୀ ମହାଭାରଥରେ । ୪୧ । ୫୧୮ ।

ଶ୍ରୀ ମହାଭାରଥ ଅଚ୍ଛିଦ୍ର ପର୍ବ ମୌଷଳ ପର୍ବ ବ୍ୟାସ ପର୍ବ ହୋଇଲା ସମ୍ପୂର୍ଣ୍ଣ
ଶୂଦ୍ରମୁନି ସାରଳା ଦାସ ଗତେ ସହସ୍ରେ ଦଣ୍ଡ ପ୍ରଣାମ




ମୁଦ୍ରାକର—ଶ୍ରୀ ମଦନମୋହନ ଦାସ, ନୂତନ ପ୍ରେସ, କଟକ-୨